ଅନୁବାଦ— ଲକ୍ଷ୍ମୀନାରାୟଣ ମହାନ୍ତି

# ନଗ୍ନ ସତ୍ୟ

## ଲୁଇଜି ପିରାନ୍ଦେଲୋ

୧୯୩୪ର ନୋବେଲ ପୁରସ୍କାର ପ୍ରାପ୍ତ

ଏହି ଧାରାରେ :

ସ୍ୱାଧୀନ ମାନବ — ହ୍ୟାଲ୍‌ଡର୍ ଲକ୍‌ସନେସ୍

ମୁକ୍ତ ତାଜ — ସେଲମା ଲଗର୍‌ଲଫ୍

ମା ଓ ପୁଅ — ଗ୍ରାସିଆ ଦେଲେଦା

ବାରବାସ — ପାର୍ ଲଗର୍‌କଭିଷ୍ଟ

ମାଟିର ମାୟା — ନ୍ୟୁଟ ହାମ୍‌ସୁନ୍

ପ୍ରିୟତମ — ଆଁଦ୍ରେ ଜିଦ୍

ଜାଁ କ୍ରିସ୍ତଫ୍ — ରୋମାଁ ରୋଲାଁ

ଚରସ ନାଟକ — ଜର୍ଜ ବାର୍ଣ୍ଣାର୍ଡ ଶ'

ପୋଡ଼ା ଭୂଇଁ — ଟି. ଏସ୍. ଏଲିଅଟ

ସିଦ୍ଧାର୍ଥ — ହେରମାନ୍ ହେସ୍

ଗୁଡ୍ ଅର୍ଥ — ପାର୍ଲ. ଏସ୍. ବାକ୍

ଅପରାଜିତ — ଅର୍ନେଷ୍ଟ ହେମିଂୱେ

ପ୍ରଥମ ଓଡ଼ିଆ ସଂସ୍କରଣ : ୧୯୫୭

ପ୍ରକାଶକ :
ପ୍ରଫୁଲ୍ଲ ଚନ୍ଦ୍ର ଦାସ,
କଟକ-୨

ପରିବେଶକ :
ନେସନ ରିକ୍ୟୁଇଜିଟସ୍ କୋ: (ଇଣ୍ଡିଆ)
ଚାନ୍ଦନୀଚୌକି, କଟକ-୨

କଥାବସ୍ତୁ ମୁଦ୍ରକ :
କଳିଙ୍ଗ ଭାସ୍କର ମୁଦ୍ରଣାଳୟ,
ମାନସିଂହ ପାଟଣା,
କଟକ-୧

ଚିତ୍ରକୃତ, ପ୍ରଚ୍ଛଦପଟ୍ଟ ମୁଦ୍ରକ ଓ ବନ୍ଧାଇ :
ମନମୋହନ ପ୍ରେସ,
କଟକ-୨

ପ୍ରଚ୍ଛଦପଟ୍ଟ ଶିଳ୍ପୀ
ବିଭୂତିଭୂଷଣ କାନୁନଗୋ

ସ୍ୱତ୍ୱ ସଂରକ୍ଷିତ :
ମୂଲ୍ୟ : ଦୁଇଟଙ୍କା ଆଠଅଣା

## କୃତଜ୍ଞତା ସ୍ୱୀକାର

ଇଟାଲୀୟ ସାହିତ୍ୟ ସହିତ ଓଡ଼ିଆ ପାଠକ ବୃନ୍ଦ ଅଳ୍ପ ପରିଚିତ । ବିଶ୍ୱ ସାହିତ୍ୟ ଦରବାରରେ ସମ୍ମାନିତ ହେଲା ପରେ ଦରିଆପାରିର ବିଭିନ୍ନ ଦେଶ ସଙ୍ଗେ ପ୍ରଖ୍ୟାତ ସାହିତ୍ୟିକମାନଙ୍କର ପରିଚୟ ଘଟେ । ବିଂଶ ଶତାବ୍ଦୀର ଇଟାଲୀୟ ସାହିତ୍ୟ ଏକଛତ୍ରବାଦ ଯୋଗୁଁ ବିଶେଷ ଭାବରେ ବିପନ୍ନ । ମୁସୋଲିନୀଙ୍କର କୋଡ଼ିଏ ବର୍ଷ ଯାବତ ଏକଛତ୍ର ସାମ୍ରାଜ୍ୟବାଦ ଓ ଅତ୍ୟାଚାର ଯୋଗୁଁ ବିଶିଷ୍ଟ ସାହିତ୍ୟିକମାନଙ୍କୁ ଅନିଚ୍ଛା ସତ୍ତ୍ୱେ ନୀରବ ରହିବାକୁ ପଡ଼ିଥିଲା ଏବଂ ଅନେକେ ସ୍ୱଦେଶ ତ୍ୟାଗ କରି ବିଦେଶରେ ଆଶ୍ରୟ ନେବାକୁ ବାଧ୍ୟ ହୋଇଥିଲେ । ଯେଉଁମାନେ ଏହି ଏକଛତ୍ରବାଦକୁ ଅସ୍ୱୀକାର କରି ଅବିରାମ ଲେଖନୀ ଚଳାଇଥିଲେ, ତନ୍ମଧ୍ୟରେ ଅଗ୍ରଣୀ ହେଉଛନ୍ତି ଇଗ୍ନାଜିଓ ସିଲୋନ୍ ।

ଯୁଦ୍ଧୋତ୍ତର ନବଜାଗ୍ରତ ଗଣତାନ୍ତ୍ରିକ ଇଟାଲୀର କୌଣସି ଉଲ୍ଲେଖ ଯୋଗ୍ୟ ବିଶିଷ୍ଟ ରଚନା ବର୍ତ୍ତମାନ ସୁଦ୍ଧା ପ୍ରକାଶିତ ହୋଇନାହିଁ । କିନ୍ତୁ ଅତୀତର ଐଶ୍ୱର୍ଯ୍ୟମୟ ସାହିତ୍ୟ ଭଣ୍ଡାରର ପୁର୍ନଇରୁ ପାର୍ବ ଉପୁଡ଼ ଚାଲିଛି ।

ପାଞ୍ଚ ବର୍ଷ ତଳେ ଇଟାଲୀ ତଥା ବିଶ୍ୱର ଦୁଇ ସାହିତ୍ୟ ମହାରଥୀ ଏବଂ ନୋବେଲ୍ ପୁରସ୍କାର ପ୍ରାପ୍ତ ଶ୍ରୀମତୀ ଗ୍ରାଜିଆ ଦେଲେଦ୍ଦା ଓ ଲୁଇଜି ପିରାନ୍‌ଦେଲୋଙ୍କ ରଚନାମାନ ଓଡ଼ିଆ ପାଠକଙ୍କ ସଙ୍ଗେ ପରିଚୟ କରାଇ ଦେବା ପାଇଁ ଚୁକ୍ତିବଦ୍ଧ ହୋଇଥିଲି ।

ତିନି ବର୍ଷ ତଳେ ଶ୍ରୀମତୀ ଡେଲେଡ୍ଡାଙ୍କ ରଚିତ "ମା ଓ ପୁଅ" ବନ୍ଧୁ ଲକ୍ଷ୍ମୀ ନାରାୟଣ ମହାନ୍ତିଙ୍କ ଦ୍ୱାରା ଓଡ଼ିଆ ଭାଷାରେ ଅନୂଦିତ ହୋଇ ପ୍ରକାଶ ପାଇଥିଲା । ସାର୍ଥକ ଅନୁବାଦ ଯୋଗୁ ତାହା ପ୍ରଶଂସିତ ହୋଇ ପ୍ରଥମ ସଂସ୍କରଣ ବିକ୍ରି ହୋଇ ଯାଇଥିବାରୁ "ମା ଓ ପୁଅ"ର ପୁନର୍ମୁଦ୍ରଣ କାର୍ଯ୍ୟ ବର୍ତ୍ତମାନ ଆରମ୍ଭ ହୋଇଛି । ଏହି ଗ୍ରନ୍ଥର ପ୍ରଚାର, ପ୍ରସାର ତଥା ଓଡ଼ିଆ ପାଠକଙ୍କ ସହାନୁଭୂତିରେ ଉତ୍ସାହିତ ହୋଇ ଲୁଇଜି ପିରାନ୍‌ଦେଲୋଙ୍କ "ନଗ୍ନ ସତ୍ୟ" ବର୍ତ୍ତମାନ ପ୍ରକାଶିତ ହେଲା ।

ଇଟାଲୀର ପିରାନ୍‌ଦେଲୋ ଇନ୍‌ଷ୍ଟିଚ୍ୟୁଟ ଏବଂ ଲଣ୍ଡନର ଡକ୍ଟର ଫାନ୍ ଭାନ୍ ଲେୱେନ୍ ପିରାନ୍‌ଦେଲୋଙ୍କ ଜୀବନୀ, ପ୍ରତିକୃତି ଓ ଅନ୍ୟାନ୍ୟ ଆବଶ୍ୟକୀୟ ବିବରଣୀ ଯୋଗାଇ ଦେଇଥିବାରୁ ସେମାନଙ୍କ ନିକଟରେ ମୁଁ କୃତଜ୍ଞତା ସ୍ୱୀକାର କରୁଅଛି ।

ବିଜୟାଦଶମୀ, ୧୯୫୭ — ପ୍ରକାଶକ

# ଲୁଇଜି ପିରାନ୍‌ଦେଲ୍ଲୋ

ଆଜ ପୂର୍ବା ତିନ ଜଣ ଇଟାଲୀୟ ଲେଖକ ବିଶ୍ୱ-ସାହିତ୍ୟ ଦରବାରରେ ନୋବେଲ ପୁରସ୍କାର ଦ୍ୱାରା ସମ୍ମାନିତ ହୋଇଛନ୍ତି । ୧୯୦୬ ସାଲରେ କବି ଗିଓସୁଇ କାରଡୁସି, ୧୯୨୬ ସାଲରେ ଔପନ୍ୟାସିକା ଶ୍ରୀମତୀ ଗ୍ରାସିଆ ଦେଲେଡା ଏବଂ ୧୯୩୪ ସାଲରେ ଲୁଇଜି ପିରାନ୍‌ଦେଲ୍ଲୋ ।

ଗାବ୍ରିଏଲେ ଦାନନ୍‌ସିଓ ଏବଂ ଲୁଇଜି ପିରାନ୍‌ଦେଲ୍ଲୋ ଉଭୟେ ଇଟାଲୀୟ ସାହିତ୍ୟ ଜଗତରେ ଦୁଇ ଚୂଡ଼ାମଣି । କିନ୍ତୁ ଦୁଇ ଜଣଙ୍କର ପ୍ରତିଭାର ସ୍ୱଭାବ, ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଜଣେ ଉଗ୍ର, ଦୃପ୍ତ, ଉଚ୍ଛ୍ୱସିତ ଏବଂ ଆନନ୍ଦମୟ; ଆଉ ଜଣକ ଅତି ଶାନ୍ତ, ସୂକ୍ଷ୍ମ, ନିପୀଡ଼ିତ ଓ ରହସ୍ୟମୟ । ତରୁଣ ବୟସରେ ପିରାନ୍‌ଦେଲ୍ଲୋ ଯେତେବେଳେ ପ୍ରଥମେ ସାହିତ୍ୟ କ୍ଷେତ୍ରରେ ଅବତରଣ କଲେ, ସେତେବେଳେ ଦାନନ୍‌ସିଓଙ୍କ ଖ୍ୟାତି ମଧ୍ୟ ଗଗନରେ ଭାସ୍ୱର । କିନ୍ତୁ ପୂର୍ବସୂରୀଙ୍କର ଶିଷ୍ୟତ୍ୱ ସେ କଦାପି ଗ୍ରହଣ କରି ନ ଥିଲେ, ଦାନନ୍‌ସିଓଙ୍କର କଲୋଲ୍ଲାସ ତାଙ୍କୁ ଭଲ ଲାଗୁ ନ ଥିଲା । ଅନ୍ୟାନ୍ୟ ପ୍ରସିଦ୍ଧ ଗଳ୍ପ ଲେଖକମାନଙ୍କ ପରି ପିରାନ୍‌ଦେଲ୍ଲୋ ତାଙ୍କର ସାହିତ୍ୟ ଜୀବନ ଆରମ୍ଭ କରିଥିଲେ କଳା-ପ୍ରାଙ୍ଗଣରେ ।

ଲୁଇଜି ପିରାନ୍‌ଦେଲ୍ଲୋ ସିସିଲିର ଅନ୍ତର୍ଗତ ଆଗ୍ରିଜେଣ୍ଟୋ ନିକଟବର୍ତ୍ତୀ କାଓସ ନାମକ ସ୍ଥାନରେ ଜୁନ ୨୮ ତାରିଖ ୧୮୬୭ ସାଲରେ ପିତା ଷ୍ଟିଫାନୋଙ୍କ ଔରସରେ ମାତା କାଟେରିନା ରିସି ଗ୍ରେଭଟୋଙ୍କ ଗର୍ଭରୁ ଜନ୍ମ-ଗ୍ରହଣ କରନ୍ତି । ୧୮ ବର୍ଷ ବୟସରେ ପୈତୃକ ବ୍ୟବସାୟରେ ତିନ ମାସ ଯାଏ କାର୍ଯ୍ୟ କରି ରହିବୁ ସେ ତାଙ୍କ ପିତାଙ୍କୁ କହିଲେ ଯେ ପାଲେରମୋ ବିଶ୍ୱବିଦ୍ୟାଳୟରେ ସେ ଉଚ୍ଚଶିକ୍ଷା ଲାଭ କରିବାକୁ ଚାହାନ୍ତି । ସେଠାରୁ ସେ ୧୮୮୭ ସାଲରେ ରୋମ ବିଶ୍ୱବିଦ୍ୟାଳୟକୁ ଗଲେ । ଏଠାରେ ସେ ପ୍ରସିଦ୍ଧ ଶିକ୍ଷାବିତ୍ ଅର୍ନେଷ୍ଟୋ ମନାସୀଙ୍କର ବନ୍ଧୁତ୍ୱ ଲାଭ କରିଥିଲେ । ଯେତେବେଳେ

ଲାଟିନ ଭାଷାର ଅଧ୍ୟକ୍ଷଙ୍କ ସଙ୍ଗେ ପିରାନ୍‌ଦେଲ୍ଲୋଙ୍କର ମତାନ୍ତର ଘଟିଲା, ସେତେବେଳେ ମନାଚୀ ପ୍ରବର ପିରାନ୍‌ଦେଲ୍ଲୋଙ୍କୁ ବନ୍ ଯିବା ପାଇଁ ଉପଦେଶ ଦେଇଥିଲେ ଏବଂ ପ୍ରସିଦ୍ଧ ଭାଷାତତ୍ତ୍ୱବିତ୍ ଓ୍ୱେଣ୍ଡେଲିନ ଫଏଷ୍ଟରଙ୍କ ନିକଟରୁ ଉପଯୁକ୍ତ ସ୍ଥାନ ହାସଲ କରିବାକୁ ମଧ୍ୟ କହିଥିଲେ ।

୧୮୯୧ ସାଲରେ ସେ ଗିର୍‌ଗେଣ୍ଟି ଭାଷାତତ୍ତ୍ୱରେ ଗବେଷଣା କରି ଡକ୍ଟରେଟ୍ ଉପାଧିରେ ବିଭୂଷିତ ହେଲେ ଏବଂ ତା' ପରେ କିଛି ଦିନ ବନ୍‌ରେ ଇଟାଲୀୟ ଭାଷାର ଅଧ୍ୟକ୍ଷ ହିସାବରେ କାର୍ଯ୍ୟ କରି ରୋମକୁ ଫେରି ଆସି ସମସାମୟିକ ଔପନ୍ୟାସିକ ଓ ସମାଲୋଚକ ଲୁଇଜି କାପୁଆନାଙ୍କର ଲେଖକ ଓ ଶିଳ୍ପୀ ଭକ୍ତମାନଙ୍କ ମଧ୍ୟରେ ବିଶିଷ୍ଟ ସ୍ଥାନ ଅଧିକାର କରି ବସିଲେ । ପିରାନ୍‌ଦେଲ୍ଲୋ ଦାନନ୍‌ଜିଓ ଗୋଷ୍ଠୀର ଯୁବକ ଲେଖକମାନଙ୍କର ସମର୍ଥକ ନ ଥିଲେ ।

ଲୁଇଜି ପିରାନ୍‌ଦେଲ୍ଲୋ ଇଂଲଣ୍ଡରେ ବିଦଗ୍ଧ ନାଟ୍ୟକାର ହିସାବରେ ପରିଚିତ ହେବା ପୂର୍ବରୁ ସମଗ୍ର ୟୁରୋପ ମହାଦେଶରେ କ୍ଷୁଦ୍ର ଗଳ୍ପ ଲେଖକ ହିସାବରେ ଶ୍ରେଷ୍ଠ ବୋଲି ବିବେଚିତ ହୋଇଥିଲେ ଏବଂ ମୋପାସାଁ ଓ ଚେକଫଙ୍କ ସମଶ୍ରେଣୀୟ ବୋଲି ମଧ୍ୟ ପ୍ରଶଂସିତ ।

୧୮୯୪ ଖ୍ରୀଷ୍ଟାବ୍ଦରେ ପିରାନ୍‌ଦେଲ୍ଲୋ ୨୬ ବର୍ଷ ବୟସରେ ପିତାଙ୍କର ଇଚ୍ଛା ପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ସମ୍ଭ୍ରାନ୍ତ ବଂଶୀୟ ଧନୀ କନ୍ୟା ଆଣ୍ଟୋନିଏଟା ପୋର୍ଟୁଲାନୋଙ୍କ ସଙ୍ଗେ ପରିଣୟ ସୂତ୍ରରେ ଆବଦ୍ଧ ହୁଅନ୍ତି । ପରିବାରବର୍ଗଙ୍କ ସ୍ୱାର୍ଥ ସଂରକ୍ଷଣ ଏବଂ ଅର୍ଥ ସଂଗ୍ରହ ଦୃଷ୍ଟିରୁ ବିବାହ ବନ୍ଧନ ରଚନା କରାଯାଇଥିଲା, ମାତ୍ର କେତୋଟି ବର୍ଷ ଭିତରୁ ଷ୍ଟିଫାନୋ, ଲିଓ ଓ ଫଷ୍ଟୋ ନାମିତ ତିନୋଟି ଶିଶୁର ଜନକ ପିରାନ୍‌ଦେଲ୍ଲୋଙ୍କ ସୁଖମୟ ଜୀବନର ଅବସାନ ଘଟିଥିଲା । ଏହାର ପ୍ରଧାନ କାରଣ ହେଉଛି ଅପ୍ରତ୍ୟାଶିତ ଅର୍ଥାଭାବ ଏବଂ ଶେଷ ଶିଶୁର ଅସ୍ୱାଭାବିକ ଜନ୍ମଲାଭ ପରେ ସହଧର୍ମିଣୀଙ୍କର ମସ୍ତିଷ୍କ ବିକୃତି । ରୋଗର ପ୍ରଧାନ ଲକ୍ଷଣ ହେଲା ସ୍ୱାମୀ ପ୍ରତି ସୁତୀବ୍ର ସନ୍ଦେହ । ଏହି ସନ୍ଦେହର ତାଡ଼ନାରେ ତାଙ୍କୁ ବର୍ଷ ବର୍ଷ ଧରି ଦୁଃସହ ନିର୍ଯ୍ୟାତନା ଭୋଗ କରିବାକୁ ହୁଏ । ତାଙ୍କର ସ୍ନେହଶୀଳ ମନ

ସ୍ତ୍ରୀକୁ ଉନ୍ମାଦାଶ୍ରମକୁ ପଠାଇ ପାରିଲେ ନାହିଁ । ସେ ଏହି ସବୁକୁ ସହ୍ୟ କରି ଭାଗ୍ୟକୁ ଆଦରି ରହିଲେ । କୌଣସି ବନ୍ଧୁ-ବାନ୍ଧବ ଘରକୁ ଯିବା ଆସିବା କରନ୍ତି ନାହିଁ । ଉପାର୍ଜିତ ଅର୍ଥର ଶେଷ କପର୍ଦ୍ଦକଟିକୁ ମଧ୍ୟ ସ୍ତ୍ରୀ ହାତରେ ଦେଇ ଦିଅନ୍ତି । ଏତିକିବେଳେ ସେ ଭାବିବାକୁ ଆରମ୍ଭ କଲେ— ନିଜ ମଧ୍ୟରେ ଅସଲ ମଣିଷଟି କିଏ ? ତାଙ୍କ ସ୍ତ୍ରୀ ଯାହାକୁ ସନ୍ଦେହ କରେ ଆଉ ସେ ନିଜେ ଯାହାକୁ ଚିହ୍ନନ୍ତି, ଏହି ଉଭୟ ମଧ୍ୟରେ କେଉଁଟି ସତ୍ୟ । ଏହି ଚିନ୍ତା କ୍ରମେ ଗଭୀର ଭାବରେ ତାଙ୍କର ସମସ୍ତ ରଚନାରେ ବ୍ୟାପିଗଲା । ପ୍ରତ୍ୟେକ ମଣିଷ ମଧ୍ୟରେ ଏହି ବ୍ୟକ୍ତି-ବହୁଳତା-ସମସ୍ୟାର ଉଲ୍ଲେଖ ଦେଖିବାକୁ ମିଳେ ତାଙ୍କର ଗଳ୍ପ, ଉପନ୍ୟାସ ଓ ନାଟକରେ ।

ପିରାନଦେଲ୍ଲୋ ଖାସ ଇଟାଲୀୟ ନୁହନ୍ତି ; ସେ ସିସିଲୀୟାନ ଅଟନ୍ତି । ଛାତ୍ର ଜୀବନରେ ଜର୍ମାନର ବନ୍ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଡ଼ିଗ୍ରୀ ପାଇଁ ସେ ସିସିଲର ମୌଳିକ ଭାଷାତତ୍ତ୍ୱ ବିଷୟରେ ପ୍ରବନ୍ଧ ଲେଖିଥିଲେ । ଏହି ଭାଷାରେ ଲିଖିତ ତାଙ୍କର କେତୋଟି ନାଟକ ମଧ୍ୟ ଅଛି । ସାରା ଜୀବନ ସେ ସିସିଲର ନୀଳ ଆକାଶ, ଉଜ୍ଜ୍ୱଳ ରୌଦ୍ର, ଆଉ ସ୍ଥାନୀୟ ଉଷ୍ଣ, ସରଳ, ଭାବପ୍ରବଣ ମାନବ-ପ୍ରକୃତିକୁ କଦାପି ଭୁଲି ପାରି ନ ଥିଲେ । ସମସ୍ତ ଦୁଃଖ ଓ ନିର୍ଯ୍ୟାତନ ମଧ୍ୟରେ ମାତୃଭୂମି ସିସିଲି ପ୍ରତି ଏକ ଗଭୀର ପ୍ରେମ ପିରାନ୍‌ଦେଲ୍ଲୋଙ୍କ ଧ୍ୟାନ ଚିନ୍ତାରେ ସ୍ପନ୍ଦିତ ହେଉଥିଲା ।

ଏହା ପରେ ଏହି ପାଗଳିନୀର ଅଯୌକ୍ତିକ ଈର୍ଷା ଓ ପ୍ରଳାପ ଦୀର୍ଘ ଦିନ ଯାବତ୍ ପିରାନ୍‌ଦେଲ୍ଲୋଙ୍କ ଜୀବନକୁ ଦୁର୍ବିସହ ଓ ଅତିଷ୍ଠ କରି ଦେଇଥିଲା । ଦରିଦ୍ରତା ଯୋଗୁ ଅନିଚ୍ଛା ସତ୍ତ୍ୱେ ପିରାନ୍‌ଦେଲ୍ଲୋଙ୍କୁ କିଛି ଦିନ ପାଇଁ ମହିଳା କଲେଜର ଶିକ୍ଷୟିତ୍ରୀମାନଙ୍କୁ ଶିକ୍ଷା ଦେବା କାର୍ଯ୍ୟରେ ଅଧ୍ୟାପନା କରିବାକୁ ପଡ଼ିଥିଲା ।

ଲୁଇଜି ପିରାନ୍‌ଦେଲ୍ଲୋ ଇଟାଲୀୟ ଭାଷାରେ ସର୍ବମୋଟ ୪୩ ଖଣ୍ଡ ପୁସ୍ତକ ରଚନା କରି ମାତୃଭାଷାକୁ ସମୃଦ୍ଧିମନ୍ତ ପୂର୍ବକ ୧୯୩୪ ସାଲରେ ବିଶ୍ୱସାହିତ୍ୟ ଦରବାରରେ ନିଜକୁ ଅନ୍ୟତମ ହିସାବରେ ପ୍ରତିଷ୍ଠା କରି ନୋବେଲ ପୁରସ୍କାର ଦ୍ୱାରା ସମ୍ମାନିତ ହୋଇ ଦେଶ ଓ ଜାତିର ଗୌରବ ବଢ଼ାଇଥିଲେ ।

୧୯୧୮ ସାଲରେ ଉନ୍ମାଦିନୀ ମରି ତାଙ୍କୁ ମୁକ୍ତି ଦେଲା, କିନ୍ତୁ ଏଥିଯୋଗୁ ତାଙ୍କର ଜୀବନ ସୁଖମୟ ହୋଇପାରି ନ ଥିଲା। ବାର୍ଦ୍ଧକ୍ୟରେ ତାଙ୍କର ମୁଖରେ ଗଭୀର ଗମ୍ଭୀର ବିଷନ୍ନତା ଲକ୍ଷ୍ୟ କରି ଅନେକେ ତାଙ୍କୁ “ଚୀନାର ବୁଦ୍ଧ” ବୋଲି କହୁଥିଲେ। ଏତିକିବେଳେ ସେ ତାଙ୍କ ନାଟ୍ୟଦଳ ସଙ୍ଗେ ପାଶ୍ଚାତ୍ୟ ଭୂଖଣ୍ଡ ନଗର ଗୁଡ଼ିକରେ ଗୃହହୀନ-ଭ୍ରାମ୍ୟମାନ-ଜୀବନ ଅତିବାହିତ କରୁଥିଲେ। ସମ୍ପତ୍ତିସବୁ ପିଲାମାନଙ୍କ ନାମରେ ଲେଖି ଦେଇ ସଂସାର ବନ୍ଧନରୁ ମୁକ୍ତ ନେଇଥିଲେ। ଲୋକଙ୍କୁ କହୁଥିଲେ “ହୋଟେଲର ଘରହିଁ ମୋର ଗୃହ ଏବଂ ସମ୍ପତ୍ତି ହେଉଛି ମୋର ଟାଇପ୍‌ରାଇଟର।”

୧୯୩୬ ସାଲ ଡିସେମ୍ବର ୧୦ ତାରିଖରେ ଏହି ବିଶ୍ୱ ସାହିତ୍ୟିକ ପିରାନଦେଲ୍ଲୋ ହଠାତ୍ ରୋମରେ ସ୍ୱର୍ଗାରୋହଣ କଲେ। ତାଙ୍କର ଜୀବନର ଅପ୍ରାକୃତିକ ଶେଷ ଇଚ୍ଛା ଥିଲା ଯେ ଅନାଡ଼ମ୍ବର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପନ୍ନ, ଏତୋଧିକ ଆଉ କିଛି ନୁହେଁ।

ଏହି ଓଡ଼ିଆ ସଂସ୍କରଣରେ ଯେଉଁ କେତୋଟି କ୍ଷୁଦ୍ରଗଳ୍ପ ଏକତ୍ରିତ ହୋଇ ସନ୍ନିବେଶିତ କରାଗଲା ତାହା ତାଙ୍କର ଅମର ରଚନା “ନଭେଲ ପାର ଅନ୍ ଆନୋ” ଅର୍ଥାତ୍ “ବର୍ଷର ପ୍ରତ୍ୟେକ ଦିନ ପାଇଁ ଗୋଟିଏ ଗଳ୍ପ”ରୁ ସଂଗୃହିତ ଏବଂ ସର୍ବପ୍ରଥମ ଓଡ଼ିଆ ଭାଷାରେ ପରିବେଷଣ କରାଗଲା।

ଗଭୀର ବେଦନା-ରସରେ ଗଳ୍ପଗୁଡ଼ିକ ପରିପ୍ଲୁତ। ଏହି ବେଦନା କେତେବେଳେ ମଧୁରତାର ଆଭାସ ଆଣିଦିଏ ପୁଣି ଅତଳ ହତାଶାରେ ମଧ୍ୟ ମଗ୍ନ କରିଦିଏ। କେତେବେଳେ ପୁଣି ତିକ୍ତତା, ହାସ୍ୟପୂର ବଙ୍କା ହସ ଅଥବା ଅଳ୍ପ ଦୁର୍ଲ୍ଲଭ ଅଶ୍ରୁ ସୃଷ୍ଟି କରେ।

ଆର୍ଥାର ଏବଂ ହେନରି ମେନଙ୍କ ଇଂରାଜୀ ଅନୁବାଦରୁ ଓଡ଼ିଆ ଅନୁବାଦ କରା ହୋଇଛି, ମୂଳ ଇଟାଲୀୟ ଗ୍ରନ୍ଥରୁ ନୁହେଁ। କିଛି ତ୍ରୁଟି ମଧ୍ୟ ଥାଇପାରେ। ସେହି ତ୍ରୁଟି ଭାଷା-ବିନ୍ୟାସର ସୌଷ୍ଠବରେ ପୂରଣ କରିବା ପାଇଁ ଅନୁବାଦକ ଯଥେଷ୍ଟ ଚେଷ୍ଟା କରିଛନ୍ତି।

ମହାଷ୍ଟମୀ: ୩୦।୧୦।୫୭

—ସୁଭଦ୍ରାନନ୍ଦନ

# ନିର୍ଦ୍ଦେଶିକା

# ନଗ୍ନ ସତ୍ୟ

'ମରିଗଲେ, ବୁଝିଲ ବନ୍ଧୁ, ମରିଗଲେ ବି, ପଣିଏ ନିଜର ଖଣ୍ଡିଏ ଘର ଲୋଡ଼େ। ଯଦି ଶବଟି ଥିଲା-ବାଲା ହୋଇଥାଏ, ତାର ଖଣ୍ଡିଏ ସୁନ୍ଦର ଘର ଦରକାର ହୁଏ। ଏଥିପାଇଁ ସେ ବି ହକ୍‌ଦାର। ସୁଖ ସ୍ୱଚ୍ଛନ୍ଦରେ ରହିବାକୁ ହେଲେ, ତାର ଇଚ୍ଛା ଏହା ଯେମିତି ମାର୍ବଲ ପଥରରେ ତିଆରି ହୁଏ, ଏବଂ ତା ଉପରେ ନାନା କାରୁକାର୍ଯ୍ୟ ହୋଇଥାଏ। ଆଉ ତା ପରେ, ମୃତ ବ୍ୟକ୍ତିଟିର ଆକାଂକ୍ଷା ଦେବାକୁ ଯଦି ଅଜସ୍ର ଅର୍ଥ ଥାଏ, ତାହାହେଲେ ତ କବର ଉପରେ ମୋ ପରି ଜଣେ ବଡ଼ ଶିଳ୍ପୀଙ୍କ ଦ୍ୱାରା ନିର୍ମିତ ଗୋଟିଏ ବିରାଟ···ବିରାଟ ··· କଣ କହନ୍ତି ତାକୁ ? ······ ରୂପକ, ହଁ, ଗୋଟିଏ ବିରାଟ ରୂପକ ତିଆରି କରାଇ ନିଏ ସେ ··· ଖଣ୍ଡିଏ ପଥର ଉପରେ ଲାଟିନ ଭାଷାରେ ଲେଖା ହୋଇଥାଏ। ତାର ପରିଚୟ ······ ସେ କଣ ଥିଲା, ସେ କଣ ନ ଥିଲା ··· ଗୃହ ଦାଗରେ ଫୁଲଫଳ-ଭରା ଗୋଟିଏ ମନୋରମ ଶ୍ରେଷ୍ଠ ବଗିଚା, ଏବଂ କୁକୁରଗୁଡ଼ାକୁ ଦୂରେଇ ରଖିବା ପାଇଁ ଗୋଟିଏ ସୁଦୃଢ଼ ରେଲିଂ ଆଉ ······।'

'ଓଃ ! ଚୁପ୍ କର ! ମୋତେ ଜଳେଇ ପୋଡ଼େଇ ମାରିଲ !' କନ୍‌ଷ୍ଟାନ୍‌ଟିନୋ ପଲସ୍ତାନ ଚିତ୍କାର କଲା, ତା ମୁହଁଟି ଯନ୍ତ୍ରଣାରେ ବିଗିଡ଼ିଯାଇ କୁଞ୍ଚୁଥିଲା।

ସିବେ କଲ୍ଲି ଅଙ୍କୁଶି ପରି ବଙ୍କା ହୋଇଥିବା ତାର ଛେଳି-ଦାଢ଼ୀ ଯୁକ୍ତ ମୁହଁଟି ଛାତି ଉପରୁ ଟେକିଲ । ନୀରବରେ ପଲ୍ୟୁାନ ଆଡ଼କୁ ଅନାଇ, ନାକ ଉପରକୁ ଲମ୍ବି ଯାଇଥିବା ଟୋପି ତଳୁ ତା ଆଖି ଟେକିଲା, ଏବଂ ତା ପରେ ଅନେକ ଭାବ ଚିନ୍ତା ମନ ସ୍ଥିର କରି, ତା ବନ୍ଧୁ ସମ୍ବନ୍ଧରେ ନିଜର ମତାମତ ପ୍ରକାଶ କଲା ଗୋଟିଏ ମାତ୍ର ଶବ୍ଦରେ—'ଗଧ' ।

ଏତିକିରେ ସବୁ କଥା ତୁଟିଗଲା ।

ଠିକ୍ ଏ ଅଗରୁ ପଲ୍ୟୁାନ ସୋଫାଟି ଓ ଟ୍ଲେଟ କାର୍ପେଟଟା ଖୁବ୍ ଯତ୍ନରେ ପରିଷ୍କାର କରି ରଖିଥିଲା । ସିବେ କଲ୍ଲି ତାର ଲମ୍ବା ଗୋଡ଼ ଦୁଇଟି କାର୍ପେଟ ଉପରେ ଛଡ଼ା ଛଡ଼ା କରି ଲମ୍ବାଇ ନିଶ୍ଚିନ୍ତ ଆରାମରେ ଆସି ସୋଫା ଉପରେ ବସିଲା ।

ପଲ୍ୟୁାନ ତାର ଷ୍ଟୁଡ଼ିଓଟା ପରିଷ୍କାର କରିବା ପାଇଁ ପ୍ରାଣପଣେ ଚେଷ୍ଟା କରୁଥିଲା, ଜିନିଷଗୁଡ଼ିକ ଏପରି ଭାବରେ ସଜାଇ ରଖୁଥିଲା ଯେ ଯେମିତ ସେଗୁଡ଼ିକ ଖୁବ୍ ଭଲ ଦେଖାଯିବ । ପ୍ରଦର୍ଶନୀରୁ ଫେରି ଆସିଥିବା ତାର ନିଜ ତିଆରି ପ୍ଲାଷ୍ଟରର ପୁରୁଣା ଧୂଳିମିଶା ହଳଦିଆ ମୂର୍ତ୍ତିଗୁଡ଼ାକ ଷ୍ଟୁଡ଼ିଓ ପଛରେ ସଜାଇ ରଖୁଥିଲା, ଭବିଷ୍ୟତରେ ନେଇଁବୁ ମୂର୍ତ୍ତି ଯେ ପ୍ରଦର୍ଶନୀକୁ ପଠାଇବ ସେଗୁଡ଼ାକ ଆଗରେ ଭଲ କରି ବାଛି ବାଛି ହୋଇଥିଲା—ନିଜେ ଏତେ ଖଟୁଛି, ଅଥଚ ବନ୍ଧୁଟି ଆରାମରେ ବସି ଏଣେତେଣେ ଚାହୁଁଛି ଏହା ଭାବି ଭାବି ପଲ୍ୟୁାନ ଖୁବ୍ ବିରକ୍ତ ହେଉଥିଲା । ଢେର୍ ବେଳ ଯାଏ ବିରକ୍ତିଟା ଗୁପ୍ତ ରଖିବାକୁ ଚେଷ୍ଟା କରି, ସେ ଶେଷରେ ଅଧୈର୍ଯ୍ୟ ହୋଇ କହି ପକାଇଲା : 'ତା ହେଲେ ଏଯାଏଁ, ଏଠାରୁ ଯାଉନୁ ନା ? ହଁ ନା ନାଁ ?'

'ନା ।'

'ବେଶ୍, ଈଶ୍ବରଙ୍କ ଦ୍ୱାହି ତୋତେ, ମୁଁ ଯେଉଁ ପାଖଟା ପରିଷ୍କାର କରିଛି ଅନ୍ତତଃ ସେଇଠି ରଖି ଟିକିଏ ମଇଳା କର ନା। ମୁଁ ତୋତେ କହିଛି ନା, କେତେ ଜଣ ଭଦ୍ରମହିଳାଙ୍କର ଅପବାଦ ଅଛି।'

'ମୋର ତୋତେ ବିଶ୍ୱାସ ହେଉ ନାହିଁ।'

'ଏହି ଚିଠି। ଦେଖ ! କମାଣ୍ଡାର ଯେଷଲ୍ଲିଙ୍କ ପାଖରୁ କାଲି ଆସିଛି : "ସ୍ନେହର ବନ୍ଧୁ, ଆପଣଙ୍କୁ ଜଣାଇ ଦେଉଛି ଯେ କାଲି ପ୍ରାୟ ଏଗାରଟା ବେଳେ—" ।'

'ଏଗାରଟା କଣ ବାଜି ନାହିଁ ?'

'ବାଜି ଗଲଣି !'

'ମୋର ତୋତେ ବିଶ୍ୱାସ ନାହିଁ। ପଢ଼ !'

'ଆପଣଙ୍କୁ ଦେଖା କରିବାକୁ ଯିବେ ମିନୋରି କନ୍······ ସେ ଶଏଟା କଣ ?'

'କନ୍‌ଫୁସିୟସ !'

'କଣ······କମ୍ପା କନ୍‌ଟାଲ୍‌ଭି, ମୁଁ ଠିକ୍ ଭାବରେ ପଢ଼ି ପାରୁଛି ନାହିଁ, ଏବଂ ତାଙ୍କ କନ୍ୟା। ଆପଣ ସେମାନଙ୍କର କିଛି କାମ କରି ଦେବେ, ଏହା ସେମାନଙ୍କର ଇଚ୍ଛା। ମୋର ଦୃଢ଼ ବିଶ୍ୱାସ ଯେ··· ଇତ୍ୟାଦି, ଇତ୍ୟାଦି।'

'ତୁ ନିଜେ ଏହି ଚିଠିଟା ଲେଖି ନାହୁଁ ତ ?' ମୁଣ୍ଡଟି ପୁଣି ବକ୍ଷ ଉପରେ ଗୁଞ୍ଜି, ଯିବେ କଣ୍ଠି ପଚାରିଲା।

'ବୋକା !' ଗଲେଯାନି କହି ପକାଇଲା। ହଗିବ କି ଭାବିବ ଠିକ୍ କରି ନ ପାରି, ସେ ପ୍ରାୟ ହତାଶ ହୋଇ ପଡ଼ିଲା।

କଣ୍ଠି ଉତ୍ତେଜନାରେ ଗୋଟିଏ ଅଙ୍ଗୁଳି ଉଠାଇଲା।

'ମୋତେ ତାହା କହି ପାରିବୁ ନାହିଁ। ମୁଁ ତାର ପ୍ରତିବାଦ କରୁଛି। କାରଣ ପ୍ରକୃତରେ ମୁଁ ବୋକା ହୋଇଥିଲେ, ମୁଁ କେମିତିକା

ଲୋକ ହୋଇଥାନ୍ତି ଜାଣୁନା ? ତାହା ହୋଇଥିଲେ ମୁଁ ଅନ୍ୟ ସମସ୍ତଙ୍କୁ କରୁଣାପୂର୍ଣ୍ଣ ଦୃଷ୍ଟିରେ ଦେଖୁଥାନ୍ତି । ମୁଁ ଖୁବ୍ ଭଲ ପୋଷାକ, ଜୋତା ପିନ୍ଧୁ ଥାନ୍ତି, ଆଉ ଗୋଟାଏ ସୁନ୍ଦର ଟାଇ ··· ହେଲିଓଟ୍ରୋ ରଙ୍ଗର ··· ହେଲିଓଟ୍ରୋ ······ ତାକୁ କଣ କହନ୍ତି ତ ? ······ ହେଲିଓଟ୍ରୋପ, ଏବଂ ତୋ ପରି ଭେଲ୍‌ଭେଟରେ ଗୋଟାଏ ଓଏଷ୍ଟ କୋଟ—ହାୟରେ ମୋର ପଡ଼ା କପାଳ । ଶୁଣ୍ । ମୁଁ ଯାହା କହୁଛି ତାହା କର ଏବଂ ମୋ କହିବାନୁଯାୟୀ କଲେ ତୋର ଖୁବ୍ ଭଲ ହେବ । ଯଦି ସତରେ ଏହି କନ୍‌ଫୁସିୟସ ମହିଳାମାନେ ଏଠାକୁ ଆସୁ ଥାଆନ୍ତି, ତା ହେଲେ ଗ୍ଲୁ ଷ୍ଟୁଡ଼ିଓଟା ପୁଣି ଖୁବ୍ ପରିଷ୍କାର କରି ଦେବା, ତା ନ ହେଲେ ସେମାନଙ୍କର ତୋ ଉପରେ ଗୋଟାଏ ଅତି ଖରାପ ଧାରଣା ଜାତ ହେବ । ସେମାନେ ଆସି ଦେଖିବେ ଯେ ତୁ ଏକବାରେ କାର୍ଯ୍ୟରେ ମଗ୍ନ, ଝାଳ ବହି ଯାଉଛି ······ କଣ କହନ୍ତି ଏହାକୁ ସେମାନେ ? ········ ମଥାର ଝାଳ ······ ମୋର କହିବାର କଥା, ମୁଣ୍ଡ ଝାଳ ତୁଣ୍ଡରେ ମାରି । କଞ୍ଚି କାଢ଼ିଅ ନେ, ଷ୍ଟାଣ୍ଡ ଉପରେ ରଖ, ଆଉ ମୁଁ ଏଠାରେ ଏମିତି ଗଢ଼ୁଛି, ଯେପରି ଦୂର ପାଖୁ ଏହାର ଗୋଟାଏ ପ୍ରତିମୂର୍ତ୍ତି ଗଢ଼ । ଆମେ ତାକୁ କହିବା "ଶ୍ରମିକ ।" ମୋ କଥାଟା ମନେ ରଖ—ନାମ ଦେଖି ନ୍ୟାସନାଲ ଗ୍ୟାଲେରୀ ତୁରନ୍ତ କିଣି ନେବ । ମୋ ଜୋତା ··· ହଁ, ଖୁବ୍ ପୁରୁଣା ହୋଇ ଗଲାଣି; କିନ୍ତୁ ତୁ ଗୁହିଲେ ତାକୁ ଏକବାରେ ନୂଆ କରି ଦେଇ ପାରୁ, କାରଣ, କୋଟେ ଖୋସାମତ କରୁ ନାହିଁ, ମୁଁ କହିପାରେଁ, ଭାସ୍କର ହିସାବରେ, ତୁ ଜଣେ ବେଶ୍ ପକ୍କା ମୋଚୀ ।'

କନ୍‌ଷ୍ଟାନ୍‌ଟିନୋ ପଲିଯାନର ଏଥି ପ୍ରତି ନଜର ନ ଥିଲା । ସେ କାନ୍ଥରେ କେତେ ଗୁଡ଼ିଏ କାର୍ଟୁନ ଛବି ଟାଙ୍ଗୁଥିଲା । ତା ମଧ୍ୟରେ ହିଲ୍ଲିର ଜୀବନଟା ଏକବାରେ ବ୍ୟର୍ଥ, ଗତ ଯୁଗର ପାଇଁ-ପାଇଁ-ଅଟକି-

ଠିଆ-ହୋଇଥିବା ଏକ ସ୍ତୁତ, ଶିଳ୍ପୀ ମହଲରେ ସେହି ପୁରୁଣା ଗୁଲ୍ ଚଲଣ—ଅପରିଚ୍ଛନ୍ନ ଓ ଅବହେଳିତ ବେଶହୋଷା, ଢିଲା, ଏବଂ ତାର ଏହି ମଜ୍ଜାଗତ ଆଳସ୍ୟ ସ୍ୱାଭାବିକ । ନ ହେଲେ, କାମ କରିବା ପାଇଁ ତାର ସ୍ପୃହା ଜାତ ହେଲେ ସେତେବେଳେ ତା ମଧ୍ୟରୁ ଯାହା ବାହାରେ ତାହା ଶ୍ରେଷ୍ଠ ଶିଳ୍ପୀଙ୍କ କାର୍ଯ୍ୟ ସହିତ ବି ତାଳ ଦେବ । ପଲ୍ଟ୍ରାନ ସେ ସମ୍ବନ୍ଧରେ କିଛି ଜାଣେ : କେତେ ସମୟରେ କୌଣସି ମୂର୍ତ୍ତି ଭିତରେ କୌଣସି ଏକ ବିଶେଷ ଭାବ ଫୁଟାଇବା ପାଇଁ ସେ ଯେତେବେଳେ ଟାଳ-ନାଳ ହେଉଥାଏ, ତାର ବନ୍ଧୁଟି ଷ୍ଟୁଡିଓକୁ ଆସି ଅବହେଳିତ ଭାବରେ ତାର ବୁଢ଼ା-ଆଙ୍ଗୁଳିର କେତୋଟି ସ୍ପର୍ଶରେ ତାହା ସହଜରେ ଫୁଟାଇ ପାରେ । କିନ୍ତୁ କଳ୍କି ପଢ଼ାପଢ଼ି କରିଥିଲେ ଆହୁରି ଭଲ ହୋଇ ଆଆନ୍ତା, ଭାସ୍କର୍ଯ୍ୟ-ଶିଳ୍ପର ଇତିହାସ ସମ୍ବନ୍ଧରେ ଠିକଏ କିଛି ଜାଣିଥିଲେ ବି ଚଳନ୍ତା । ତା ଛଡ଼ା ନିୟମିତ ଭାବରେ ଜୀବନ ଯାପନ କରି ନିଜ ବେଶହୋଷା ପ୍ରତି ଠିକଏ ଦୃଷ୍ଟି ଦେବା ତାର ଉଚିତ । ପ୍ରକୃତରେ, ସେ ଏହିସବୁ ଅଦ୍ଭୁତ ଭାବନା ମଧ୍ୟରେ ରହିଥାଏ ଓ ଏମିତି ଅଜବ ପୋଷାକ ପିନ୍ଧିଥାଏ ଯେ ତାକୁ ଦେଖିଲେ ସହି ହୁଏ ନାହିଁ । କାହିଁକି, ପଲ୍ଟ୍ରାନ ନିଜେ ଦୁଇ ବର୍ଷ ବିଶ୍ୱ-ବିଦ୍ୟାଳୟରେ ପଢ଼ି ଏଯଣି ତ ବେଶ୍ ଅସ୍ତେ ଅସ୍ତେ ତାର କାମ କରି ଯାଉଛି ······

ଏତିକି ବେଳେ ଦୁଆରରେ ଦୁଇଟି ମୃଦୁ କରାଘାତ ହେଲା । ଟୁଲ ଉପରେ ଠିଆ ହୋଇ ସେ ତାର ସ୍କେଚଗୁଡ଼ାକ ଟାଙ୍ଗୁଥିଲା, ଶବ୍ଦ ଶୁଣିପାରି କୁଦି ପଡ଼ିଲା ।

'କଣ, ତୁ ଯିବୁ ନାହିଁ ?' କହିର ଧାତ ମୁଠାକୁ ଚାପିକି, ସେ ତାକୁ କହିଲା ।

'ସେମାନେ ଆସିଗଲେ ମୁଁ ଗୁଳିଫିବି', ଉଠି ପଡ଼ିବାର କୌଣସି ଇଙ୍ଗିତ ନ ଦେଖାଇ, ତା ବନ୍ଧୁ ଜବାବ ଦେଲା । 'ସେତେ ଜୋର ଓ ଶକ୍ତିଶାଳୀ ହୁଅ ନାହିଁ । ଏମିତ ସ୍ୱାର୍ଥପର ଅସଭ୍ୟ ହେଲେ ଚଳିବ ନା, ତାଙ୍କ ସହିତ ମୋର ଅନ୍ତତଃ ପରିଚୟ କରାଇ ଦେ ।'

ପଲ୍ୟାନା ତା କଯାଳ ଉପରୁ ସୁନ୍ଦର କୁଞ୍ଚିକୁଞ୍ଚିଆ ବାଳ ଝେଙ୍କ ଦେଇ, ଦୁଆର ଖୋଲି ଦେବାକୁ ଦୌଡ଼ିଗଲା ।

ମିସେସ କନ୍‌ସାଲଭି ଘରେ ପ୍ରବେଶ କଲେ । ପଛରେ ତାଙ୍କର ଝିଅ, ତରୁଣୀ ବାଳିକାଟିଏ, ଗମ୍ଭୀର ଶୋକ-ପୋଷାକ ପରିଧାନ କରିଛି, ମୋଟା କ୍ରେପ୍‌ର ଓଢ଼ଣାରେ ତାର ମୁହଁଟି ଆବୃତ । ତା ହାତରେ ଗୁଡ଼ା ହୋଇଥିବା ଖଣ୍ଡିଏ ଲମ୍ବା କାଗଜ । ମାଆ ସୁନ୍ଦର ହାଲ୍କା ପାଉଁଶିଆ ରଙ୍ଗର ପୋଷାକ ପିନ୍ଧିଛି ତାର ସୁଗଠିତ ଦେହକୁ ଖୁବ୍ ଚମତ୍କାର ମାନୁଛି । ମଥାର ବାଳ ତାର ପୋଷାକ ପରି ପାଉଁଶିଆ ବର୍ଣ୍ଣ ହୋଇ ଗଲାଣି, କିନ୍ତୁ ତାହା ଯୁବତୀ-ସୁଲଭ ଢଙ୍ଗରେ ବନ୍ଧା ଯାଇଛି । ମଥାରେ ଭାଓଲେଟ୍ ଫୁଲ ଖୋଷା ହୋଇଥିବା ଗୋଟିଏ ସୁନ୍ଦର ଟୋପି ଟାଏ ।

ମିସେସ କନ୍‌ସାଲଭିଙ୍କୁ ଦେଖିଲେ ଜଣା ପଡ଼ୁଥାଏ, ବୟସ ହୋଇ ଯାଇଥିଲେ ସୁଦ୍ଧା ସେ ଯେ ଏଖଣି ସୁନ୍ଦରୀ ଏହି ବିଷୟରେ ସେ ବିଶେଷ ସଚେତନ । ଝିଅଟି ଯେତେବେଳେ ମୁହଁର ଓଢ଼ଣାଟି ଟୋପି ଉପରକୁ ଉଠାଇଲା, ସେତେବେଳେ ଦେଖାଗଲା ଯେ ଶୋକରେ କାତର ହୋଇଥିଲେ ବି ସେ ତ କମ୍ ସୁନ୍ଦରୀ ନୁହେଁ ।

ପ୍ରାଥମିକ ଭଦ୍ରତା-ବିନିମୟ ପରେ, ପଲ୍‌ଦ୍ଭାନ ଲକ୍ଷ୍ୟ କଲା ଯେ ହାତ ଦୁଇଟି ପକେଟରେ ପୁରାଇ, ଟୋପିଟା ପ୍ରାୟ ନାକ ଉପରକୁ ଖସାଇ ଆଣି ଏବଂ ଖଣ୍ଡିଏ ଦରପୋଡ଼ା ସିଗାରେଟ ଓଠ ଭିତରେ ପୁରାଇ କଲ୍ଲି ତଥାପି ସେଠାରେ ଟହଲ ମାରୁଥିଲା । ତାର ଚାଲ୍ ଯିବାର କୌଣସି ଲକ୍ଷଣ ଦେଖାଯାଉ ନ ଥିଲା ।

ସିନୋରିନା କନ୍‌ସୋଲ୍‌ଭି ହଠାତ୍ ଅବାକ୍ ହୋଇ ଯାଇ ମୁଣ୍ଡ ତଳକୁ କରି, ପଚାରିଲା, 'ସିନୋର କଲ୍ଲି ? ସିରେ କଲ୍ଲି ? ଭାସ୍କର ?'

ସିଧା ଠିଆ ହୋଇ ଏବଂ ମଥାରୁ ଟୋପିଟା ଉଠାଇ ନେଇ, କଲ୍ଲି ଜବାବ ଦେଲା, 'ଭାସ୍କର ? କାହିଁକି ନୁହେଁ ? ହଁ, ମୁଁ ବି ଜଣେ ଭାସ୍କର ।'

ସିନୋରିନା କନ୍‌ସୋଲ୍‌ଭି ଟିକିଏ ବିରକ୍ତି ଓ ଅପ୍ରସ୍ତୁତ ବୋଧ କଲା । ସେ କହିଲା, 'କିନ୍ତୁ ମୁଁ ଶୁଣିଥିଲି ଯେ ଆପଣ ଆଉ ରୋମରେ ରହୁ ନାହାନ୍ତି ।'

'ନା ! ମୁଁ ଏଠାରେ ଭଲରେ ଅଛି । ସିନୋରିନା, କହିବାକୁ ଗଲେ, ମୁଁ ଛୁଟିରେ ଅଛି । ପ୍ରଥମ, ଗୋଟାଏ ସ୍କଲାରସିପ (ବୃତ୍ତି) ନେଇ ରୋମ ଭଳି ଗୋଟିଏ ସୁନ୍ଦର ସ୍ଥାନରେ ଆସି ଶରତକାଳ ଆଳସୁଆମି କରି କଟାଇବି ବୋଲି ସ୍ଥିର କରିଥିଲି, ଏବଂ ତା ପରେ...'

ମାଥା ମୃଦୁ ହସୁଥିଲା । ସିନୋରିନା କନ୍‌ସୋଲ୍‌ଭି ତା ଅଡ଼କୁ ଅନାଇ, କହିଲା : 'କଣ କରିବାକୁ ହେବ ?'

'ମୁଁ ଚାଲି ଯାଉଛି ?' କଲ୍ଲି ପଚାରିଲା ।

ସିନୋରିନା ଚଞ୍ଚଳ ଚଞ୍ଚଳ ଜବାବ ଦେଲା, 'ନା, ନା, ଆପଣ ଚାଲିଯିବେ କାହିଁକି, ଏଠାରେ ରହିବାକୁ ମୁଁ ଆପଣଙ୍କୁ ଅନୁରୋଧ କରୁଛି, କାରଣ......'

ମାଈଁ ଚିତ୍କାର କଲା, 'କି ଅପୂର୍ବ ମିଳନ !' ତା ପରେ ପଲ୍‌ସ୍ନାନ ଅଡ଼କୁ ଫେରିପଡ଼ି, ସେ ପୁଣି କହିଲା, 'କିନ୍ତୁ ଯେ କୌଣସି ମତେ ଗୋଟାଏ ଉପାୟ ସ୍ଥିର କରାଯିବ ···· ·ଆପଣମାନେ ଦୁଇ ଜଣ ବନ୍ଧୁ, ନୁହଁନ୍ତି ନା ?'

'ଖୁବ୍ ଘନିଷ୍ଠ ବନ୍ଧୁ,' ପଲ୍‌ସ୍ନାନ ତୁରନ୍ତ ଜବାବ ଦେଲା ।

'ଏତେ ଘନିଷ୍ଠ ଯେ ଏହି କେତେ ମୁହୂର୍ତ୍ତ ଆଗରୁ ସେ ମୋତେ ତଡ଼ି ଦେବା ପାଇଁ ବ୍ୟସ୍ତ ହୋଇ ପଡ଼ିଥିଲା,' ବାଧା ଦେଇ କଲି କହିଲା ।

'ଚୁପ୍ କର !' ଗଳାର ସ୍ୱର ନରମ କରି ପଲ୍‌ସ୍ନାନ କହିଲା । ତା ପରେ ମହିଳାମାନଙ୍କ ଅଡ଼କୁ ବୁଲିପଡ଼ି ସେ କହିଲା, 'ଆପଣମାନେ ବସନ୍ତୁ । ଆପଣମାନଙ୍କର ଆଗମନର କାରଣ କଣ ଜାଣିପାରେଁ କି ?'

ଫିଲୋମିନା କନ୍‌ସାଲ୍‌ଭୋ, ସୋଫା ଉପରେ ବସୁଁ ବସୁଁ, ଆରମ୍ଭ କଲା, 'ବେଶ୍, ଘଟଣାଟି ହେଉଛି, ମୋ ପ୍ରିୟ ବାପା ଯାହାଙ୍କର ବାଗ୍‌ଦତ୍ତା ଥିଲି ସେ ହଠାତ୍ ମରି ଯିବାରୁ ତାର ଅଳ୍ପ ଏ ଦୁରବସ୍ଥା ।'

'କି କରୁଣ !'

'ଓଃ !'

'ଏହା ଏକ ଦାରୁଣ ଆଘାତ ! ଠିକ୍ ତାର ବିବାହ ପୂର୍ବେ— କଳ୍ପନା କରନ୍ତୁ ତ ······ ସେ ଶିକାରକୁ ଯାଇଥିଲେ, ଗୋଟିଏ ଦୁର୍ଘଟଣାରେ ପ୍ରାଣ ଗଲା । ଆପଣମାନେ ବୋଧହୁଏ ଖବର କାଗଜରେ ଏହା ପଢ଼ିଥିବେ । ଜୁଲିୟୋ ସୋରନ୍ନି ।'

'ଓଃ ! ହଁ, ସୋରନ୍ନି,' ପଲ୍‌ସ୍ନାନ କହିଲା । 'ଖବର କାଗଜରେ ଲେଖା ଥିଲା ଯେ ତାଙ୍କ ବନ୍ଧୁକର ଗୁଳି ଫୁଟିଗଲା—'

'ଗତ ମାସର ଆରମ୍ଭରେ ······ ନା, ତାର ପୂର୍ବ ମାସ······ ମୋର କହିବାର କଥା, ଏବେ ତିନି ମାସ ହୋଇଗଲା । ବିଚାରୀ

ମୋର ଜଣେ ଦୂର ସମ୍ପର୍କୀୟ ଭାଇର ପୁଅ, ସ୍ତ୍ରୀ ମରିଯିବା ପରେ ତା ବାପ ଅମେରିକା ଚାଲିଯାଇ ରହିଛନ୍ତି । ବେନ୍, ଦେମ୍, ଜୁଲିଯେଟ୍ (ମୋ ଝିଅର ନାମ ମଧ୍ୟ ଜୁଲିଯା)—'

ଏତିକି ବେଳେ ପଲାଯାନ୍ତି ନମ୍ର ଭାବରେ ମଥା ନତ କଲା ।

ମାଆ କହି ଚାଲିଲା, 'ଭାବୀ ସ୍ୱାମୀର ସ୍ମୃତିରକ୍ଷା ପାଇଁ ଜୁଲିଏଟ୍ ଭେଷ୍ଟନୋରେ (ରୋମରେ ପ୍ରଧାନ କବର ସ୍ଥାନ) ଗୋଟିଏ ସ୍ମୃତିସ୍ତମ୍ଭ ନିର୍ମାଣ କରିବାକୁ ଚାହେଁ । ବର୍ତ୍ତମାନ ସେଠାରେ କେବଳ ଗୋଟିଏ ମାମୁଲି କବର ଅଛି । ଏହି ସ୍ମୃତି ସ୍ତମ୍ଭଟି କପରି ହେବ ଏ ବିଷୟରେ ତାର ନିଜର କେତେ ଗୁଡ଼ିଏ ଧାରଣା ଅଛି । କାରଣ, ମୁଁ ଆପଣମାନଙ୍କୁ ଜଣାଇଁ ପାରେ, ମୋ ଝିଅର ଷ୍ଟେଟଂ ବିଷୟରେ ସର୍ବଦା ଯଥେଷ୍ଟ ପ୍ରତିଭା ଅଛି ।'

'ନା ...... ମାଦ୍ କନ୍ ,' ଝିଅଟି ଅଣ୍ଡି ତଳକୁ କରି, ସାଙ୍କୁଚିତ ସହିତାରେ, ଲାଜ ଲାଜ ହୋଇ ବାଧା ଦେଲା । 'ସେଠା ଗୋଟାଏ ସମୟ-କାଟିବା ଆମୋଦ, ଏତିକି ମାତ୍ର ।'

'ମାଫ୍ କରିବେ, କିନ୍ତୁ ଡିଂସ ଜୁଲିଯୋର ବ ଇଚ୍ଛା ଆପଣଙ୍କ ଠାରୁ ଶିଖିବ— '

'ମାଆ, ରହ !' ଜୁଲିଯେଟ୍ ଜୋର ଦେଇ କହିଲା । 'ମୁଁ ଗୋଟିଏ ସରକ ପତ୍ରିକାରେ ଏହି ଭଦ୍ର ବ୍ୟକ୍ତିଙ୍କର, ଅର୍ଥାତ୍ ସିନୋର କଲ୍ଲିଙ୍କ ଦ୍ୱାରା ଅଙ୍କିତ ଗୋଟିଏ କବର-ସ୍ମୃତି ସ୍ତମ୍ଭର ସ୍କେଚ (ଛବି) ଦେଖି, ମୁଁ ଖୁବ୍ ପ୍ରୀତ ହୋଇଗଲି, ବେଂ ......'

'ହିଁ, ତାହାହିଁ ଆମ ଆଗମନର ଉଦ୍ଦେଶ୍ୟ,' ଝିଅକୁ କଥା କହିବାକୁ ଦ୍ୱିଧା କରୁଛି ଦେଖି, ତା ମାଆ ଯୋଗ କରିଦେଲା ।

'କିନ୍ତୁ,' ଝିଅଟି କହିବାକୁ ଲାଗିଲା, 'ଏହାକୁ ଟିକିଏ ଅଦଳି ବଦଳ କରିବାକୁ ମୁଁ ଚାହୁଁଛି ···'

'କହୁ ପାରିବ କି ସେଇଟା କେଉଁଠା,' କହିଲି ଗସ୍ତୁରେଲ । 'ଜୀବନ୍ତ ମଣିଷମାନେ ମୋତେ ଆଦର କରୁ ନାହାନ୍ତି ଦେଖି, ଅନ୍ତତଃ ମୃତ-ବ୍ୟକ୍ତିଙ୍କ ପାରୁ କିଛି କାମ ପାଇବା ଆଶାରେ, ମୁଁ କେତେ ଗୁଡ଼ିଏ କବରର ସ୍କେଚ (ନକ୍ସା) କରୁଛି ।'

ପଲ୍‌ସ୍ମାନ ଯେ ଗୋଟିଏ ପାଖକୁ ଘୁଞ୍ଚି ଯାଉଛି ଏହା ଦେଖି, ଟିକିଏ ବିରକ୍ତ ହୋଇ କହିଲା, 'ମାଫ୍ କରିବେ, ସିନୋରିନା । ଆପଣ କଣ ଭାବୁଛନ୍ତି ଯେ ମୋ ବନ୍ଧୁର ଗୋଟିଏ ସ୍କେଚ ଅନୁଯାୟୀ କୌଣସି ସ୍ମୃତିସ୍ତମ୍ଭ ତିଆରି କରିବେ ?'

'ନା, ଠିକ୍ ତାହା ନୁହେଁ ······ନା, ମୋର ଇଚ୍ଛା ଏମିତିକା,' ଝିଅଟି ଉଲ୍ଲାସ ସହକାରେ ଜବାବ ଦେଲା । 'ସିନୋର କଳ୍କିଙ୍କର ଛବିର ଉଦ୍ଦେଶ୍ୟ ମୃତ୍ୟୁ ଜୀବନକୁ ତା ଆଡ଼କୁ ଟାଣି ନେଉଛି—ଯଦି ମୁଁ ଠିକ୍ ଭାବରେ ବୁଝିଥାଏଁ···'

'ଓ ! ବୁଝି ପାରିଲି, ଆପଣ କେଉଁଠାର କଥା କହୁଛନ୍ତି,' କଳ୍କି କହିଲା । 'ଗୋଟିଏ ଆବରଣ ଭିତରେ ଏକ କଙ୍କାଳ, ସେଇଟା ତ ? ଆବରଣ ଭିତରୁ ଜଣେ ତାହା ସ୍ପଷ୍ଟ ଦେଖିପାରେ । ସେ ଜୀବନକୁ ମୁଠାଇ ଧରୁଛି—ଜଣେ ସୁନ୍ଦରୀ ବାଳିକା—ଯେ ତାହା ସହିତ କୌଣସି ସମ୍ପର୍କ ରଖିବାକୁ ଚାହୁଁ ନାହିଁ । ହଁ, ହଁ···ଖୁବ୍ ସୁନ୍ଦର । ଅପୂର୍ବ ! ସେହି ଛବିଟା କଥା ଆପଣ କହୁଛନ୍ତି ତ ।'

ସେହି ଅଦ୍‌ଭୁତ-ଚେହେରାର ବିଦେଶୀ ଶିଳ୍ପୀର ଆତ୍ମକେନ୍ଦ୍ରିକତାରେ ସିନୋରା ବନସାଲ୍‌ଭି ଅସ୍ଥିର ହେଲେ ସୁଦ୍ଧା, ହସ ଚୁପି ରଖି ପାରିଲେ ନାହିଁ ।

'ସେ ବିନସ୍ମୀ, ନୁହଁନ୍ତି ନା ?' ପଲ୍‌ସ୍ମାନ ତାଙ୍କୁ ଲକ୍ଷ୍ୟ କରି କହିଲା । 'ଏକବାରେ ଅସ୍ୱାଭାବିକ ଧରଣର !'

'ଆ, ଜୁଲିଆ,' ସେ ତା ଝିଅକୁ କହିଲା । 'ଆଉ ଭୂମିକା ନ କରି ତୋ ଛବିଟା ସେମାନଙ୍କୁ ଦେଖାଇଲେ ବୋଧହୁଏ ଭଲ ହେବ ।'

ଝିଅଟି ଅନୁରୋଧ କଲା, 'ରୁହ, ମାଆ । ପ୍ରଥମେ ସିନୋର ପଲିସ୍ମାନିଙ୍କୁ ବ୍ୟାପାରଟି ଖୁବ୍ ପରିଷ୍କାର ଭାବରେ ବୁଝାଇ ଦେଲେ ବରଂ ଭଲ ହେବ । କଥାଟି ହେଉଛି, ସ୍ୱ,ତନ୍ତ୍ରମ୍ଭର ଭାବନା ପ୍ରଥମେ ଯେତେବେଳେ ମୋ ମନକୁ ଆସିଲା, ମୁଁ ସ୍ୱୀକାର କରୁଛି ଯେ ସେତେବେଳେ ଏହି କାର୍ଯ୍ୟଟି ତୁରନ୍ତ ସିନୋର କଲ୍ଲିଙ୍କ ଉପରେ ନ୍ୟସ୍ତ କରିବି ବୋଲି ଭାବିଥିଲି । ତାଙ୍କ ଛବିଟା ହିଁ ତାହାର କାରଣ ।' କଲ୍ଲିଙ୍କ ଆଡ଼କୁ ବୁଲି ପଡ଼ି, ସେ ପୁଣି କହିଲା, 'କିନ୍ତୁ ମୁଁ ଶୁଣିଥିଲି, ଆଗରୁ ବି ତାହା କହିଛନ୍ତି, ଯେ ଆପଣ ଆଉ ରୋମରେ ରହୁ ନାହାନ୍ତି । ତେଣୁ ସେତେବେଳେ ମୋ ନିଜ ଭାବନା ଓ ଧାରଣା ଅନୁଯାୟୀ ତାଙ୍କ ଛବିଟାକୁ ମୋର ନିଜସ୍ୱ କରିନେବା ପାଇଁ ଯଥାସାଧ୍ୟ ଚେଷ୍ଟା କଲି—ଅର୍ଥାତ୍, ତାକୁ ଏପରି ଭାବରେ ଅଦଳ ବଦଳ କଲି ଯଦ୍ୱାରା ତାହା ମୋ କଥାଟା ଏବଂ ମୋ ଅଭିଳାଷ ପ୍ରକାଶ କରିବ । ମୁଁ ମୋ କଥାଟି ପରିଷ୍କାର କରି କହୁଛି ତ ?'

'ଚମତ୍କାର ଭାବରେ ଅବଶ୍ୟ, ପଲିସ୍ମାନି ଉତ୍ସାହିତ ହୋଇ କହିଲା ।

ଝିଅଟି କହି ଚାଲିଲା, 'ମୃତ୍ୟୁ ଓ ଜୀବନର ମୂର୍ତ୍ତି ଦୁଇଟିକୁ ମୁଁ ଛାଡ଼ି ଦେଲି, କିନ୍ତୁ ମୃତ୍ୟୁର ଜୋର୍ କରି ଜୀବନକୁ ଧରି ନେବା ଭାବନାଟିକୁ ମୁଁ ଏକବାରେ ବଦଳାଇ ଦେଇଛି । ମୁଁ ଏହି ପରିବର୍ତ୍ତନଟି ମାନ କରି ଦେଇଛି । ମୋର ପରିବର୍ତ୍ତିତ ଛବିଟିରେ, ମୃତ୍ୟୁ ଆଉ ଜୀବନକୁ ଭିଡ଼ି ଧରି ନାହିଁ, କିନ୍ତୁ ତାର ଭାଗ୍ୟକୁ ଅଧୀନ ସେ ଜୀବନକୁ ବିବାହ କରୁଛି ।'

'ମୃତ୍ୟୁ ଜୀବନକୁ ବାଧ୍ୟ ଦେଉଛି !' ଏକ ବିସ୍ମୟାତ୍ମକ ସ୍ୱରରେ ପଲ୍ୟାନି କହିଲା ।

'ତା ପରେ !' କହି ଚିତ୍କାର କଲା । 'ଜୀବନର ମୃତ୍ୟୁକୁ ବିବାହ ଏହି ଭାବନା !'

ଝିଅଟି ଟିକିଏ ନମ୍ର ସ୍ୱରରେ ବେଶ ଖୋଲାଇ କହିଲା, 'ଜୀବନର ମୃତ୍ୟୁ ସହିତ ବିବାହ । ଅନ୍ତର ମଧ୍ୟ, ମୁଁ ଗୋଟିଏ ବିବାହ ମାଧ୍ୟମରେ ଏହାକୁ ସ୍ପଷ୍ଟ ଭାବରେ ଫୁଟାଇବାକୁ ଚେଷ୍ଟା କରିଛି । ପିକୋର କହି ଯେମିତ କରିଥିଲେ, କଙ୍କାଳଟି ଠିକ୍ ସେମିତ ଠିଆ ହୋଇଛି, କିନ୍ତୁ ବିବାହ ପୋଷାକର ଭାଙ୍ଗ ଭିତରୁ ତାର ଗୋଟିଏ ମାଂସ ହାତ ବାହାରକୁ ଫୁଟି ଦିଶୁଛି । ସେହି ହାତରେ ବିବାହ ମୁଦିଟିଏ । ଆଉ ଜୀବନ, ଲଜ୍ଜାନମ୍ର ବିନୀତ ଦୃଷ୍ଟିରେ, କଙ୍କାଳର ଦେହକୁ ଲାଗି ଠିଆ ହୋଇ ମୁଦିଟି ନେବା ପାଇଁ ତାର ହାତ ଧରିଛି ।'

'ଚମତ୍କାର ! ଖୁବ୍ ସୁନ୍ଦର ! ମୁଁ ଏବେ ବୁଝି ପାରିଲି,' କହି କହି ପକାଇଲା । 'କିନ୍ତୁ ଏହା ଆଉ ଗୋଟିଏ ଭାବନା— ଅପରୂପ ! ଆଉ ଗୋଟିଏ ଏକବାରେ ନୂଆ ଚିନ୍ତା, ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ! ଅପରୂପ ! ମୁଦି ······ ଅଙ୍ଗୁଳି ! ସୁନ୍ଦର !'

'ଠିକ୍, ହଁ, ମୁଁ ମାନୁଛି, ଏହା ଟିକିଏ ଅଲଗା,' ତାର ଉଚ୍ଛ୍ୱସିତ ପ୍ରଶଂସାରେ ଲଜ୍ଜିତ ହୋଇ, ଝିଅଟି ପୁଣି ଯୋଗ କଲା । 'କିନ୍ତୁ ଅସ୍ୱୀକାର କରି ହେବ ନାହିଁ ଯେ ମୁଁ ଆପଣଙ୍କ ଛବିଠାରୁ ସୁଯୋଗ ନେଇଛି ଏବଂ ······'

'ସେଥିପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ,' କହି କହିଲା । 'ଆପଣଙ୍କ ଭାବନା ମୋ ଠାରୁ ଯଥେଷ୍ଟ ସୂକ୍ଷ୍ମତର, ଏବଂ ଆପଣଙ୍କର ନିଜସ୍ୱ ବି । ମୋ କଥା କହିବାକୁ ଗଲେ, କେବଳ ଭଗବାନ ଜାଣନ୍ତି ସେହି ଭାବନାଟି ତାହାର ······'

ସିନୋରିନା କନ୍‌ସାଲ୍‌ଭି ନିଜର ହାତ ଝଟାଇଲା ଏବଂ ପୁଣି ଆଖି ତଳକୁ ଆଣିଲା ।

ତାର ମାଆ ଅସନ୍ତୁଷ୍ଟ ଭଙ୍ଗୀରେ କହିଲା, 'ସେତ କହିବାକୁ ଗଲେ, ତା ଇଚ୍ଛା ମୁତାବକ କରିବା ପାଇଁ ମୁଁ ଝିଅକୁ ଛାଡ଼ ଦେଇଥାନ୍ତି, କିନ୍ତୁ ମୁଁ କହିବି ଯେ ତାର ଭାବନା ମୋତେ ଆଦୌ ପସନ୍ଦ ଲାଗୁ ନାହିଁ ।'

'ମାଆ, ଚୁପ !' ଝିଅଟି ପୁଣି କହିଲା । ତା ପରେ ପଲ୍‌ଗ୍ଲିଆନି ଆଡ଼କୁ ବୁଲିପଡ଼ି, ସେ କହିବାକୁ ଲାଗିଲା: 'ଅଚ୍ଛା, କେତେ ଦିନ ହେବେ, ଆମର ପୁରୁଣା ବନ୍ଧୁ କମାଣ୍ଡର ସେରାଲ୍ଲିଙ୍କୁ ଏହି ବିଷୟରେ ପରାମର୍ଶ ମାଗିଥିଲି ......'

'ବିଭାଘରରେ ତାଙ୍କର ଜଣେ ସାକ୍ଷୀ ହେବାର ଥିଲା,' ତାର ମାଆ ଦୀର୍ଘଶ୍ୱାସ ଛାଡ଼ି କହିଲା ।

'ଆଉ କମାଣ୍ଡର ଆପଣଙ୍କ ନାମ କହିଲେ,' ଝିଅଟି କହି ଚାଲିଲା, 'ତେଣୁ ଆମେ ଆପଣଙ୍କ ନିକଟକୁ ପଚାରିବାକୁ ଆସିଥିଲୁ—'

ନା, ନା, ମୋତେ ମାଫ୍ କରନ୍ତୁ, ସିନୋରିନା,' ପଲ୍‌ଗ୍ଲିଆନି ତତ୍‌କ୍ଷଣାତ୍ ଜବାବ ଦେଲା । 'ମୋର ବନ୍ଧୁଙ୍କୁ ଯେତେବେଳେ ଆପଣ ଏଇଠି ପାଇଛନ୍ତି ......'

ବୁଢ଼ି କ୍ରୋଧ ପରବଶ ହୋଇ ହାତ ହଲାଇ କହିଲା, 'ଉଃ, ବାଜେ ବକବକ ହୁଅନା ! ତୋ କଥା ଶୁଣିଲେ ମୋ ଧୈର୍ଯ୍ୟ ଛୁଟି ଯାଉଛି ।'

ସେ ଦୁଆର ଆଡ଼କୁ ଚାଲି ଯାଉଥିଲା । ପଲ୍‌ଗ୍ଲିଆନି ତା ହାତ ଧରି ତାକୁ ଟାଣି ନେଇ, କହିଲା: 'ଦେଖ୍ ! ତୁ ଭୁଲ ବୁଝୁଛୁ ? ସିନୋରିନା ଖାଲି ମୋ ପାଖକୁ ଆସିଥିଲେ, କାରଣ ସେ ଜାଣିଥିଲେ ଯେ ତୁ ପ୍ରେମରେ ନାହୁଁ ।'

'କିନ୍ତୁ ସେ ସମୁଦାୟ ନକ୍ସାଟା ବଦଳାଇ ଦେଇଛନ୍ତି !' ନିଜକୁ ମୁକ୍ତ କରିବା ପାଇଁ ଭଙ୍ଗାଭଙ୍ଗ କରୁଁ କରୁଁ, କଲି ବଡ଼ ପାଟିରେ କହିଲା । 'ମୁଁ ଯାଉଛି ! ମୋର ସେଥିରେ କଣ ଅଛି ? ସେ ତୋ ପାଖକୁ ଆସିଛନ୍ତି । ମୋତେ ମାଫ୍ କରିବେ, ସିନୋରିନା, ସିନୋରା । ନମସ୍କାର ।'

'ଶୁଣ !' ହାତ ନ ଛାଡ଼ି, ପଲିସ୍ତାନ ଦୃଢ ସ୍ୱରରେ କହିଲା । 'ମୁଁ ତ ଏ କାର୍ଯ୍ୟର ଭାର ଗ୍ରହଣ କରୁ ନାହିଁ । ତୁମେ ବି ମନା କରୁଛ । ତାର ମାନେ ଆମ ଦୁହିଙ୍କ ଭିତରୁ କେହି ଏ କାମ କରିବେ ନାହିଁ ।'

'କିନ୍ତୁ—ମୋତେ ମାଫ କରିବେ—ତାହାହେଲେ ଆପଣମାନେ ମିଳିମିଶି କରୁ ନାହାନ୍ତି ?' ମାଆ ବାଧା ଦେଇ କହିଲା । 'ଆପଣମାନେ ଦୁହେଁ ମିଶି କଣ ଏହା କରି ପାରିବେ ନାହିଁ ?'

ଝିଅଟି ଉତ୍ସାହ ଚାପି କହି ପକାଇଲା, 'ମୋ ପାଇଁ ଆପଣମାନଙ୍କ ଭିତରେ ......'

କଲି ଓ ପଲିସ୍ତାନ ଏକା ସାଙ୍ଗରେ କହି ପକାଇଲେ, 'ଆଦୌ ନୁହେଁ !'

କଲି କହିବାକୁ ଲାଗିଲା : 'ସିନୋରିନା, ଏହି ବ୍ୟାପାର ସହିତ ମୋର ଆଉ କୌଣସି ସମ୍ବନ୍ଧ ନାହିଁ । ଅଜି ତା ଛଡ଼ା—ଅପଣ ଦେଖନ୍ତୁ—ମୋର କ୍ଷୁଦ୍ରତମ ଯୁକ୍ତି ଏ ବି ନାହିଁ । ତେଣୁ ଏହି କାମ କରିବା ପାଇଁ ମୁଁ ଆଦୌ ଯୋଗ୍ୟ ନୁହେଁ । ଗୁଇଆଡ଼େ ଯେ ଯେଉଁଠି ଅଛି ସମସ୍ତଙ୍କୁ ଗାଳିମନ୍ଦ ଦେବା ଛଡ଼ା ମୋ ଦ୍ୱାରା ଆଉ କିଛି ହେବ ନାହିଁ । ତେଣୁ ଅପଣମାନେ ନିଶ୍ଚୟ ଏହି ପାଗଳଟିକୁ ଏଠାରେ—'

ପଲିସ୍ତାନ କହିଲା, 'ବାଜେ ବକି କିଛି ଫଳ ନାହିଁ । ସିନୋରା ଯାହା କହିଲେ, ହୁଏ ତ ଆମେ ଦୁହେଁ ମିଶି କରିବା, ନଚେତ୍ ମୁଁ ଏହା ଗ୍ରହଣ କରିବି ନାହିଁ ।'

'ଟିକିଏ ରୁହନ୍ତୁ, ସିନୋରିନା,' ସିନୋରିନାଙ୍କ ପାଖରେ ଘୋଡ଼ା ଉପରେ ପଡ଼ିଥିବା କାଗଜ ଶିଟ୍‌ଟି ଆଡ଼କୁ ତା ହାତ ବଢ଼ାଇ, କହି କହିଲା । 'ଆପଣଙ୍କ ସ୍କେଚ୍‌ଟା ଦେଖିବା ପାଇଁ ମୋର ଖୁବ୍ ଲୋଭ ହେଉଛି । ତାହା ଦେଖି ପାରିଲେ · ....'

'ଓଃ ! ଅପରୂପ କିଛି ଦେଖିବା ପାଇଁ ଆଶା କରିବେ ନାହିଁ,' ସିନୋରିନା ଭନ୍‌ପାଲ୍‌ଭି ଗୁଟିଗୁଣ ହୋଇ କହିଲା, ଏବଂ କମ୍ପିତ ଅଙ୍ଗୁଳିରେ କାଗଜଟା ଖୋଲିଲା । 'ପେନ୍‌ସିଲ୍‌ଟା କିପରି ଧରିବାକୁ ହୁଏ ମୁଁ ଜାଣେ ନା ... ମୋ ଭାବଟି ଫୁଟାଇବା ପାଇଁ ମୁଁ କେତେଗୋଟି ଗାର ମାରି ଟାଣିଛି ...... ଏହା ଏକବାରେ କଞ୍ଚା ହାତର କାମ ... ଦେଖନ୍ତୁ !'

'ପୋଷାକ ପିନ୍ଧିଛି ?' ଟିକିଏ ପଚାରି, କହି ସହଜ ଭାବରେ ଚାହିଁଲା ।

'ଆପଣ କିପରି ମନେ କରୁଛନ୍ତି ? ପୋଷାକ ବାନ୍ଧିକି ନ ପିନ୍ଧିବ ?' ଏଥର ଟିକିଏ ଡରିଯାଇ, ବ୍ୟାକୁଳ ହୋଇ, ପଚାରିଲା ।

'ମାଫ୍ କରିବେ ! ଆଦୌ ନୁହେଁ !' କହି ଟିକିଏ ଗରମ ହୋଇଯାଇ କହିଲା । 'ଜୀବନର ମୂର୍ତ୍ତିକୁ ସେମିତି ପିନ୍ଧାଇ ଆପଣ ଚିତ୍ର କରୁଛନ୍ତି ...... କିମ୍ବା ଆମେ ଏହାକୁ ଜାଣି କହିପାରୁଁ ......ଏହା ମିଳିବ ନାହିଁ ! ନା, ମୁଁ କହୁଛି, ନଗ୍ନ, ନଗ୍ନ, ନଗ୍ନ ! ସିନୋରିନା, ଜୀବନକୁ ନଗ୍ନ କରିବାକୁ ହେବ—ସମ୍ପୂର୍ଣ୍ଣ ନଗ୍ନ ।'

ସିନୋରିନା ଭନ୍‌ପାଲ୍‌ଭି ଥଙ୍ଗେଇ ଥଙ୍ଗେଇ କହିଲା,' ମୋତେ ମାଫ୍ କରିବେ, କିନ୍ତୁ ମୋର ଇଚ୍ଛା ଆପଣ ସ୍କେଚ୍‌ଟାକୁ ଆନ୍ତରିକ ମନଯୋଗ ସହକାରେ ଦେଖନ୍ତୁ ।'

'ହଁ, ମୁଁ ତ ଦେଖି ପାରୁଛି,' କହି ବଡ଼ ପାଟି କରି କହିଲା । 'ଆପଣ ନିଜକୁ ପ୍ରତିଫଳିତ କରିବାକୁ ଚାହିଁଛନ୍ତି—ଜୀବନର ଛବି ପାଇଁ ଆପଣ ନିଜର ପ୍ରତିକୃତି ଅଙ୍କନ କରୁଛନ୍ତି । (ମୁଁ କହିପାରେଁ

ଯେ ଅପଣ ଦେଖିବାକୁ ତା ଠାରୁ ବେଶୀ ସୁନ୍ଦର ।) କିନ୍ତୁ ବର୍ତ୍ତମାନ ଆମେ କଳା-ରାଜ୍ୟରେ ଅଛୁଁ ଅଉ ଏହି ରକମ ପ୍ରତିପାଦନ କରୁଛୁ ଜୀବନ ମୂର୍ତ୍ତିକୁ ବିବାହ କରୁଛୁ । ବେଶ୍, କଙ୍କାଳ ପରିଧାନ କରୁଛୁ, ତେଣୁ ଜୀବନର ମୂର୍ତ୍ତିଟା ନଗ୍ନ ହେବ, ଜଣାଶୁଣା କଥା—ସମ୍ପୂର୍ଣ୍ଣ ନଗ୍ନ ଓ ଅତି ସୁନ୍ଦର, ସିନୋରିନା । ଏହି ଆଚ୍ଛାଦିତ କଙ୍କାଳର ସମ୍ପୂର୍ଣ୍ଣ ମୂର୍ତ୍ତି ନିକଟରେ ଜୀବନର ପ୍ରତିମୂର୍ତ୍ତି ଏପରି ହେବା ଦରକାର । ନଗ୍ନ, ପରିସ୍ନାନ, ତୁମେ କଣ ଏହା ଭାବ ନାହିଁ ? ନଗ୍ନ, ସିନୋରା, ସେଥିପାଇଁ ନୁହେଁ କି ? ସମ୍ପୂର୍ଣ୍ଣ ନଗ୍ନ, ସିନୋରିନା—ଏକବାରେ ପାଦରୁ ମୁଣ୍ଡକୁ ଗୋଡ଼ପାଏ ! ମୋତେ ବିଶ୍ୱାସ କରନ୍ତୁ, ନ ହେଲେ ଏହା ଡ଼ାକ୍ତରଖାନାର ଗୋଟିଏ ଛବି ଭଳି ଦେଖାଯିବ—ଗୋଟିଏ ମୂର୍ତ୍ତି ପୋଷାକ-ପରିହିତ, ଆଉ ଅନ୍ୟଟିର ସ୍ନାନ-ପୋଷାକ । ସିନୋରିନା, ଆମକୁ ଶୁଦ୍ଧ କଳାର କାର୍ଯ୍ୟଟି ପ୍ରସ୍ତୁତ କରିବାକୁ ହେବ, ଏବଂ ଏହି ବିଷୟରେ କୌଣସି ସଙ୍ଗତ ଯୁକ୍ତି ନ ଥାଇପାରେ ।'

'ନା, ନା—ମୁଁ ଅତି ଦୁଃଖିତ......' କହି ଓ ତା ମାଆ ଉଠି ପଡ଼ିବାରୁ, ସିନୋରିନା କାନ୍‌ଟାଲ୍‌ଭି କହିଲେ । 'କଳା ଦିଗରୁ ଅପଣ ବୋଧହୁଏ ଠିକ୍ ! ମୁଁ ସେହି ବିଷୟରେ ଯୁକ୍ତି କରିବି ନାହିଁ, କିନ୍ତୁ ମୋ ସ୍ୱେଚ୍ଛା ଉପରେ କିଛି ବ୍ୟକ୍ତ କରିବାକୁ ମୁଁ ଉଦ୍ୟମ କରୁଛି, ଏବଂ ମୁଁ ଯେଉଁ ଉପାୟରେ ଏହା କରୁଛି ତାହା କେବଳ ସେହି ଉପାୟରେ ବୁଝାଯାଇ ପାରେ । ଅପଣଙ୍କ ପରାମର୍ଶ ଗ୍ରହଣ କଲେ, ମୁଁ ଯେଉଁ ବାର୍ତ୍ତା ପ୍ରକାଶ କରିବାକୁ ଚେଷ୍ଟା କରୁଛି ତାହା ମୋତେ ତ୍ୟାଗ କରିବାକୁ ହେବ ।'

'କିନ୍ତୁ ଅପଣ କାହିଁକି ତାହା କରିବେ ? ମୋ ମତ ତାହା ନୁହେଁ । ଅପଣଙ୍କର ଭୁଲ ହେଉଛି ଯେ ଅପଣ ନିଜ ଶରୀରକୁ ଏକ ବ୍ୟକ୍ତିଗତ ବସ୍ତୁ ରୂପରେ ଗ୍ରହଣ କରୁଛନ୍ତି, ସଙ୍କେତ ନୁହେଁ । ଆପଣ

କହି ପାରିବେ ନାହିଁ ଯେ ସେହିପରି କରିବା ଦ୍ୱାରା ଛବିଟି ସୁନ୍ଦର ହୋଇଛି ।'

'ନା, ମୁଁ କହୁ ନାହିଁ ଯେ ଏହା ସୁନ୍ଦର,' ସେ ଜବାବ ଦେଲା । 'କିନ୍ତୁ ଆପଣ ଏପରି ଯାହା କହିଲେ ଏକଦମ ଠିକ୍ । ମୁଁ ଛବିଟିକୁ ଏକ ପଟଙ୍କର ରୂପେ ଚିତ୍ରଣ କରିବାକୁ ଚାହେଁ ନାହିଁ, କିନ୍ତୁ ମୋ ନିଜର ଶରୀର, ମୋ ନିଜର ଯନ୍ତ୍ରଣା ରୂପେ—ଭବିଷ୍ୟତ ପାଇଁ ମୋର ଅଭିଳାଷ । ଆଉ ମୋର ଉପାୟରେହିଁ ମୁଁ କେବଳ ତାହା କରିପାରେଁ । ଆପଣ ଦେଖନ୍ତୁ……ଆଚ୍ଛା, ଯେଉଁଠି ମୁଁ ତିଷ୍ଠୁନ୍ତି ଜନ୍ମିତ ହୋଇ ସେହି ସ୍ଥାନଟିର କଥା ଚିନ୍ତା କରନ୍ତୁ……ନା, ଆପଣ ଯେମିତି କହୁଛନ୍ତି……ଜୀବନର ମୂର୍ତ୍ତି । ମୁଁ ଠିକ୍ ସେହିପରି କରି ପାରିଲି ନାହିଁ ।'

ଲିଲି ତାର ହାତ ଦୁଇଟି ଟେକି, କାନ୍ଧ ବଙ୍କାଇ ଅପ୍ରସ୍ତୁତ ସୂଚକ ଭଙ୍ଗୀରେ କହିଲା, 'ଆପଣଙ୍କ ପକ୍ଷରେ ଏହା କଳ୍ପନା ମାତ୍ର—।'

ମଧୁର ଅଥଚ ଅତି ବିଷଣ୍ଣ ହସ ଖେଳାଇ ଫିଅଞ୍ଚି ତାକୁ ସୁଧାରିଲା : 'ବରଂ ଭାବପ୍ରବଣତା ବୋଲି କୁହନ୍ତୁ, ତା ହେଲେ ତାହା ପ୍ରତି ସମ୍ମାନ ଜାତ ହେବ ।'

ଦୁଇ ଶିଳ୍ପୀ ସ୍ଥିର କଲେ ଯେ କମାଣ୍ଡାର ସେବଲଙ୍କ ସହିତ ପରାମର୍ଶ କରି ସେମାନେ ସବୁ ବ୍ୟବସ୍ଥା କରିବେ । ତା ପରେ, ଘଟୋଗ୍ରା ବନ୍ଧାଲିଭ ଓ ତାଙ୍କର ଶୋକାକୁଳ କନ୍ୟା ବିଦାୟ ଗ୍ରହଣ କଲେ ।

ପରେ ଲିଲି ଆନନ୍ଦରେ ତା ହାତ ଘଷି ଘଷି, ଗୀତ ଗାଇ ଗାଇ ଷ୍ଟୁଡ଼ିଓ ଭିତରେ ଏ ପାଖରୁ ସେ ପାଖ ଯାଏ ପଦଚାରଣା କରିବାକୁ ଲାଗିଲା ।

ପ୍ରାୟ ଏକ ସପ୍ତାହ ପରେ କାନ୍‌ଷ୍ଟାନ୍‌ଟିନୋ ପଲ୍ୟାନ୍ଥ ମୂର୍ତ୍ତିର ମସ୍ତକ ଅଙ୍କନ କରିବା ପାଇଁ କେତୋଟି ସିଟିଂ ଦେବା ଲାଗି ସିନୋରିନାଙ୍କୁ କହିବା ପାଇଁ କାନ୍‌ସାଲ୍‌ଭିଙ୍କର ଘରେ ଯାଇ ପହଞ୍ଚିଲା ।

କମାଣ୍ଡାର ଓସ୍ୱାଲ୍ଡିଙ୍କ ସହିତ ସିନୋରା କାନ୍‌ସାଲଭିଙ୍କର ପ୍ରଗାଢ଼ ବନ୍ଧୁତା ଥିଲା । କମାଣ୍ଡାରଙ୍କ ନିକଟରୁ ପଲ୍ୟାନ ଶୁଣିଥିଲା, ସେହି ଭୀଷଣ ଦୁର୍ଘଟଣା ପରେ ସବିନା ତିନି ଦିନ ମାତ୍ର ବଞ୍ଚିଥିଲେ ଏବଂ ସେହି ସମୟରେ ସେ ତାଙ୍କର ଅଗାଧ ପୈତୃକ ସମ୍ପତ୍ତି ସିନୋରିନା କାନ୍‌ସାଲଭିଙ୍କୁ ଦେଇ ଯାଇଥିଲେ । ତେଣୁ ଏହି ସ୍ମୃତିସ୍ତମ୍ଭ ନିର୍ମାଣରେ ଆଦୌ କାର୍ପଣ୍ୟ ଦେଖାଯିବ ନାହିଁ ।

କମାଣ୍ଡାର ବ୍ୟକ୍ତ କରିଥିଲେ ଯେ ସେହି ଦୁର୍ଘଟଣା ହେତୁ ତାଙ୍କର ନିଜର ଦୁଶ୍ଚିନ୍ତା, ଦୁଃଖ ଓ ହତାଶାର ଶେଷ ନାହିଁ— ସିନୋରିନା କାନ୍‌ସାଲଭିଙ୍କ ବ୍ୟବହାରରେ ତାହା ବରଂ ଅଧିକ ବଢ଼ି ଯାଉଛି । ବେଚାରି ବାଳିକା, ତାଙ୍କୁ ଦେଖିଲେ ଦୁଃଖ ଆସୁଛି, କିନ୍ତୁ ମୋ ଭାରି ଚଟକି । ଏତେ କଥା କହିବାକୁ ଗଲେ, ତାଙ୍କୁ ପ୍ରକୃତରେ ଦେଖିଲେ ବୋଧ ହୁଏ ସେମିତିକି ତାର ଶୋକ ଅଧିକ ପ୍ରକାଶରେ ସେ ଅଦ୍ଭୁତ ଆନନ୍ଦ ଲାଭ କରୁଛନ୍ତି । ଓଃ ! ଏହା ଏକ ଭୀଷଣ ଦୁର୍ଘଟଣା—ସମସ୍ତେ ଏହା ସ୍ୱୀକାର କରିବେ—ବାସ୍ତବିକ ବିନା ମେଘରେ ବଜ୍ରପାତ । ଆଜ୍ଞା ସବିନା ଜଣେ ଖୁବ୍ ସୁନ୍ଦର ତରୁଣ ଯୁବକ ଥିଲେ— ଶରୀରଟି ସୁଦର୍ଶନ ମଧ୍ୟ, ଏବଂ ମୁଁ ଅନ୍ତିକୁ ଖୁବ୍ ଭଲ ପାଉଥିଲେ । ଏହା ନିଃସନ୍ଦେହ ଯେ ବିଭା ହୋଇଥିଲେ ସେ ତାଙ୍କୁ ଖୁବ୍ ସୁଖୀ କରାଇ ଥାନ୍ତେ । ବୋଧହୁଏ ସେଇଥିପାଇଁ ଦୈବ ତାଙ୍କୁ ଛଡ଼ାଇ ନେଇଗଲା ।

ଏହା ପ୍ରାୟ ଅନୁମିତ ହୁଏ, ଯେମିତିକି କମାଣ୍ଡାର ସେସ୍ଵାଲିଙ୍କ ଦୁଃଖ ବଢ଼ାଇବା ପାଇଁ ସରଳାଙ୍କ ପରି ଜଣେ ଏମିତି ଭଲ ମଣିଷକୁ ଛଡ଼ାଇ ନିଆ ଯାଇଛି । ଅପଣ ଏହା ବିଶ୍ୱାସ କରିବେ କି ? କାହିଁକି, ସରଳା— ତାର ପ୍ରେମିକ— ବିବାହ ପରେ ତାକୁ ନେଇ ରହିବା ପାଇଁ ଯେଉଁ ଘରଟି ତିଆରି କରିଥିଲେ, ଝିଅଟି ତାହା ଛାଡ଼ିବାକୁ ଏକବାରେ ମନା କରିଦେଲା । ଏହା ପ୍ରକୃତରେ ଏକ ପ୍ରେମ-ନୀଡ଼ । ଝିଅଟି ତାର ଭଲ ଲାଗୁଥିବା ସବୁ ସେଠାକୁ ନେଇଯାଇଛି, ଏବଂ ଦିନର ଅଧିକାଂଶ ସମୟ ସେ ସେଠାରେ ରହେ, ଅଦୌ କାନ୍ଦେ ନାହିଁ ! କିନ୍ତୁ ବୋହୂ ହୋଇ ଯେଉଁ ଜୀବନ ସେ ସେହି ଘରେ ବିତାଇ ଥାଆନ୍ତା, ଯେଉଁ ଜୀବନ ଏମିତି ନିର୍ମମ ଭାବରେ ତା ଠାରୁ ଛଡ଼ାଇ ନିଆ ଯାଇଛି, ତାର ସ୍ୱପ୍ନ ଦେଖି ସେ ଅନୁତାପରେ ଦିନ ବିତାଇ ଦିଏ ।

ବାସ୍ତବିକ, ପଲ୍‌ସ୍ମାନ ପିଜୋରନୋ କର୍ଣ୍ଣାଲଙ୍କୁ ତା ଘରେ ପାଇଲା ନାହିଁ । ଗୃହକର୍ତ୍ତ୍ରୀ ତାଙ୍କୁ ଭାୟା ଡ ପୋଡ଼ି ପିଜପିସ୍ତୋନୋରେ ଥିବା ନୂଆ ଘରର ଠିକଣା ଦେଲା । ଯେଉଁ ତନ୍ତ୍ର-ମନ୍ତ୍ର ବ୍ୟଂଗରେ ବିଚାରି ଝିଅଟି ଜଳିପୋଡ଼ି ହୋଇ ମରୁଥିଲା, ପଲ୍‌ସ୍ମାନ ଯାଉଥିଲା ବେଳେ ତାହା ଭାବୁଥିଲା— ବିବାହ ପୂର୍ବରୁ କନ୍ୟାହିଁ ବିଧବା । ଭାଗ୍ୟ ଶେଷ ମୁହୂର୍ତ୍ତରେ ବାଧା ଦେଇ ନ ଥିଲେ ଯେଉଁ ସ୍ୱପ୍ନଟି ସତ୍ୟରେ ପରିଣତ ହେବାକୁ ଯାଉଥିଲା, ସେହି ସ୍ୱପ୍ନ ଜଗତରେ ସେ ତାର ଅତୃପ୍ତ ଆତ୍ମାର ଶାନ୍ତି ଖୋଜି ବୁଲୁଥିଲା ।

କେତେ ଅସନ୍ତ ମଧୁର ଦିନର କଥା ଭାବି, ଭାବୀ ବରକନ୍ୟା ଦୁହେଁ କେତେ ଦୋକାନ ବୁଲି ବୁଲି ଗୋଟି ଗୋଟି କରି ଆସବାବ ପତ୍ର କିଣି, ଘରଟିକୁ କେତେ ଆନନ୍ଦରେ ସଜାଇ ଥିଲେ । କେତୋଟି ଦିନ ପରେ ସେମାନେ ସେଠାରେ ଘର ବାନ୍ଧି ଥାଆନ୍ତେ । ମଧୁର ସ୍ମୃତି, ଅଭିଳାଷ, ପ୍ରତିଜ୍ଞା ଓ ଆଶାରେ ଭରପୂର ହୋଇ, ସେହି ଜୀବନଟି ପବିତ୍ର ଚୁଡ଼ିକ ଯେମିତି

ଭାବରେ ସୁସଜ୍ଜିତ ହୋଇ ରହିଥିଲା, ଆଜି ବି ତାହା ଠିକ୍ ସେମିତ ଅଛି । ......ନବବଧୂ ପ୍ରତି କି ନିର୍ଦ୍ଦୟତା— ଏବଂ ଏହିପରି ଏକ ସୁଖମୟ ଦିନରେ ମଧ୍ୟ, ପଲ୍ଲୀରାଣୀ ଦୀର୍ଘଶ୍ୱାସ ଛାଡ଼ି ଭାବିଲା ।

ପରିଣୟର ବସନ୍ତର ଓ ପୂର୍ଣ୍ଣାଲୋକରେ ଉଷ୍ଣତାର ପ୍ରଥମ ସ୍ପର୍ଶ ସେ ପରସ୍ପର ଭାବରେ ଅନୁଭବ କରି ପାରିଲା । ତା ମନ ଆନନ୍ଦରେ ନାଚି ଉଠିଲା । ଯେଉଁ ନୂଆ ଘରେ, ସେ ଦେଖିବ, କୁଳଶ୍ରେଷ୍ଠ କନ୍ଧାଲଭି ବସନ୍ତର ପୂର୍ଣ୍ଣାଲୋକ ଅପେକ୍ଷା ଝରକା ଖୋଲି ବସିଛି— ଈଶ୍ୱର କାନ୍ତି, ଆଜି ପରି ଦିନରେ ତାର ସେହି ମଧୁର ସ୍ୱପ୍ନ ତାକୁ କି କଠୋର ବେଦନା ଦେଉଥିବ ।

ପଲ୍ଲୀରାଣୀ ଘରେ ପ୍ରବେଶ କରିବା ବେଳକୁ, କୁଳଶ୍ରେଷ୍ଠ ଗୋଟିଏ ଇଜେଲ (ଚିତ୍ରଫଳକ) ଆଗରେ ବସି, ତାର ପ୍ରେମିକଙ୍କର ଖଣ୍ଡିଏ ସ୍କେଚ ଫଟୋରୁ, ନିର୍ଭୀକ ଭାବରେ ଗୋଟିଏ ବଡ଼ ଚିତ୍ର ଅଙ୍କନ କରିବାରେ ବ୍ୟସ୍ତ ଥିଲା । ତାର ମାଆ କମାଣ୍ଡୋର ଦେବଶ୍ରୀଙ୍କ ପାଠାଗାରରୁ ଆଣିଥିବା ଖଣ୍ଡିଏ ଫରାସୀ ଉପନ୍ୟାସ ବସି ପଢୁଥିଲେ ।

ପତ୍ନୀ କହିବାକୁ ଗଲେ, ଏକ ବିୟୋଗାନ୍ତ ଦୃଶ୍ୟରେ ପରିଣତ ହୋଇଥିବା ତାର 'ପ୍ରେମ-ନାଟ୍ୟରେ' ଏକାକୀ ରହିବାକୁ ମନୋରଞ୍ଜନା କନ୍ଧାଲଭି ଅଧିକ ପସନ୍ଦ କରେ । ତା ମାଆର ଉପସ୍ଥିତି ତାକୁ ବିରକ୍ତିକର ବୋଧ ହେଉଥିଲା । କିନ୍ତୁ ସିନେମା ଭଳି ଲାଗୁଥିଲା, କାରଣ ତା ଝିଅର ଅଦ୍ଭୁତ ଢଙ୍ଗଢାଙ୍ଗ ହେତୁ ସେ କିଛି ଦୁଃସାହସିକ କାମ କରିପାରେ । ତେଣୁ ଏ ଘରକୁ ଆସିଲେ ସେ ବରାବର ତା ଝିଅ ପାଖରେ ଥାଏ । ଝିଅର ଦୁଃଖଭୋଗର ଏହି ଏକାନ୍ତ ନୀରବତାରେ ସେ କ୍ଳାନ୍ତ ହୋଇ ଯାଉଥିଲା, ଏବଂ ସେଠାରେ ବସି ମନେ ମନେ ଫୁଲି ଉଠୁଥିଲା, କିନ୍ତୁ ଅତି କଷ୍ଟରେ କୌଣସି ପ୍ରକାର ବାହ୍ୟ ସମାଲୋଚନାରୁ ସେ କେବଳ ବିରତ ରହୁଥିଲା ।

ଚଉଦଶୀ ଥିଲା ବେଳେ ବିନୋଦ୍ ବନ୍‌ସାଲ୍ ଭ କପର୍ଦ୍ଦକଶୂନ୍ୟ ହୋଇ ପଡ଼ିଥିଲା— ବାପଧବା, ତା ସଦ୍ଧିତ ଝିଅଟିଏ— ଏବଂ ତାର ସ୍ତ୍ରୀ ଓ ଏମିତି ଧୂର୍ତ୍ତ ଦୁଇଜଣ ଟେହ୍ନାଇ ଚଢ଼ଉଛନ୍ତି, ଜୀବନର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟକୁ ତାର ଶେଷ ସହିତ ଚିର ଦିନ ଲୁହା ବାକ୍ସ ଭିତରେ ବନ୍ଦ କରି ରଖିବା ପାଇଁ ସେ ସମ୍ପୂର୍ଣ୍ଣ ଅସମର୍ଥ ହୋଇ ପଡ଼ିଥିଲା । ଭାଗ୍ୟ ଯେଉଁ ନିଷ୍ଠୁର ଆଘାତ ଦେଇଛନ୍ତି ସେଥିପାଇଁ କୁଳସ୍ତ୍ରୀ ଯେ ଶୋକ ପ୍ରକାଶ କରିବ ନାହିଁ ଏହ ଏହା କହି ନ ଥିଲା । କିନ୍ତୁ ସେ ମନେ କରୁଥିଲା— ଏବଂ ତା ସହିତ ତାର ପ୍ରିୟ ଓ ଘନିଷ୍ଠ ବନ୍ଧୁ କମାଣ୍ଡାର ସେଗଲ୍ ମଧ୍ୟ ବିଶ୍ୱାସ କରୁଥିଲେ— ଯେ ସେ ଅତି ମାତ୍ରାରେ ତାର ଶୋକ ପ୍ରକାଶ କରୁଥିଲା । ସେ ଭାବୁଥିଲା ଯେ ତା ଝିଅର ଅଭାଗା ଭାବୀ ସ୍ୱାମୀ ଅଗାଧ ସମୁଦ୍ର ଗର୍ଭେ ଯାଇଥିବା ହେତୁ ସେ ତାର ସୁଯୋଗ ନେଉଛନ୍ତି ଏବଂ ସେଇଥିପାଇଁ ଏହି ଅବାଧ ଦୁଃଖ-ପ୍ରକାଶର ବିଳାସରେ ନିଜକୁ ଭସାଇ ଦେଉଛନ୍ତି । ସେ ନିଜେ ଜୀବନର ଘୃଣ୍ୟତମ ସତ୍ୟଗୁଡ଼ିକର ତିକ୍ତ ଅଭିଜ୍ଞତା ଲାଭ କରିଛନ୍ତି । ତାର ଏବେ ବି ମନେ ପଡ଼ଯାଏ, ସ୍ୱାମୀଙ୍କର ମୃତ୍ୟୁ-ବେଦନାରେ ଜର୍ଜରିତ ହୋଇଥିଲେ ସୁଦ୍ଧା, ଜୀବନ-ଯାତ୍ରା ନିର୍ବାହ କରିବା ପାଇଁ ତାକୁ କି ଦୁଃଖ କଷ୍ଟର ସମ୍ମୁଖୀନ ହେବାକୁ ପଡ଼ି ଥିଲା, କିନ୍ତୁ ତା ଝିଅ ତାର ଶୋକ ସମସ୍ତ ଖୁବ୍ ସହଜରେ କଟାଉଛନ୍ତି । ତାର ନିଜର ଦୁଃଖପୂର୍ଣ୍ଣ ଅଭିଜ୍ଞତା କଥା ଭାବିଲେ ତା ଝିଅର ଶୋକ-ଆସକ୍ତି ହୁଏ ତ କ୍ଷମା କରାଯାଇ ପାରେ— ହଁ, ଏହି ପରିସ୍ଥିତିରେ ପ୍ରାୟ କ୍ଷମଣୀୟ— କିନ୍ତୁ କେବଳ ଗୋଟିଏ ସର୍ତ୍ତରେ ଯେ ଏହା ଯେମିତି ବେଶୀ ଦିନ ନ ଚଳେ । ତାର ପ୍ରିୟ ଓ ଘନିଷ୍ଠ ବନ୍ଧୁ କମାଣ୍ଡାର ସେଗ୍ଲି ସବୁବେଳେ ଏହା କହନ୍ତି ।

ବିନୋଦର ବୁଦ୍ଧି ପ୍ରଖର, ସଂସାରର ବହୁ ବିଷୟରେ ତାର ଅଭିଜ୍ଞତା ଅଛି, ତେଣୁ ସେ ତାର ଝିଅକୁ ତାର ଦୁଃଖ-ବିଳାସରେ

ସ୍ୱପତ ହେବାକୁ ଅନେକ ଥର ପ୍ରବର୍ତ୍ତାଇଛି, କିନ୍ତୁ କିଛି ଫଳ ହୋଇ ନାହିଁ । ତାର କୁଳପ୍ରେମ ଅତ୍ୟଧିକ ଭାବପ୍ରବଣ । ଦୋଟି ଦୁଃଖରେ ସେ ଉପରେ ଅଭିଭୂତ ହୋଇ ନ ପଡ଼ିଛି, ସେହି ଭାବନାରେହିଁ ସେ ତା ଠାରୁ ବେଶୀ ଦ୍ରବୀଭୂତ ହୋଇ ଯାଇଛି । ଯଦି ଏହା ହୋଇ-ଥାଏ, ତାହାହେଲେ ଏହା ବଡ଼ ଦୁର୍ଭାଗ୍ୟର କଥା; କାରଣ ସମୟର ଗତି ସଙ୍ଗେ ସଙ୍ଗେ ଭାବନାର ଶକ୍ତି ଅବଶ୍ୟ ହ୍ରାସ ଲଭେ—ଏଥିରେ ଆଦୌ ସନ୍ଦେହ ନାହିଁ—କିନ୍ତୁ ଗୋଟିଏ ଭାବନା ମଧ୍ୟରେ ଏହା ସମ୍ପୂର୍ଣ୍ଣ ବିପରୀତ ଆକାର ଧାରଣ କରେ; ଏହା ଦୃଢ଼ମୂଳ ହୋଇଯାଏ । ଏହି ଦୁଃଖଭୋଗରେ ଯେଉଁ ଆନନ୍ଦ, ତାର ଫଳରେ ଜୀବନ ନଷ୍ଟ କରୁ ବିବାହ କରୁଛି (ବିବାହ ଉତ୍ସବ ଉପଲକ୍ଷେ ଏହା ଏକ ଚମତ୍କାର ଧାରଣା !)—ଏହିପରି ଏକ ଅଦ୍ଭୁତ ଧାରଣାର ବଶବର୍ତ୍ତୀ ହୋଇ ସେ ଗୋଟିଏ ସମାଧି-ସ୍ମୃତିସ୍ତମ୍ଭ ନିର୍ମାଣ କରିବା ପାଇଁ ପ୍ରସ୍ତୁତ କରୁଛି । ତାର ଆହୁରି ଗୋଟିଏ ଅଦ୍ଭୁତ ଖିଆଲ ଅଛି—ବରକନ୍ୟା ଦୁହେଁ ଘରଟିକୁ ଠିକ୍ ଯେମିତି ଭାବରେ ସଜାଇ ଦେଇଥିଲେ ସେହିପରି ରଖିବା । ଏହା ଦ୍ୱାରା ଯେଉଁ ବିବାହିତ ଜୀବନ ସେ ଉପଭୋଗ କରି ପାରିଲା ନାହିଁ, ସେହି ପ୍ରାପ୍ୟ-ସତ୍ୟ-ହୋଇଥିବା ସ୍ୱପ୍ନର ଇଙ୍ଗିତ ତାହା ସବୁବେଳେ ଧାରଣ କରି ପାରିବ ।

ପଲଗ୍ଲାନ ସେମାନଙ୍କ ସହିତ ସାକ୍ଷାତ କରିବାକୁ ଆସିଛି ଦେଖି ସିନୋଗ୍ ଉନ୍ଆଲଭ ଖୁବ୍ ଖୁସି ହୋଇଗଲେ ।

ଖୋଲା ଝରକା ବାଟେ ସୂର୍ଯ୍ୟ-କିରଣ ବିଚ୍ଛୁରିତ ହୋଇ ଯାଉଥିଲା । ତାହାରେ ଭଲ ବର୍ଷେସର ଦୃଶ୍ୟ—ବଡ଼ ସବୁଜ ପ୍ରାନ୍ତର ଏବଂ ଚମତ୍କାର ପାଇନ୍ ବଣ ଗଭୀର ନୀଳ ଦିଗନ୍ତର ଆକାଶକୁ ସ୍ପର୍ଶ କରୁଛି । ଏହା ଏକ ଚିତ୍ତହାରୀ ଦୃଶ୍ୟ ।

ପଲଗ୍ଲାନ ପ୍ରବେଶ କରନ୍ତେ, ହିନୋଜେନା ଉଠି ପଡ଼ି ତାର ଉଦ୍ଧେଶ୍ୟ (ଛବି) ଲୁଚାଇବାକୁ ଚେଷ୍ଟା କଲା, କିନ୍ତୁ ପଲଗ୍ଲାନ ସାମାନ୍ୟ

ମାଆ ଦେଇ, ତାକୁ ଅଟକାଇଲା, 'କାହିଁକି ? ମୋତେ କଣ ତାହା ଟିକିଏ ଦେଖାଇବ ନାହିଁ ?'

'ଆଃ, ଏହା ମାନେ ଆରମ୍ଭ କରନ୍ତୁ ।'

'ଦେଖନ୍ତୁ ତ, ଆପଣ ଚମତ୍କାର ଭାବରେ ଆରମ୍ଭ କରିଛନ୍ତି,' ନଇଁ ପଡ଼ି ତାକୁ ଦେଖୁ ଦେଖୁ, ସେ କହିଲା । 'ବାସ୍ତବରେ ଖୁବ୍ ଭଲ ! ଏହା କେଉଁମାନଙ୍କର ତ ? ...... ହଁ, ଏବେ ମୁଁ ଭାବୁଛି, ସେହି ଫଟୋଗ୍ରାଫଟା ଦେଖି ତାଙ୍କ ମୁହଁଟା ଭଲ ଭାବରେ ମୋର ମନେ ପଡ଼ିଗଲା । ହଁ, ହଁ, ମୁଁ ତାଙ୍କୁ ଚିହ୍ନି ପାରିଲି । ......କିନ୍ତୁ ସେ କଣ ଦାଢ଼ୀ ରଖିଥିଲେ ?'

'ନା,' ହିଅନ୍ତି ଶୀଘ୍ର ଜବାବ ଦେଲା, 'ସେ ରଖି ନ ଥିଲେ—କିଛି ସମୟ ପାଇଁ ନୁହେଁ ।'

ଆଃ ! ମୁଁ ତ ଭାବୁଛି ତାହା ନୁହେଁ । ...... ଅତି ସୁନ୍ଦର ମଣିଷଟିଏ—ଅତି ।'

ହିଅନ୍ତି ପୁଣି କହି ଚାଲିଲା, 'ମୁଁ ଛବିଟି କରି ପାରୁ ନାହିଁ, କାରଣ ଏହି ଫଟୋ ମିଳୁ ନାହିଁ—ମୋ ମନରେ ତାଙ୍କର ଯେଉଁ ଛବି ଅଛି ଏହା ପ୍ରକୃତରେ ସେହି ଛବି ପରି ନୁହେଁ ।'

'ହଁ, ମୁଁ ଜାଣେ ଆପଣ କଣ କୁହାନ୍ତି,' ପଲ୍‌ଗ୍ରାମ ତତ୍‌କ୍ଷଣାତ୍ ସମ୍ମତି ଜଣାଇଲା । 'ସେ ଆହୁରି—ଆହୁରି ଅଧିକ...... ସତେଜ ଥିଲେ—ସେ ଆହୁରି ବେଶୀ ଜୀବନ୍ତ ଦେଖା ଯାଉଥିଲେ ।'

ମାଆ ମନ୍ତବ୍ୟ କଲା, 'ସେହି ଫଟୋଟା ଆମେରିକାରେ ଉଠା ହୋଇଥିଲା । ତାହା ଅବଶ୍ୟ ମୋ ହିଅ ସହିତ ଆବଦ୍ଧ ହେବା ଆଗରୁ ।'

ହିଅନ୍ତି ବିଷାଦପୂର୍ଣ୍ଣ ସ୍ୱରରେ କହିଲା, ଆଉ ମୋ ପାଖରେ ତାଙ୍କର ଅନ୍ୟ ଫଟୋ ନାହିଁ । ଦେଖନ୍ତୁ ! ଏହାପରେ, ମୁଁ ମୋ ଆଖି

ବଦ୍ଧ କଲ, ଆଜି ଦୁର୍ଘଟଣା ଆଗରୁ ସେ ଯେମିତି ଥିଲେ ମୁଁ ତାଙ୍କୁ ଠିକ୍ ସେମିତି ଦେଖି ପାରୁଛି । କିନ୍ତୁ ଠିକ୍ ତାଙ୍କୁ ଅଙ୍କନ କରିବାକୁ ବସିଲା ବେଳକୁ, ତାଙ୍କ ମୁହଁ ମୋତେ ଆଉ ଦେଖାଯାଉ ନାହିଁ । ସେତିକି ବେଳେ ମୁଁ ଫଟୋକୁ ଚାହୁଁଛି ଏବଂ ତତ୍‌କ୍ଷଣାତ୍ ମୋତେ ବୋଧହେଉଛି ଯେ ଏହା ତାଙ୍କର ଏକ ଜୀବନ୍ତ ପ୍ରତିକୃତି। କିନ୍ତୁ ଯେତେବେଳେ ମୁଁ ଛବିଟି ଅଙ୍କିବାକୁ ଚେଷ୍ଟା କରୁଛି, ସେତେବେଳେ ପଟରେ ମୁଁ ତାଙ୍କର ସାମଞ୍ଜସ୍ୟ ଦେଖି ପାରୁ ନାହିଁ । ସେଥିପାଇଁ ମୁଁ ହତାଶ ହୋଇ ପଡ଼ୁଛି ।’

ପଲ୍ୟାନି ଉପରେ ଦୃଷ୍ଟି ନିବଦ୍ଧ କରି, ତାର ମାଆ କହିଲା, ‘ଦେଖ୍, ଜୁଲିଆ, ତୁ ଚିବୁକର ରେଖା ବାହିଁ କହୁଛୁ ତ— ଦାଢ଼ୀଟା ଉଠାଇ ଦେବା ତୋର ଇଚ୍ଛା । ତୁ କଣ ଦେଖି ପାରୁ ନାହୁଁ ଯେ ସିନୋର ଲେଫ୍ୟାନିଙ୍କର ଚିବୁକ ...... ।’

ସେ ଲଜ୍ଜିତ ହୋଇ ମୃଦୁ ହସିଲା । ପ୍ରାୟ ଅଜାଣତରେ ସେ ତାର ଚିବୁକ ଟେକି ଧରିଲା, ଯେମିତି ଘନୋଭିନା କାନ୍‌ଭାସ୍‌କୁ ଦେଖାଉଛି ଯେ ସେ ଏହା ଧୀରେ ଧୀରେ ନେଇ ତାହା ଦ୍ଵାରା ଅଙ୍କିତ ସନୋଭିର ଛବିରେ ବଢ଼ାଇ ଦେବ ।

ସିନୋରିନା ବିବ୍ରତ ଓ ଲଜ୍ଜିତ ହୋଇଗଲା, ଏବଂ ପଲ୍ୟାନିର ମୁହଁକୁ ଅଉ ପ୍ରାୟ ଅନାଇ ପାରିଲା ନାହିଁ । (ତା ମାଆର ଅବଶ୍ୟ ଏହିପରି ଭାବରେ କଥା କହିବା ଅଦୌ ଉଚିତ ହୋଇ ନାହିଁ, ବିଶେଷତଃ ଏହି ଦୁଃଖ ସମୟରେ ।)

କୌଣସି ଗୂଢ଼ ଅଭିସନ୍ଧି ନ ରଖି, ସିନୋରା କନସାଲ୍‌ଭି ପୁଣି କହିଲା, ‘ଅଉ ଗୋଟିଏ ବି, ଦେଖ୍ ! ଜୁଲିଓ୍ୱା ବଚିଥିବା ତାର ଶେଷ କେତେ ମାସ ଠିକ୍ ଏହିପରି ଦାଢ଼ି ରଖିଥିଲା, ତୋର କଣ ଏହା ମନେ ପଡୁ ନାହିଁ ?’

ସିନୋରିନା ଆଘାତ ପାଇଲା । ସେ ନରମ ସ୍ୱରରେ କହିଲା, 'ଆମେ ତ ନାକ କଥା ଆଲୋଚନା କରୁ ନ ଥିଲୁ । ମୁଁ ବି ନାକଟିଏ ଆଙ୍କିବାକୁ ଯାଉ ନାହିଁ ।'

'ନା, ଅଦୌ ନୁହେଁ,' ସଲ୍‌ଭାଟି ଏକମତ ହେଲା, କିନ୍ତୁ ସେ ସ୍ୱାଭାବିକ ଭାବରେ ତା ନାକରେ ଟିକେ ହାତ ବୁଲାଇ ଦେଇ ମୃଦୁ ହସି ପକାଇଲା ।

ତା ପରେ ସେ ଇଜେଲ୍ ପାଖକୁ ଯାଇ କହିଲା : 'ଦେଖନ୍ତୁ ! ସିନୋରିନା, ଆପଣ ଯଦି ମୋତେ ଅନୁମତି ଦିଅନ୍ତି, ତାହାହେଲେ ଆପଣଙ୍କୁ ତାଙ୍କର ସାମଞ୍ଜସ୍ୟ ଦେଖାଇ ଦେବାକୁ ମୁଁ ଚେଷ୍ଟା କରିବି । ......ଏଇଠି ଆପଣଙ୍କ ଛବିଟିର ଏହି କୋଣରେ, କେତୋଟି ବିନ୍ଦୁମାନ......ଆପଣ କଣ ମନେ କରିବେ ନାହିଁ, କରିବେ ନା ? ଆପଣ ତାହା ପରେ ଲିଭାଇ ଦେଇ ପାରନ୍ତି । ମୁଁ ଆପଣଙ୍କୁ ଦେଖାଇ ଦେବାକୁ ଚାହେଁ, ବିଚରା ସବିନାଙ୍କୁ ମୁଁ କେତେ ଦୂର ମନେ ରଖି ପାରିଛି ।'

ସେ ବସି ପଡ଼ିଲା, ଏବଂ ପଟୁ ସାହାଯ୍ୟରେ ତାର ପ୍ରେମିକର ମଥା ଆଙ୍କିବାକୁ ଲାଗିଲା । ସିନୋରିନା କନ୍‌ସାଲ୍‌ଭି ସ୍ଥିର୍ ତନ୍ମୟ ହୋଇ ତାର ଦ୍ରୁତ ରେଖାଗୁଡ଼ିକୁ ଲକ୍ଷ୍ୟ କରିବାକୁ ଲାଗିଲା । ତାର ସମଗ୍ର ଅନ୍ତର ଏକାଗ୍ର ଓ ଆଶାପ୍ରୀ ବୋଧ ହେଲା । କାମଟି ଯେତେ ଆଗେଇବାକୁ ଲାଗିଲା, ସେ ସମସ୍ତ ସମୟରେ ଆନନ୍ଦପୂର୍ଣ୍ଣ ଚିତ୍କାର କରିବାକୁ ଲାଗିଲା । ଏଥିରେ ସଲ୍‌ଭାଟି ଉଚ୍ଚକିତ ବୋଧ କଲା ଏବଂ ତାର ପେନ୍‌ସିଲ୍ ଦ୍ରୁତ ଗତିରେ ଚଳିବାକୁ ଲାଗିଲା । ଅବଶେଷରେ ସେ ଅଉ ତାର ଉଚ୍ଛ୍ୱାସ ଚାପି ନ ପାରି କହି ପକାଇଲା : 'ଦେଖ୍, ଏ, ଦେଖ୍, ମା ! ସବିନାଙ୍କୁ ! ଏକବାରେ ଠିକ୍ ! ଓଃ, କିଛି ବଦଳାନ୍ତୁ ନାହିଁ ...... ଆପଣଙ୍କୁ ଅଶେଷ ଧନ୍ୟବାଦ ...... ଆପଣ କି ଚମତ୍କାର ଆଙ୍କି ପାରନ୍ତି ...... ଅବିକଳ, ସମ୍ପୂର୍ଣ୍ଣ ଅବିକଳ ... !'

ପଲ୍ସ୍ୟାନ ଆସନରୁ ଉଠି ପଡ଼ି, କହିଲା, 'କେବଳ ଟିକିଏ ଅଭ୍ୟାସଟିଏ ଦରକାର।' ସେ ଯଥେଷ୍ଟ ବିନୟ ସହକାରେ କହିଲା, କିନ୍ତୁ ଲୁଲମୋଗ୍ରୀର ଅକପଟ ପ୍ରଶଂସାରେ ସେ ଯେ ଆନନ୍ଦ ଲାଭ କରିଥିଲା ଏହା ପରିଷ୍କାର ଭାବରେ ପ୍ରକାଶ ପାଇଲା। ...... 'ତା ଛଡ଼ା—ଆପଣ ଦେଖନ୍ତୁ, ଭଚାସ୍ତ ସିରିନଙ୍କୁ ମୁଁ ଭଲ ଭାବରେ ମନେ ରଖିଛି।'

ମନୋରମା କାନ୍‌ଗାଲିଭ ତେବେ ବି ଛବିଟା ଆଡ଼କୁ ଅନାଇ ଥିଲା, ଯେମିତିକି ସେତେ ଦେଖିଲେ ବି ତା'ର ଆଶା ଆଦୌ ମେଣ୍ଟୁ ନ ଥିଲା।

'ଟିକୁ......ହଁ......ଆପଣ ଠିକ୍ ରଖିଛନ୍ତି, ଏକବାରେ ଠିକ୍......ଉଃ! ହଜାରେ ଥର ଆପଣଙ୍କୁ ଧନ୍ୟବାଦ।'

ସେହି ସମୟରେ, ସିରିନଙ୍କର ଯେଉଁ ଫଟୋଟା ମଡେ଼ଲ ରୂପେ ବ୍ୟବହୃତ ହୋଇଥିଲା ଇଜେଲରୁ ଖସି ପଡ଼ିଲା ଏବଂ ମନୋରମା ସେତେବେଳେ ପଲ୍ସ୍ୟାନର ଛବିଟି ପାଇଁ ଏତେ ପ୍ରଶଂସାମୁଖର ହୋଇ ଉଠିଥିଲା ଯେ ତାକୁ ପୁଣି ଉଠାଇ ଆଣିବା ପାଇଁ ତାର ମନ ବଳିଲା ନାହିଁ।

ସେଇଟି ଭୂଇଁରେ ତାହା ପଡ଼ି ରହିଲା, ସେହି ମ୍ଳାନ ଛବିଟି—ଅତି ବିଷଣ୍ଣ ଦେଖା ଯାଉଥିଲା, ଯେମିତିକି ସେ ବୁଝି ପାରିଥିଲା ଯେ ସେ ଆଉ କେବେ ହେଲେ ଉଠାଯିବ ନାହିଁ।

ଯାହା ହେଉ, ପଲ୍ସ୍ୟାନ ନଇଁପଡ଼ି ତାହା ଉଠାଇ ନେଲା ଏବଂ ନମ୍ର ଭାବରେ ତାକୁ ଦେଖାଇଲା।

ମନୋରମା କହିଲା, 'ଆପଣଙ୍କୁ ଧନ୍ୟବାଦ, କିନ୍ତୁ ବର୍ତ୍ତମାନ ମୁଁ ଆପଣଙ୍କ ଛବିଟିର ସଦ୍‌ବ୍ୟବହାର କରିବି। ତେଣୁ ଦେଖନ୍ତୁ, ସେହି କଦର୍ଯ୍ୟ ଫଟୋଟା ଆଡ଼କୁ ଆଉ ଅନାଇବାକୁ ମୁଁ ଚାହୁଁବି ନାହିଁ।'

ସେତିକିବେଳେ ସେ ଆଖି ଟେକି ଅନାଇଲା ଏବଂ ପଲକ ମାତ୍ରେ ତାର ମନେ ହେଲା ଯେ ଘରଟି ଆଗ ଅପେକ୍ଷା ଉଜ୍ଜ୍ୱଳ ହୋଇ

ଯାଇଛନ୍ତି । ଲମ୍ବା ଫସ୍ୱାର୍ଥି ଝରକା ଭିତର ଦେଇ ସୁନ୍ଦର ଉଦ୍ଭଲ ଓ ଉଦ୍ୟାନର ଅପୂର୍ବ ଦୃଶ୍ୟ ଦେଖି, ସେ ତୃପ୍ତିର ଗଭୀର ନିଶ୍ୱାସ ଗ୍ରହଣ କଲା । ଏତେ ଦିନ ହେଲା ତାର ହୃଦୟ ଶୋକରେ ଭାରାକ୍ରାନ୍ତ ଥିଲା। ସେହି ରମଣୀୟ ଦିବସର ଆନନ୍ଦୋଜ୍ଜ୍ୱଳ ଆଲୋକ ତା ହୃଦୟର ଗଭୀରତମ ପ୍ରଦେଶରେ ପ୍ରବେଶ କଲା । ତାକୁ ଜଣା ପଡ଼ିଲା, ଯେମିତିକି ସେହି ପ୍ରଶଂସା ସୂଚକ ସାମାନ୍ୟ ଅଭିବ୍ୟକ୍ତି ତନ୍ଦ୍ରାଚ୍ଛନ୍ନତା ସବୁ ଅତ୍ୟାଚାର ଦୂରକରି ଦେଇଛନ୍ତି ଏବଂ ମୁକ୍ତିର ନିଶାରେ ତାକୁ ମାତାଲ କରି ପକାଇଛନ୍ତି ।

ଏହା ମୁହୂର୍ତ୍ତକ ମାତ୍ର ରହିଲା । ତା ଭିତରେ କଣ ଘଟିଗଲା ସିନୋବିନା କଳ୍ପନା ଲବ୍ଧ ତାହା କୌଣସିମତେ ନିଜେ ବୁଝି ପାରିଲା ନାହିଁ । ସହସା ତା ମନରେ ଧାରଣା ଜନ୍ମିଲା ଯେ ସେହି ସବୁ ନୂତନ ବସ୍ତୁ ଭିତରେ ସେ ନିଜେ ବି ନୂତନତ୍ୱ ଧାରଣ କରିଛି— ନୂତନ ଓ ମୁକ୍ତ, କେତେ ମୁହୂର୍ତ୍ତ ଆଗରୁ ଯେଉଁ ଦୁଃସ୍ୱପ୍ନ ତାର ଶ୍ୱାସରୋଧ କରୁଥିଲା ତାହା ଠାରୁ ବି । ଖୋଲା ଝରକା ଭିତର ଦେଇ ଜୀବନର କେତୋଟି ନିଶ୍ୱାସ ଦ୍ରୁତ ଗତିରେ ପ୍ରବେଶ କରି, ତା ହୃଦୟରେ ଭୟଙ୍କର ଓଲଟ ପାଲଟ ସୃଷ୍ଟି କରିଛି । ସମ୍ଭବତଃ ଜଣା ଯାଉଥିଲା. ଯେପରିକି କେବଳ ଭିତରେ ନୁହେଁ, ବାହାରେ ମଧ୍ୟ, ଘରଅଡ଼ର ଯେଉଁସବୁ ପଦାର୍ଥକୁ ସେ ପ୍ରାଣହୀନ ବୋଲି ଏତେ ଦିନ ଯାଏ ଜାଣି ଆସିଥିଲା, ସେହି ସବୁକୁ ସେ ଏବେ ଠିକଏ ବି ସ୍ଥାନାନ୍ତର କରି ନାହିଁ, ତାର ମୃତ୍ୟୁ-ସ୍ୱପ୍ନର ସନ୍ଧିକ୍ଷଣରେ ତାକୁ ସାହାଯ୍ୟ କରେ ବୋଲି ସେହି ସବୁ ବି ଯେମିତି ପ୍ରାଣ ଲାଭ କରି ବଢ଼ି ଉଠିଛନ୍ତି ।

ଅତି ବିଚକ୍ଷଣ ଭାସ୍କର ଓ ତା ମାଆ ଭିତରେ ହେଉଥିବା କଥାବାର୍ତ୍ତା ପ୍ରତି ସେ କାନ ଦେଲା, ଏବଂ ସେହି ଘରଟିର ଓ ତାର ଚିତ୍ରପଟ ଭୂଷଣର ପ୍ରଶଂସା ଶିଳ୍ପୀର ମୁଖରୁ ଶ୍ରବଣ କଲା— କି ସୁମଧୁର କଣ୍ଠସ୍ୱର ତାର ! ମାଆ ପ୍ରସ୍ତାବ କଲା ଯେ ସେ ଅନ୍ୟ କୋଠରୀଗୁଡ଼ିକ

...ଲ ନୈତିକ ଏବଂ ଅଦ୍ଭୁତ ଉଦ୍‌ବେଗପୂର୍ଣ୍ଣ ଅବସ୍ଥାରେ ହିଁ ଅଛି ବ ତାଙ୍କ ପଛେ ପଛେ ବୁଲିବାକୁ ଲାଗିଲା । ତାକୁ ପୁଣି ଜୀବନ୍ତ କରିବା ପାଇଁ ସେହି ତରୁଣ ବ୍ୟକ୍ତି, ସମ୍ପୂର୍ଣ୍ଣ ଅଜଣା ହୋଇ ସୁଦ୍ଧା, କଣ ତାର ମୃତ ସ୍ୱପ୍ନରେ ପ୍ରବେଶ କରନ୍ତି ?

ଏହି ନୂଆ ଧାରଣାଟି ଏମିତି ପ୍ରବଳ ହୋଇ ପଡ଼ିଲା ଯେ ଯେତେବେଳେ ସେ ଶୋଇବା-ଘର ନିକଟରେ ପହଞ୍ଚିଲେ, ସେ କୌଣସି ମତେ ସେହି ଦୁଆର-ବନ୍ଧ ଡେଇଁ ପାରିଲା ନାହିଁ । ସେ ଲକ୍ଷ୍ୟ କଲା, ତା ମାଆ ଓ ତରୁଣ ବ୍ୟକ୍ତି ମଧ୍ୟରେ ଏକ ଅର୍ଥପୂର୍ଣ୍ଣ ଦୃଷ୍ଟି ବିନିମୟ ହେଲା ଆଉ, ଅଧିକ ସମୟ ନିଜକୁ ସମ୍ଭାଳି ନ ପାରି, ସେ ଖୁବ୍ କାନ୍ଦି ପକାଇଲା ।

ଯେଉଁ ଶୋକରେ ସେ ଏତେ ଦିନ ବହୁ ବାର ଭାଙ୍ଗି ପଡ଼ିଥିଲା, ସେଥିରେହିଁ ତା କଣ୍ଠରୁ ଅବିରଳ କ୍ରନ୍ଦନ ସ୍ୱର ବାହାରିଲା । କିନ୍ତୁ କୌଣସି ଅସ୍ପଷ୍ଟ ଉପାୟରେ ସେ ବୁଝି ପାରିଲା ଯେ ଏଥର ତା କାନ୍ଦଣାରେ ପ୍ରଭେଦ ଦେଖା ଦେଉଛି, ପୂର୍ବ ପରି ତାର କ୍ରନ୍ଦନର ସ୍ୱର ତା ଭିତରେ ଦୁଃଖର ପ୍ରତିଧ୍ୱନି ଉଠାଉ ନାହିଁ, ଯେଉଁସବୁ ମୂର୍ତ୍ତି ସଦାବେଳେ କ୍ରନ୍ଦନ ସହିତ ତା ଆଖି ଆଗରେ ଭାସିଯାଏ ଆଜି ଆଉ ତାର ଦେଖା ମିଳିଲା ନାହିଁ । ଏଥର ସେ ଅଦ୍ଭୁତ ମୁକ୍ତି ଭିତରେ ଚୁପ୍ ହୋଇଗଲା, ଯେତେବେଳେ ତାର ମାଆ ଦ୍ରୁତ ତା ପାଖକୁ ଆସି ଅପରେ ସେହି ଏକ କଥାରେ ତାକୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲା ଏବଂ ମନରେ ଦମ୍ଭ ବାନ୍ଧିବାକୁ ଉପଦେଶ ଦେଲା । ସେ ଏହିଭଳି ସାନ୍ତ୍ୱନା ସମ୍ଭାଳି ପାରିଲା ନାହିଁ, କିନ୍ତୁ ଖୁବ୍ ଚେଷ୍ଟା କରି ତାର କ୍ରନ୍ଦନର ବେଗ ରୋଧ କରି ଦେଲା । ତରୁଣ ବ୍ୟକ୍ତି ସେତେବେଳେ ତାକୁ ତାର ଶୋକ ଠାରୁ ବିଚ୍ଛିନ୍ନ କରିବା ପାଇଁ ନିକଟସ୍ଥ ଉପରେ ଥିବା ତାର ଛେଳିର (ଛବି) ଅଲବମଟା ତାକୁ ଦେଖାଇବାକୁ ଅନୁରୋଧ କଲା, ସେ ତା ପ୍ରତି କୃତଜ୍ଞତା ଜ୍ଞାପନ କଲା ।

ସେ ତା ଛବିଗୁଡ଼ିକର ପରିମିତ ଓ ନୈଷ୍ଠିକ ପ୍ରଶଂସା କଲା, କେତେ ପରାମର୍ଶ ଦେଲା ଏବଂ ଭୁଲଗୁଡ଼ିକ ଦେଖାଇ ଦେଲା । ସେ ଦ୍ରଷ୍ଟୃ ପରୁରିବାକୁ କୁଲ୍‌ହେୃସ୍ତ୍ର ବୁଝାଇବାକୁ ଲାଗିଲା ଏବଂ ତେଣୁ ଏକ ଆଲୋଚନା ଚାଲିଲା । ଶେଷରେ କୁଲ୍‌ହେୃସ୍ତ୍ରର ଅସାଧାରଣ କ୍ଷମତା ବିଷୟ ଉଲ୍ଲେଖ କରି, ସେ ତାକୁ ଭଲ ଭାବରେ ଛବି ଅଙ୍କନ ଶିଖିବାକୁ ପରାମର୍ଶ ଦେଲା । ଏହା ଅବହେଳା କଲେ ପାପ ହେବ, ପ୍ରକୃତ ପାପ ! ସେ ଜଣେ କେବେ ରଙ୍ଗରେ ଛବି ଅଙ୍କିବାକୁ ଚେଷ୍ଟା କରନ୍ତି ? କରି ନାହିଁ ? ସତରେ ! କାହିଁକି ନୁହେଁ ? ସ୍କେଚ୍ କରିବାରେ ଯାହାର ଏମିତି ସୁନ୍ଦର ହାତ ଏବଂ ଯେ ଏଥିପାଇଁ ଏତେ ଉତ୍ସାହ ଦେଖାଉଛନ୍ତି, ତା ପକ୍ଷରେ ଏହା ଆଦୌ କଷ୍ଟକର ହେବ ନାହିଁ ।

କନ୍‌ଷ୍ଟାନ୍‌ଟିନୋ ପଲ୍ୟୁଆନି ତାକୁ ଚିତ୍ରବିଦ୍ୟା ଶିକ୍ଷା ଦେବାକୁ ପ୍ରସ୍ତାବ କଲା । ସିନୋରିନା କନ୍‌ସାଲ୍‌ଭି ତାହା ଗ୍ରହଣ କଲା । ସ୍ଥିର ହେଲା ଯେ କାଲି ଠାରୁ ପାଠ ଆରମ୍ଭ ହେବ—ସେଠାରେ, ନୂଆ ଘରେ, ଯାହା ଅସମ୍ପୂର୍ଣ୍ଣ ଅଂଶରେ ସେମାନଙ୍କ ପ୍ରତୀକ୍ଷା ପାଇଁ ରହି ରହିଥିଲା ।

ପ୍ରାୟ ଦୁଇ ମାସ ପରେ ପଲ୍ୟୁଆନିର ଷ୍ଟୁଡ଼ିଓରେ ସୋଫା ଉପରେ ସିଗ୍ରେ କଲ୍ଲି ଗଡ଼ପଡ଼ ହେଉଥିଲା । ତା ଭିତରେ ଗୋଟିଏ ପ୍ରକାଣ୍ଡ ସମାଧି-ସ୍ମୃତିସ୍ତମ୍ଭ ଚିତ୍ରିତ ହୋଇ ପଡ଼ିଥିଲା—କାମଟି ଏବେ ଆରମ୍ଭ ହୋଇଛି । ସେ ଖଣ୍ଡିଏ ପୁରୁଣା ଶୁଖା ବ୍ଲାଉଜକୁ ଗୋଡ଼ ଭିତରେ ପିନ୍ ମାରି ଦେଇ ପିନ୍ଧିଛି ! ପାଇପ ଟାଣୁ ଟାଣୁ ସେ ତା ସାମନାରେ କଳା କାଠ ଟୁଲ୍ ଉପରର ସିଧା ଠିଆ ହୋଇଥିବା

ଗୋଟିଏ କଙ୍କାଳ ସହିତ ଅଦ୍ଭୁତ କଥାବାର୍ତ୍ତା କରୁଥିଲି । ଜଣେ ଡାକ୍ତର ବନ୍ଧୁଙ୍କ ନିକଟରୁ ମଡେଲ କରିବ ପାଇଁ ସେ ଏହାକୁ ମାଗି ଆଣିଛି ।

ଖପୁରୀ ଉପରେ ଟିକିଏ ବଙ୍କାଇ ସେ ଗୋଟିଏ କାଗଜର ଟୋପୀ ମାରି ଦେଇଛି, ଏବଂ ତାଙ୍କ ଲାଠି ଜଣେ ସାଧାରଣ ସୈନ୍ୟ ପରି ଦେଖା ଯାଉଛି— ସେ ସିଧା ଠିଆ ହୋଇ, ଭାସ୍କର-ଜର୍ଜୋଶାଳ ହିଟେଲ୍ କଳ୍ପି ଗାଇପ ଜାଣିବା ଗାଙ୍କରେ ଯେଉଁ ଉପଦେଶ ତାକୁ ଦେଉଛି, ତାହା ଶୁଣୁଥିଲା ।

'ଅଚ୍ଛା, କୁହ ତ ବୁଢ଼ା, ତୁମେ ଭଦ୍ରଙ୍କ ଶିକାର କରିବାକୁ ଗଲ ? ଦେଖି ପାରୁଛ, ଏହା ଦ୍ୱାରା ତୁମେ କା ଉଦର ଗୋଳମାଳରେ ପଡ଼ି ଯାଇଛ ? ସେଇଥିପାଇଁ ତୁମେ ଆଜି ଏକ କଦଳର ଲୁଚ ହୋଇ ଯାଇଛ······କାଠି ପରି ଗୋଡ଼······ତୁମର ଯନ୍ତ୍ର ଦେହଟା ଗୋଟାଏ ହାଡ଼ ମାଳ । ରକ୍ତମାଂସ— ତୁମକୁ ପଚାରୁଛି— ତୁମେ କଣ ଭାବୁଛ ଯେ ତୁମର ଏହି ବଭ୍ରାଟର କେବେ ହୋଇ ପାରିବ ? ଦେଖ, ବନ୍ଧୁ, ଜୀବନ ଠିଆ ହୋଇଛି, ଦେଖ; ଦେଖ, କାପର ସୁନ୍ଦରୀ ଓ ସ୍ୱାସ୍ଥ୍ୟବତୀ ବାଳିକାଟିଏ ମୁଁ ଗଢ଼ିଛି । ତୁମେ କ'ଣ ପ୍ରକୃତରେ ଜୀବନେ ଉନ୍ମାନ୍ତ ମନେ କରୁଛ ଯେ ସେ ତୁମକୁ ବନ୍ଧୁ ହେବାକୁ ରାଜି ଅଛି ? ମଧୁର ଓ ଲଜ୍ଜିତ ଭଙ୍ଗୀରେ, ସେ ତୁମକୁ ଲାଗି ଠିଆ ହୋଇଛି । ସେ ବାଲ୍ୟ ବୋଲ୍ୟ ଯୌବନ ହସିଛି ' କିନ୍ତୁ ବିବାହ-ମୃଦ କଥା ଏବେ କୁହନା— ତାହା ଆଉ ହେବ ନାହିଁ ! ତୁମେ ଏହି ଧାରଣା ମନ ଭିତରୁ ଦୂର କରିଦିଅ······ତା ପଛରେ ଟଙ୍କା ଖର୍ଚ୍ଚ କରି ଦେଖ ନାହିଁ, ବୁଢ଼ା— ତା ପଛରେ ତୁମର ସର୍ବ ଉଡ଼ାଇ ଦେଉନା ନାହିଁ ? କଣ ! ତୁମେ ତାଙ୍କୁ ତୁମର ଥଳି ଓ ତ ଭିତରେ ଥିବା ଟଙ୍କା ସବୁ ଦେଇ ସାରିଛ ? ତାହାହେଲେ ମୁଁ ତୁ·

ପାଇଁ ଏଷଣି କଣ ଘଟିପାରେ ବୋଲି ତୁମେ ଆଶା କରୁଛ ? ତୁମେ କା ବାସ୍ତବରେ ପଡ଼ିଛ ମୋତେ କହ ତୁମର କିଛି ଲାଭ ନାହିଁ । ମୁଁ ଜାଣି ନି, କଣ ଘଟିବ । ଏହା ଗୋଟିଏ ଷୀପିସ୍ତ ପୃଥିବୀ ଏବଂ ସେଠାରେ କେହି ନାହାନ୍ତି ଯାହାକୁ ତୁମେ ବିଶ୍ୱାସ କରି ପାରିବ... ବର୍ତ୍ତମାନ କଣ ଘଟିଛି ତୁମେ ବୋଧହୁଏ ଜାଣିଥିବ, ତୁମେ ଜାଣି ନାହିଁ ? ସେ ପୁଣି ଅଙ୍କନ ଶିଖିବା ଆରମ୍ଭ କରିଛି—ଜୀବନ—ଆଉ ତାର ଶିଷ୍ୟଙ୍କ କିଏ ବୋଲି ତୁମେ ଭାବୁଛ ? କନ୍ଷ୍ଟାନ୍ଟିନୋ ପଲ୍ୟାନି ! ବର୍ତ୍ତମାନ ବୁଝ, ଏହା ଠିକଏ ମୋଟା—ଏହା ଥଞ୍ଚାର ବାହାରେ । ମୁଁ ଯଦି ତୁମର ଅବସ୍ଥାରେ ଥାଆନ୍ତି ମୁଁ ତାକୁ ଦ୍ୱନ୍ଦ୍ୱ ଯୁଦ୍ଧକୁ ଡ଼ାକ ଦିଅନ୍ତି......ଆଜି ସକାଳେ କଣ ଘଟିଛି ତୁମେ ଜାଣନା ? ତୁମେ ତ ଜାଣ, ମୋ ଉପରେ କଡ଼ା ହୁକୁମ—ସେ ଚାହେଁ ନାହିଁ, ଜୀବନକୁ ନଗ୍ନ ରୂପ ଦେବାକୁ ସେ ମୋତେ ବିଶେଷ ଭାବରେ ବାରଣ କରନ୍ତି । ଅଚ୍ଛା, ସେ—ଗାନ୍ଧ ଦେଲେ ଯୁଦ୍ଧା—ଭାସ୍କର ତ, ଏବଂ ସେ ଭଲକରି ଜାଣେ ଯେ ପ୍ରଥମେ ନଗ୍ନ ମୂର୍ତ୍ତି ନ ଗଢ଼ିଲେ, ପରେ ତାକୁ ପୋଷାକ-ପତ୍ର ପିନ୍ଧାଇ ପାରିବ ନାହିଁ । ଏଥିଣି ଠିକଏ ମନ ଦେଇ ଶୁଣ କଣ ଘଟିଛି ! ମୁଁ ଜୀବନର ଯେଉଁ ଚମତ୍କାର ନଗ୍ନ ମୂର୍ତ୍ତିଟି ତିଆରି କରିଛି ତା ଉପରେ ସେହି ଦାଳଭାଟିର ମୁଖ ବସାଇବାକୁ ସେ ଦେବ ନାହିଁ ! ସେଥିପାଇଁ ସେ ଆସେ—ତୁମେ ତାକୁ ଦେଖି ନାହିଁ ?—ଏବଂ ଷ୍ଟାଣ୍ଡ ଉପରେ କ୍ରୁଦ୍ଧ ପଣ୍ଡ କରଣୀର ଦୁଇଟା ସ୍କେଚରେ ମୋ ଦ୍ୱାରା ଅଙ୍କିତ ସମଗ୍ର ମୁଖ ମଣ୍ଡଳଟିକୁ ସେ ଲୁଚାଇ ଦିଏ । ଜାଣ ବନ୍ଧୁ, ସେ କାହିଁକି ଏମିତି କଲା ? ମୁଁ ତାକୁ ପାଠି କରି କହିଲି, "ରହ, ରହ ! ଅଧ ମୁହୂର୍ତ୍ତକ ଭିତରେ ଯାଇ ମୁଁ ତାକୁ ପୋଷାକ ପିନ୍ଧାଇ ଦେଉଛି । ମୁଁ ତାକୁ ଠିକ୍ ଭାବରେ ପୋଷାକ ପିନ୍ଧାଇ ଦେବି ।" କିନ୍ତୁ କିଛି ଫଳ ହେଲା ନାହିଁ ! ସେମାନେ ବର୍ତ୍ତମାନ ଜୀବନକୁ ନଗ୍ନ

ରୂପେ ଦେଖିବାକୁ ଚାହାନ୍ତି······ଏହା ନଗ୍ନ ଜୀବନ ହେବ, ଜୀବନ ଯେତେ ନଗ୍ନ ଓ ଅପରିପକ୍ୱ ହେବାର କଥା ହେବ! ସେମାନେ ମୋର ପ୍ରଥମ ଛବି ପାଖକୁ ଫେରି ଆସିଛନ୍ତି ······ ଜୀବନର ଛବି ହେଉ ଗୋଟିଏ ରୂପକ, ଏବଂ ଏଥିରୁ ହିଁ ଅଠର ମୂର୍ତ୍ତି ଗଢ଼ିବା ପରିକଳ୍ପନା ସମ୍ପୂର୍ଣ୍ଣ ରୂପେ ପୋଛି ଦିଆ ହୋଇଛି ! ହେ ମୋର ପ୍ରିୟତମ ବନ୍ଧୁ , ବର୍ତ୍ତମାନ ତୁମେ ତାକୁ ଉଡ଼ି ଧରିବ, ଏବଂ ସେ ତୁମ ସହିତ କୌଣସି ସମ୍ପର୍କ ରଖିବାକୁ ମନା କରି ଦେବ !······ଆଃ ! ତୁମେ ବର୍ତ୍ତମାନ ମୋତେ କୁହ ତ— ଏହି ପୃଥିବୀରେ ତୁମର ଶରୀରକୁ ଯିବାର କି ଦରକାର ପଡ଼ିଥିଲା ?'

# ସେ

ପ୍ରଥମେ ଯେଉଁ ଦିନ ସେମାନଙ୍କର ବିବାହର ବିଷୟ ସ୍ଥିର ହେଲା, ସେହି ଦିନ ଠାରୁ ବାର୍ତ୍ତୋଲନୋ ତାର ଭାବୀ ସ୍ତ୍ରୀ କହୁଥିବାର ଶୁଣିଛି : 'ଜାଣ ନା, ମୋର ପ୍ରକୃତ ନାମ କିନ୍ତୁ ଲିନା ନୁହେଁ । ମୋର ଅସଲ ନାମ କାରୋଲିନା, କିନ୍ତୁ ସେ ମୋତେ ଲିନା ବୋଲି ଡାକନ୍ତି, ଆଉ ସେହି ଦିନରୁ ମୋ ନାମ ଲିନା ହୋଇ ଯାଇଛି । ଆହା—ଖୁବ୍ ଭଲ ମଣିଷ ଥିଲେ ସେ । ଏହି ଦେଖ ନା ତାଙ୍କର ଛବି—'

ଏହା କହି ଲିନା ଗୋଟିଏ ବଡ଼ ଫଟୋଗ୍ରାଫ ଆଡ଼କୁ ଆଙ୍ଗୁଳି ଦେଖାଇ ଦେଲା । ବାର୍ତ୍ତୋଲନୋ ଦେଖିଲା, ତାର ଭାବୀ ସ୍ତ୍ରୀର ପ୍ରଥମ ସ୍ୱାମୀ ସିନୋର କୋସିମୋ ତାଦେୟୀ ତା ଆଡ଼କୁ ଚାହିଁ ମୃଦୁ ହସି ଟୋପି ଉଠାଉଛନ୍ତି ।

ପ୍ରାୟ ନିଜର ଅଜାଣତରେ, ବାର୍ତ୍ତୋଲନୋ ମୃତ ଭଦ୍ରଲୋକଙ୍କର ଅଭିବାଦନର ପ୍ରତ୍ୟୁତ୍ତର ସ୍ୱରୂପ ନିଜର ମଥାଟି ଅଧେ ତଳକୁ ନଇଁ ପକାଇଥିଲା ।

ତାଦେୟୀ ଥିଲେ ଜଣେ ବିଖ୍ୟାତ ସ୍ଥପତି । ତାଙ୍କ ମୃତ୍ୟୁ ପରେ ତାଙ୍କ ଛବିଟି କାନ୍ଥରୁ ଖୋଲି ରଖିବା କଥା ତାଙ୍କ ବିଧବା ସ୍ତ୍ରୀ ଲିନା ସାରୁଣ୍ଟିର ଆଦୌ ମନେ ନ ଥିଲା । କାହିଁକି ବା ହେବ ?

ତାଙ୍କ ନିକଟରେ ଲିନାର କୃତଜ୍ଞତା ତ କମ୍ ନୁହେଁ । ତାର ମାନ ସମ୍ମାନ, ଘରଦ୍ୱାର, ସୁନ୍ଦର ସୁନ୍ଦର ଅସବାବପତ୍ର ସବୁ ତ ସେ ତାର ପାଇଁ କରି ଯାଇଛନ୍ତି ।

ଭାବୀ ଦ୍ୱିତୀୟ ସ୍ୱାମୀର ଆଗ୍ରହର ଭାବ ତଲେ ମାନ ଲକ୍ଷ୍ୟ ନ କରି ଲିନା ଆତୁର କହୁଛି, 'ମୁଁ ଅବଶ୍ୟ ନାମ ବଦଳାଇବାକୁ ଚାହେଁ ନା । କିନ୍ତୁ ସେ ଯାହା କହୁଥିଲେ, ତା ଉପରେ ମୁଁ ଆଉ ନାଁ କହି ପାରୁ ନ ଥିଲି । ତୁମେ ବି ମୋତେ ସେହି ନାମରେ ଡାକ, କେମିତିକା ? କାହିଁ ମନେ କରିବ ନାହିଁ ତ ?'

ବ୍ୟାଙ୍କୋଲିନୋ ଟିକିଏ ରହିଯାଇ କହୁଛି, 'ନା…ସେ…ନା …ସେଥିରେ ତ ଠିକ୍ ଅଛି ।' କାନ୍ଥର ବଡ଼ ଛବିଟା ଉପରୁ ସେ ଯେମିତି ତା ଆଖି ଆଉ ଫେରାଇ ପାରି ନାହିଁ — ଭଦ୍ରଲୋକ ତାରି ଆଡ଼କୁ ଅନାଇ ମୁରୁକି ମୁରୁକି ହସି ଟୋପି ଟେକି ଅଭିବାଦନ ଜଣାଉଛନ୍ତି ।

ଛଅ ମାସ ପରେ ଯେତେବେଳେ ଅନ୍ତରଙ୍ଗ ବନ୍ଧୁମାନେ ଲିନା ଓ ତାର ସ୍ୱାମୀକୁ ସେମାନଙ୍କର ମଧୁଚନ୍ଦ୍ରିକା ଯାତ୍ରା ଉପଲକ୍ଷରେ ଗାଡ଼ିରେ ଚଢ଼ାଇ ଦେବା ପାଇଁ ଷ୍ଟେସନକୁ ଆସିଲେ, ସେତେବେଳେ ଲିନାର ପ୍ରିୟ ସଖୀ ଅଟେଭିନସିସ୍ମା ମୋତ୍ତ ତାର ସ୍ୱାମୀ ଅଡ଼କୁ ଅନାଇ ଗୋଟିଏ ଅଦମ୍ୟ ଦୀର୍ଘଶ୍ୱାସ ପକାଇ କହିଲା, 'ବିଚାରୀ ବାଟ୍ଟୋଲିନୋ — ଲିନା ପରି ଝିଅ ହାତରେ ……।'

'କାହିଁକି ? ବିଚାରୀ କାହିଁକି ?' ତାର ସ୍ୱାମୀ ପଚାରିଦେଲା । ଭଦ୍ରଲୋକଟିର ବନ୍ଧୁସ୍ୱ ଦେଖାଉଛି, କହିବାକୁ ଗଲେ ଲିନାର ଦ୍ୱିତୀୟ ସ୍ୱାମୀର ମଧ୍ୟସ୍ଥତା ସେହିଁ କରିଛନ୍ତି । ତେଣୁ ଏଥି ଭିତରେ କୌଣସି

ପ୍ରକାର ସମାଲୋଚନା ଶୁଣିଲେ ତାଙ୍କର ରାଗ ହୁଏ । 'ଏତସବ ତୁମକୁ ଜଣା ହୋଇଛି ? ବାର୍ଥୋଲମେଓ ତ ବୋକା ନୁହେଁ, କେମିଷ୍ଟ୍ରିରେ ତାର ଅସାଧାରଣ ଦଖଲ ।'

'ହଁ, କେମିଷ୍ଟ୍ରିରେ,' କହିଲ ଅଟୋଭିନସିପ୍ପା ।

'ଦେଖିବ ତୁମେ, ବାର୍ଥୋଲମେଓ ପୁରସ୍ପୁର ଜଣେ ଆଦର୍ଶ ସ୍ୱାମୀ ହେବ । କେମିଷ୍ଟ୍ରି କଥା ବା କଣ— ଯଦି ଟିକିଏ ପରିଶ୍ରମ କରେ ସେ ତାର ସବୁ ବହି ଛପାଇ ବାହାର କରି ଦିଅନ୍ତା, ତାହାହେଲେ ଦେଶରେ ସେ ଜଣେ ଆଦର୍ଶ ଗ୍ରନ୍ଥକ ହୋଇ ଯାଆନ୍ତା । ତା ଛଡ଼ା ସେ ଏମିତି ମନ-ଖୋଲା ଭଲ ମଣିଷ— '

'ଠିକ୍ କହୁଛ, ନିତାନ୍ତ ମନ-ଖୋଲା ଭଲ ମଣିଷ ।' ଲିନାର ଏହି ଦ୍ୱିତୀୟ ମଧୁଶଯ୍ୟା କଥା ଭାବି ଅଟୋଭିନସିପ୍ପା ମନେ ମନେ ଟିକିଏ ନ ହସି ରହି ପାରିଲା ନାହିଁ । ପ୍ରଥମ ଥର ବି ଲିନା ସେମିତି ଯାଇଥିଲା— ଏଥର ବି ସେମିତି ଯାଉଛି । ପ୍ରଥମ ଥର ଥିଲା ଫୁର୍ତ୍ତିବାଜ, ଧୂର୍ତ୍ତ, ଭଦ୍ରାଣୀ (କେତେବେଳେ ବା ଟିକିଏ ବେଶୀ ଭଦ୍ରାଣୀ) ସିନୋର ତାଦେସ୍କୀ, ଆଉ ଏଥର ତା ସ୍ଥାନରେ ଏହି ଟୋକା ବାର୍ଥୋଲମେଓ— ମୋଟା ବୋଧା, ଅଥଚ ବେଚାରୀ ଓ ଅନ୍ଧଭକ୍ତାରେ ପିଲା ମଣିଷ ।

ଗାଡ଼ି ଛାଡ଼ିବା ଆଗରୁ ବୁଢ଼ା ଆନସେଲମୋ ବୋହୂକୁ କହୁଥିଲେ, 'ବାର୍ଥୋଲମେଓକୁ ଟିକିଏ ଦେଖା ଶୁଣା କରିବୁ··· ତାର ଟିକିଏ ଯତ୍ନ ନେବୁ ।'

ଲିନା ତାର ପ୍ରଥମ ମଧୁଶଯ୍ୟାରେ ଆଗରୁ ଥରେ ରୋମ୍ ଆସିଥିଲା । ତେଣୁ ଦେଶ ଭ୍ରମଣର ସବୁ ରହସ୍ୟ ତାକୁ ଜଣା— ସେ ବାଟ ସାରା ବାଡ଼ୋଲିନାକୁ ପ୍ରାୟ ପିଲା ମଣିଷ ପରି ହାତ ଧରି ନେଇ ଆସିଲା । ଶେଷ ଅବଧି ଗାଡ଼ି ଯେତେବେଳେ ରୋମରେ ପହଞ୍ଚିଲା, ସେ ସ୍ୱାମୀକୁ କହିଲା, 'ତୁମେ କିଛି ଚିନ୍ତା କର ନାହିଁ— ମୁଁ ସବୁ ଠିକ୍ କରି ଦେଉଛି ।' ଯେଉଁ କୁଲିଟା ସେମାନଙ୍କର ଜିନିଷପତ୍ର ଉଠାଉଥିଲା ତା ଆଡ଼କୁ ଅନାଇ ସେ କହିଲା, 'ହୋଟେଲ ଭିକ୍ଟୋରିଆ ।'

ଷ୍ଟେସନ ବାହାରେ ହୋଟେଲ ଭିକ୍ଟୋରିଆର ବାସ୍ ଅପେକ୍ଷା କରିଥିଲା । ଡ୍ରାଇଭରକୁ ଚିହ୍ନି ପାରି ଲିନା ତା ଆଡ଼କୁ ଅନାଇ ଟିକିଏ ମଥା ହଲାଇଲା ।

'ଦେଖ, ସୁନ୍ଦର ହୋଟେଲଟିଏ । ଷ୍ଟାଫ୍, ଝିଅ-ଟୋକା, ଚାକର ବାକରଗୁଡ଼ାକ ଚଟ୍‌ପଟ୍, ଏକବାରେ ସହରର ମଝିରେ, ଅଥଚ ଖରଚ ବି ଖୁବ୍ ବେଶୀ ନୁହେଁ । ··· ଛଅ ବର୍ଷ ପୂର୍ବେ ତାଙ୍କ ସହିତ ମୋର ପ୍ରଥମ ମଧୁଶଯ୍ୟା ପାଇଁ ଆସି ଏହି ହୋଟେଲରେ ରହିଥିଲି । ······ଦେଖ, ତୁମକୁ ବି ଏଠା ଖୁବ୍ ଭଲ ଲାଗିବ ।'

ହୋଟେଲଟା ଲିନାକୁ ପ୍ରାୟ ଘର ପରି ଲାଗିଲା । ତାକୁ ଯେ କେହି ଚିହ୍ନି ପାରିଛନ୍ତି ତାର ଏମିତି ମନେ ହେଲା ନାହିଁ । କିନ୍ତୁ ସେ ସମସ୍ତଙ୍କୁ ଠିକ୍ ଭାବରେ ଚିହ୍ନି ପାରିଲା । ଏହି ତ ବୁଢ଼ା 'ପିପ୍ପୋ', ଛଅ ବର୍ଷ ପୂର୍ବେ ଏହି ଲୋକଟି ତ ସେମାନଙ୍କୁ ଆଦର-ଯତ୍ନ କରିଥିଲା । ସେ ସେମାନଙ୍କୁ ଦୋତାଲାରେ ଏକ୍ ୧୨ ନମ୍ବର କୋଠରୀକୁ ନେଇଗଲା— ବେଶ୍ ବଡ଼ ଘରଟିଏ, ଭଲ ଭାବରେ ସଜା ହୋଇଥିଲା । କିନ୍ତୁ ଲିନାର ସେହି କୋଠରୀଟି ପସନ୍ଦ ହେଲା ନାହିଁ ।

'ପିପ୍ପୋ, ୧୯ ନମ୍ବର କୋଠରୀ କଣ ଖାଲି ନାହିଁ?' ପିପ୍ପୋ ଖବର ନେବାକୁ ବାହାରି ଗଲା । ସେହି ଅବସରରେ ଲିନାର ମନେ ପଡ଼ିଲା

ଯେ ଛଅ ବର୍ଷ ପୂର୍ବେ ତାର ବି ଠିକ୍ ଏହିପରି ଅବସ୍ଥା ହୋଇଥିଲା ।
ସେମାନଙ୍କ ପାଇଁ ସେମାନେ ଦୋ-ତାଲାରେ ଗୋଟିଏ କୋଠରୀ ଠିକ୍
କରି ରଖିଥିଲେ । କିନ୍ତୁ ସେ ଶୁଣିଥିଲେ, ତେତାଲାରେ ଏନ୍ ୧୯ନମ୍ବର
କୋଠରୀ ।

'ଶୁଣୁଛ, ସେଠାରେ ଆମେ ଭଲରେ ରହିପାରିବା । ଗୋଳମାଳ କମ୍, ପବନ ବେଶୀ । ସେହି ଏକା ଘର ...... ।'

ପିପ୍ରୋ ପେଇଆସି ଯେତେବେଳେ କହିଲା ଯେ ଏନ୍ ୧୯ ନମ୍ବର କୋଠରୀ ଖାଲି ଅଛି, ଲିନା ପିଲାଙ୍କ ପରି ହାତତାଳି ମାରି ହସି ହସି ଗଡ଼ିଗଲା । ଠିକ୍ ସେହି ଘରେହିଁ ସେ ପୁଣି ରହିବ, ସେହି ସବୁ ଆସବାବ ପତ୍ର, ସେହି ଭଳି ସୁସଜ୍ଜିତ, ଝରକା କଡ଼ରେ ଠିକ୍ ସେହିଭଳି ଥାଳ ! କି ମଜା !

କହିବା ବାହୁଲ୍ୟ, ବାର୍ତ୍ତୋଲ୍‌ମେନୋ ତାର ଆନନ୍ଦରେ ଅଂଶ ଗ୍ରହଣ କରି ପାରିଲା ନାହିଁ ।

'କି, ଘରଟି କଣ ତୁମକୁ ଭଲ ଲାଗୁ ନାହିଁ ?' ଲିନା ପଚାରିଲା ।

ଉଦାସ ଭାବରେ ବାର୍ତ୍ତୋଲ୍‌ମେନୋ ଜବାବ ଦେଲା, 'ମନ୍ଦ କଣ— ତୁମକୁ ଭଲ ଲାଗିଲେହିଁ ହେଲା ...... ।'

ତା ପରେ — ଲିନା ଯେତେବେଳେ ଲୁଗା ପାଲଟିବା ପାଇଁ ପରଦା ପଛକୁ ଗଲା — ସେ ଘରର ଖାଟ ଆଡ଼କୁ ଅନାଇ ଭାବିବାକୁ ଲାଗିଲା ଯେ ଏହିଠାରେ, ଏହି ଖଟଖଣାରେ ତାର ସ୍ତ୍ରୀ ତାର ପ୍ରଥମ ବିବାହିତ ରଜନୀ ଯାପନ କରିଛନ୍ତି— ଯାପନ କରିଛନ୍ତି ତାର ପ୍ରଥମ ସ୍ୱାମୀ ସିନୋର ଡାଡେଗ୍ଗୀଙ୍କ ସହିତ । ...... ଆଉ ଅନେକ ଦୂରରୁ, ତା ସ୍ତ୍ରୀର ଘରର କାନ୍ଥରେ ଟଙ୍ଗା ହୋଇଥିବା ଛବିଟି ଭିତରୁ, ସିନୋର ଡାଡେଗ୍ଗୀଙ୍କ ମୂର୍ତ୍ତି ତା ଆଖି ଆଗରେ ଭାସିଗଲା— ମୁରୁକି ମୁରୁକି ହସି ତା ଆଡ଼କୁ ଅନାଇ ସେ ଚୋଖି ଦେଉଛନ୍ତି !

ମଧୁଶଯ୍ୟା ପ୍ରସଙ୍ଗରେ ସେମାନେ ଯେ କେବଳ ସେହି ଏକା ବିଛଣାରେ ଶୋଇଥିଲେ ତାହା ନୁହେଁ, ସେହି ଏକା ରେସ୍ତୋରାଁରେ ଖାଇଲେ, ସେହିସବୁ ଦୃଶ୍ୟ ବୁଲି ଦେଖିଲେ, ସେହିସବୁ ଯାଦୁଘର, ସେହିସବୁ ଚିତ୍ରଶାଳା, ସେହିସବୁ ଗୀର୍ଜା, ଏପରିକି ସେହିସବୁ ଉଦ୍ୟାନ — ଯେଉଁଠାକୁ ଛଅ ବର୍ଷ ଆଗେ, ଲିନା ତାର 'ସେ'ଙ୍କ ସହିତ ଯାଇଥିଲା। ବାଟେଭିଲ୍‌ଟେନା ଭାରି ଲଜ୍ଜାଶୀଳ ମଣିଷଟିଏ—କୌଣସି ମତରେ ସେ ମୁହଁ ଖୋଲି କହି ପାରିଲା ନାହିଁ ଯେ ସେହି ପ୍ରଥମ ସ୍ୱାମୀର ଉପଦେଶ, ଅଭିଜ୍ଞତା, ରୁଚି, ଇଚ୍ଛା-ଅନିଚ୍ଛା ପଦେ ପଦେ ଅନୁସରଣ କରି ଚାଲିବାକୁ ତାକୁ କେତେ ଖରାପ ଲାଗୁଛି। ଲିନା ବି ଲକ୍ଷ୍ୟ କଲା ନାହିଁ ଯେ ନିଜର ବ୍ୟବହାରରେ ତାର ତରୁଣ ସ୍ୱାମୀ ମନେ ମନେ କିପରି ମର୍ମାହତ। ଅଠର ବର୍ଷ ବୟସରେ ତାର ବିବାହ ହୋଇଥିଲା। ସେତେବେଳେ କହିବାକୁ ଗଲେ ସେ ବାଳିକା ମାତ୍ର, କିଛି ବୁଝି ନାହିଁ, ଜାଣି ନାହିଁ, ଯେଉଁ ମଣିଷଟି ତାକୁ ଶିକ୍ଷା-ଦୀକ୍ଷା ଦେଇ ମଣିଷ କରିଛି। ସେ ତ ତାର ପ୍ରଥମ ସ୍ୱାମୀର ସୃଷ୍ଟି। ଯାହା କିଛି ତାର ଅଛି ସବୁ କଣ ସେ ତାଙ୍କ ଠାରୁ ପାଇ ନାହିଁ — ଏପରିକି, ତାଙ୍କ ଠାରୁ ଭିନ୍ନ ଭାବରେ ଭାବିବା କିମ୍ବା ଅନୁଭବ କରିବାର ଶକ୍ତି ବି ତାର ଲୋପ ପାଇ ଯାଇଥିଲା।

ସେ ଯେ ପୁଣି ବିବାହ କରିଛି, ତାହା ବି ତ ପିଟୋର ତାଦେଉସ୍କିଙ୍କରହିଁ ଉପଦେଶ। ସେହିଁ ତାକୁ ଶିକ୍ଷା ଦେଇ ଯାଇଛନ୍ତି ଯେ ଅଶ୍ରୁ ଜଳରେ ଜୀବନର ଶୁଶ୍ରୂଷା ହୁଏ ନାହିଁ, ଜୀବିତ ନିମନ୍ତେ ଜୀବନ, ଆଉ ମୃତ ନିମନ୍ତେ ମୃତ୍ୟୁ। କେବଳ ଏହି କଥା ମନେ କରି ସେ ବାଟେଭିଲ୍‌ନୋଙ୍କୁ ସ୍ୱାମୀ ରୂପେ ଗ୍ରହଣ କରିଥିଲା — ଅନ୍ୟ କୌଣସି

କାରଣ ହେଉ ନୁହେଁ । ଯଦ ବାଡେଣ୍ଟାଲ୍‌ନୋ ତାକୁ ଭଲ ପାଏ ତାହାହେଲେ ସେ ତାର ମତାମତ ମାନି ଚଳବ— ଆଉ ତାର ଅର୍ଥ ହେଉଛି ସ୍ୱିନୋର ତାଦେସ୍ତୀଙ୍କର ଇଚ୍ଛା-ଅନଚ୍ଛା ଅନୁସରଣ କରିବା । ସେ ହିଁ ଭର୍ତ୍ତା, ସେ ହିଁ ତାର ଜୀବନ-ରଥର ସାରଥୀ ।

କିନ୍ତୁ— ଯୌବନର ଅବ ଅନଭଜ୍ଞତା ହେତୁ ବାଡେଣ୍ଟାଲ୍‌ନୋ ଭାବିଲ—ଅତି ସାମାନ୍ୟ କିଛି ବି କଣ ଲିନା ତାକୁ ଦେଇ ପାରେନା— ଗୋଟିଏ ଚୁମ୍ବନ, ଟିକଏ ଆଦର, ତାର ପ୍ରଥମ ସ୍ୱାମୀ ତାଙ୍କୁ ଯାହା ସବୁ ଶିଖାଇ ଯାଇଛି ତା ଠାରୁ ଯାହା ଭିନ୍ନ ? ଏପରି କିଛି, ଯାହା ସେହି ମୃତ ମନୁଷ୍ୟର କବ୍ଜିଭିତରୁ ଲିନାକୁ ସେତିକବେଳ ପାଇଁ ମୁକ୍ତି ଦେଇ ପାରେ ? କିନ୍ତୁ କଥାଟି ଉଲ୍ଲେଖ କରିବାରେ ବି ତାର ଲଜ୍ଜା, ଆଉ ବିଦ୍ରୋହ କରିବା କଥା ତ ସେ ଭାବି ବି ପାରୁ ନାହିଁ ।

ମଧ୍ୟାହ୍ନଶଯ୍ୟାରୁ ତେବେ‌ଅପି ସେମାନେ ଗୋଟିଏ ଅପ୍ରତ୍ୟାଶିତ ଦୁଃସମ୍ବାଦ ପାଇଲେ ।

ସିନୋର ମୋଜ଼ି— ଯେ ସେମାନଙ୍କ ବିବାହରେ ଘଟକସୂତ୍ର ହୋଇଥିଲେ— ହଠାତ୍ ମରି ଯାଇଛନ୍ତି ।

ସେ ନିଜେ ଯେତେବେଳେ ବିଧବା ହୋଇଥିଲା ସେତେବେଳେ ଏହି ମୋଜ଼ିଙ୍କ ସ୍ତ୍ରୀ ଅଟେଜିନସିଆ ତାର ଲାଗି ଯେ କଣ କରିଥିଲେ ତାହା କଣ ଲିନା ପାଶୋରି ପାରେ ? ସେ ବି ଦୌଡ଼ିଗଲା ସର୍ଖୀକୁ ସାନ୍ତ୍ୱନା ଦେବା ପାଇଁ, ସାହାଯ୍ୟ କରିବାକୁ । କିନ୍ତୁ ସେ ବୁଝି ପାରିଲା ନାହିଁ ଯେ ସ୍ୱାମୀଙ୍କ ମୃତ୍ୟୁର ଦଶ ଦିନ ପରେ ବି ଅଟେଜିନସିଆ କାହିଁକି ଏପରି ଶୋକାକୁଳ ହୋଇ ରହିଛି ।

'ତାର କଣ ହୋଇଛି କୁହ ତ ?' ଫେରି ଆସି ସେ ନିଜର ସ୍ୱାମୀଙ୍କୁ ପଚାରିଲା ।

ସ୍ତ୍ରୀର ବୋଧଶକ୍ତିର ଅଭାବ ହେତୁ ବାର୍ତ୍ତୋଲ୍ମନୋ ଲଜ୍ଜାରେ ଲାଲ୍ ହୋଇଗଲା ।—'ମାନେ—ଯାହା କୁହ ନା, ତାର ସ୍ୱାମୀ ତ ମରି ଯାଇଛି ।'

'ତାର ସ୍ୱାମୀ ? ମରିଗଲେ ବା ହେଲା କଣ ? ତାପରେ ବନ୍ଧୁପରି ସ୍ୱାମୀ, ତାର ପୁଣି ······ ।'

'ତାହା ହେଲେ ବି, ସେଥିପାଇଁ କଣ ଦୁଃଖ ହେବ ନାହିଁ ?'

'ତାପରେ ବନ୍ଧୁପରି, କିନ୍ତୁ ତାପରେ ନୁହେଁ ।' ଲିନା ଜୋର କରି କହିଲା ।

ଲିନାର କଥାହିଁ ଠିକ୍ । ଅର୍କେନସିଦ୍ଧା ଲକ୍ଷ୍ୟ କରିଥିଲା ଯେ ଲିନାର ମୁହଁରୁ ବାରମ୍ବାର ତାର ମୃତ ସ୍ୱାମୀଙ୍କ କଥା ଶୁଣି ଶୁଣି ବାର୍ତ୍ତୋଲ୍ମନୋର ମନରେ ଘୃଣା ଜାତ ହୋଇଛି । ତେଣୁ ସେ ଦୁଃସହ ଦୁଃଖର ଭାବ ଧରି ତାର ମନ ଭୁଲାଇବାକୁ ଚେଷ୍ଟା କଲା । ତାର ଦୁଃଖ ବାର୍ତ୍ତୋଲ୍ମନୋକୁ ଏମିତି ଗଭୀର ଭାବରେ ବିଚଳିତ କଲା ଯେ ଏହି ପ୍ରଥମ ଥର, ପ୍ରାଣପଣେ ଲଜ୍ଜା ଦୂର କରି, ସେ ତାର ସ୍ତ୍ରୀ ନିକଟରେ ଅଭିଯୋଗ କଲା ।

'ତୁମେ ······ ତୁମେ କି କେବେ କାନ୍ଦ ନାହିଁ !'

ହୁଏତ ସେ ଆହୁରି କିଛି କହି ଥାଆନ୍ତା । କିନ୍ତୁ ଲିନା ତାକୁ ବାଧା ଦେଇ କହିଲା, 'ତା ସାଙ୍ଗରେ ମୋର ତୁଳନା ! ପ୍ରଥମ କଥା, ସେ ଥିଲେ ······' ।

ସ୍ତ୍ରୀର ତୁଣ୍ଡରୁ କଥା କାଢ଼ି ନେଇ ବାର୍ତ୍ତୋଲ୍ମନୋ କହିଲା, 'ସେ ସେତେବେଳେ ବୁଢ଼ା ହୋଇ ନ ଥିଲେ—ଏହା ତ ?'

'ତା ଛଡ଼ା ······ ମୁଁ କି କଣ କାନ୍ଦ ନାହିଁ ? ହଁ, ସତରେ କାନ୍ଦୁଛି, କେତେ କାନ୍ଦୁଛି ······ କିନ୍ତୁ ଶେଷ ପର୍ଯ୍ୟନ୍ତ ନିଜକୁ ମୁଁ ସମ୍ଭାଳି ନେଇଛି । କିନ୍ତୁ ଅର୍କେନସିଦ୍ଧା କଣ କହୁଛି ? କେବଳ

କାନ୍ଦୁଛନ୍ତି, କାନ୍ଦୁଛନ୍ତି, ଆଉ କାନ୍ଦୁଛନ୍ତି — ହେମିତିକା ସେ ଜୀବନ ସାରା ଖାଲି କାନ୍ଦିବ । ଜାଣେ, ଜାଣେ, ସେ ସବୁ ମିଛ ବାହାନା !'

ମିଛ ! ଅସମ୍ଭବ ! କଥା ! ଶୁଣି ବାର୍ତ୍ତୋଲିନୋର ତା ସ୍ତ୍ରୀ ଉପରେ ଯେତେ ରାଗ ନ ହେଲା, ତାହା ଠାରୁ ଅଧିକ ବେଶୀ ରାଗ ହେଲା ତା ସ୍ତ୍ରୀର ସେହି ମୃତ ସ୍ୱାମୀ, ସେହି ସିନୋର ତାଭେଦ୍ଦି ଙ୍କ ଉପରେ । ଲୋକଟି ଏବେ ବି କାନ୍ଥ ଉପରୁ ତା ଆଡ଼କୁ ଅନାଇ ମୁରୁକି ମୁରୁକି ହସି ଟୋପି ଟେକି ରହିଛି । ବର୍ତ୍ତମାନ ତା ସ୍ତ୍ରୀକୁ ନିଜ ଇଚ୍ଛାରେ, ନିଜ ମତ ମତରେ ବଶବର୍ତ୍ତୀ କରି ରଖିଛି !

ସେହି ଛବି ! ସେହି ଚିରନ୍ତନ ହସ ! ଆଉ ସହ୍ୟ କରି ହେଉ ନାହିଁ । ଯେଉଁଠାକୁ ସେ ଯାଉଛି, ଭୂତ ପରି ସେ ତା ପଛେ ପଛେ ଗୋଡ଼ାଉଛି । ଏହି ତ, ତା ଆଖି ଆଗରେ, ହସି ହସି ଟୋପି ଟେକି ସେ ଯେମିତି କହୁଛି : 'ଏଥର ତୁମ ପାଳି — ଗୋଡ଼ ହାତ ଲମ୍ବାଇ ଟିକିଏ ଆରାମ କର । ଏହି କୋଠରିଟି ଦିନେ ମୋର ଅଫିସ ଘର ଥିଲା, ବର୍ତ୍ତମାନ ତୁମର କେମିଷ୍ଟ୍ରି ପାଇଁ ଲ୍ୟାବରେଟେରୀ ହୋଇଛି । ଜୀବିତ ପାଇଁ ଜୀବନ, ଆଉ ମୃତ ପାଇଁ ମୃତ୍ୟୁ । ସୁଖରେ ରୁହ, ଶାନ୍ତିରେ କାମ କର ।'

ହୁଏତ ସେ ଶୋଇବା-ଘରେ ଗୋଡ଼ ଦେଲା । ସେଠାରେ ବି ସିନୋର ତାଭେଦ୍ଦୀର ମୂର୍ତ୍ତି ତା ମୁଖରେ କ୍ରୂର ହସଟି ନେଇ ଉପସ୍ଥିତ !

'ଆସ, ଆସ । ତା ପରେ, ଭଲ ତ ? ମୋର ସ୍ତ୍ରୀ ତୁମକୁ କେମିତି ଲାଗୁଛି ? କୁହ ତ, ମୁଁ ତାକୁ ସୁଶିକ୍ଷା ଦେଇଥିଲି କି ନା ! ଜୀବିତ ପାଇଁ ଜୀବନ, ଆଉ ମୃତ ପାଇଁ ମୃତ୍ୟୁ ।'

ନା, ଆଉ ସହ୍ୟ ହେଉ ନାହିଁ । ଘରର ପ୍ରତି କୋଣରେ ସେ ସେହି ମଣିଷଟାର ସ୍ୱରୂପ ପୂରି ରହିଛି । ବାର୍ତ୍ତୋଲିନୋ, ଯେ ଏମିତି ନିର୍ବିବାଦୀ ମଣିଷ, ସେ ବି ଅସ୍ଥିର ହୋଇ ପଡ଼ିଲା, ଛଟପଟ ହେବାକୁ ଲାଗିଲା । ସ୍ତ୍ରୀ ନିକଟରେ ତା ମନର ଭାବ ଲୁଚାଇବାର ଚେଷ୍ଟା ଆଉ ସଫଳ ହେଲା ନାହିଁ ।

ଶେଷକୁ ମନର ଭାବ ଲୁଚାଇବା ଚେଷ୍ଟା ସେ ଛାଡ଼ି ଦେଲା । ସେ ଚେଷ୍ଟା କଲା ଅଲଗା ହେବାକୁ, ଅନ୍ୟମନସ୍କ ହେବାକୁ, ଯେଉଁଥିରେ ତା ସ୍ତ୍ରୀର ପ୍ରତିଟି ଅଭ୍ୟାସଗୁଡ଼ିକ ଧକ୍କା ଖାଇବ । କିନ୍ତୁ ଏଥିରେ ବି ସେ ସଫଳ ହେଲା ନାହିଁ ।

'ତୁମର ମୁଁଲ୍ ଚଳନ ଠିକ ତାଙ୍କର ପରି ହୋଇ ଯାଉଛି.' ଈଷତ୍ ଶାସନର ସ୍ୱରରେ ଲିନା କହିଲା । 'ସେ ବି ଖୁବ୍ ବେହିସାବୀ ଥିଲେ—ଆହା ଭଲ ମଣିଷଟିଏ ବିଚରା !'

ବାର୍ତ୍ତୋଲିନୋ ଶୀଘ୍ର ବୁଝି ପାରିଲା ଯେ ତାର ଖାପଛଡ଼ା ବ୍ୟବହାର ଲିନା ମନେ ମନେ ଉପଭୋଗ କରୁଛି । ତାର ଏହିସବୁ କାରସାଦ ଲିନାକୁ ଅବିକଳ ସେହି ମଣିଷଟିର କଥା ମନେ ପକାଇ ଦେଉଛି, ଯାହାକୁ ସେ ସ୍ତ୍ରୀର ମନରୁ ପୋଛି ଦେବାକୁ ଚାହେଁ ।

ଅବଶେଷରେ ଗୋଟାଏ ଚମତ୍କାର ଫନ୍ଦ ତା ମନକୁ ଆସିଲା ।

ପ୍ରକୃତରେ କହିବାକୁ, ସ୍ତ୍ରୀ ସହିତ ପ୍ରବଞ୍ଚନା କରିବା ଇଚ୍ଛା ତାର ଆଦୌ ନ ଥିଲା, ଯେତିକି ଥିଲା ପ୍ରତିହିଂସାର ଉତ୍ତେଜନା । ସେହି ମଣିଷଟା ଉପରେହିଁ ତାର ଆକ୍ରୋଶ, ଯେଉଁ ମଣିଷ ତା ଆଗରୁ ତା ସ୍ତ୍ରୀକୁ ଦଖଲ କରିଥିଲା, ଏବଂ ମରିଗଲେ ସୁଦ୍ଧା ଦେହି ଦଖଲ ଛାଡ଼ି ନାହିଁ । ତାର ଅଜ୍ଞାନ ଅନାଦୃଷ୍ଟ ମନରେ ଧାରଣା ହେଲା ଯେ ଏହି ଦୁଷ୍ଟାମୀର ଫନ୍ଦ ଏକବାରେ ତା ନିଜର ସୃଷ୍ଟି । ସେ ଭାବି ପାରିଲା ନାହିଁ ଯେ ଏହି ଦୁର୍ବୁଦ୍ଧି ଅଟେଇନସିଓହିଁ ତାର ଅବଚେତନ ମନରେ ଟିକିଏ ଟିକିଏ କରି ପଶାଇ ଥିଲା । ଯେତେବେଳେ ସେ ସଭ୍ୟ ହୋଇ ନ ଥିଲା, ସେତେବେଳେ ତାକୁ ତା ପଡ଼ାପଡ଼ିରୁ ବିଚ୍ୟୁତ କରିବା ଲାଗି ଅଟେଇନସିଓ ଢେର୍ ଚେଷ୍ଟା କରିଛି, ମାତ୍ର ବ୍ୟର୍ଥ ହୋଇଛି ।

କୁଚକ୍ରୀ ଅଟେଇନସିଓ ଏଥର ଗୁଣ୍ଡିଲ ଉପରେ ଗୁଣ୍ଡିଲ ପକାଇଲା । ବଳେଇ ଚୁଳେଇ ସେ ବାର୍ତ୍ତୋଲିନୋକୁ ବୁଝା କଲା ଯେ

କିନ୍ତା ଉଲ ପ୍ରିୟ ସଖୀ ପଦ୍ମତ ପ୍ରବଞ୍ଚନା କରିବା ଦୁଃଖରେ ତାର ଛାତି ଫାଟି ଯାଉଛି, କିନ୍ତୁ ବାର୍ତୋଲିନୋକୁ ତେର ଆଗରୁ ସେ ଭଲ ପାଇ ଆସିଛି । କିନ୍ତା ସେତେବେଳେ ତାକୁ ଆଖିରେ ବି ଦେଖି ନ ଥିଲା । ସେଥି ଭଲ ପାଇବା ନିୟତି ପର ଅନନ୍ତକମ୍ପ ।

ଏହା ପରେ ଯାହା ଘଟିଲା, ସେଥିରେ ଯେ ନିୟତିର ହାତ କେତେ ଦୂର ଥାଇପାରେ, ବାର୍ତୋଲିନୋ କିନ୍ତୁ ତାହା ଭାବି ପାରିଲା ନାହିଁ । ବିଚରା ଭଲ ମଣିଷ ! ତାର ଗୂଢ଼ ଅଭିସନ୍ଧି ଯେ ଏତେ ସହଜରେ ସମ୍ପନ୍ନ ହେଲା, ସେଥିରେ ସେ ଟିକିଏ ହତାଶ ହୋଇ ପଡ଼ିଲା । ମନେ ହେଲା ସେ ଯେମିତି ଠକି ଯାଇଛି । ତାର ପୁରୁଣା ବନ୍ଧୁ ମୋତ୍ତିଙ୍କ ଶୋଇବା-ଘରେ ସେ ଯେତେବେଳେ ଏକାକୀ ବସିଥିଲା, ଟିକିଏ ପରେ ଅନୁଶୋଚନାରେ ତାର ମନଟା ଭରିଗଲା । ହଠାତ୍ ତାର ଆଖିରେ ପଡ଼ିଲା ଯେ ବିଛଣା କଡ଼ରେ ଭୂଇଁ ଉପରେ ଗୋଟାଏ ଛଣ ଚକଚକିଆ ଜିନିଷ ପଡ଼ିଛି । ଗୋଟାଏ ଛୋଟ ସୁନା ଲକେଟ, ନିଶ୍ଚୟ ଅର୍ତେନସିୟାର ହେବକର । ସେ ତାହା ଉଠାଇ ନେଇ ଅର୍ତେନସିୟାକୁ ଅପେକ୍ଷା କରିବାକୁ ଲାଗିଲା । ଏପାଖ ସେପାଖ କରୁଁ କରୁଁ ତାର ଉତ୍ତେଜିତ ଆଙ୍ଗୁଳି ଚାପରେ ହଠାତ୍ ଲକେଟର ମୁହଁଟା ଖୋଲିଗଲା ।

ନିଜ ଆଖିକୁ ସେ ବିଶ୍ୱାସ କରି ପାରିଲା ନାହିଁ ।

ଲକେଟ ଭିତରେ ଗୋଟିଏ ଛବି ଖୁବ୍ ଛୋଟ ଆକାରରେ ଖୋଳା ଯାଇଛି; ସିନୋର କୋସିମୋ ଭାଦେସ୍ତୀର ସେହି ଛବିଟି, ଯେ ମୃଦୁ ହସି ତା ଆଡ଼କୁ ଅନାଇ ତାର ଟୋପିଟା ଟେକି ଧରିଛି ।

# ମାଛି

ଦୁଇ ଜଣ ଯୁବକ ଗାଁ ତଳେ ଥିବା ଟାଣ ଉଚ୍ଚ ଖଣ୍ଡ-ପଥର ପାହାଡ଼ ଉପରକୁ ଚଢ଼ୁଥିଲେ। ସେମାନେ ଗୋଡ଼ ଓ ହାତ ଉଭୟ ବ୍ୟବହାର କରୁଥିଲେ, କାରଣ ସେମାନଙ୍କର ଲମ୍ବା-ଡଣ୍ଟା-ଲଗା ବୁଟ୍ ଜୋତାଗୁଡ଼ାକ ଖସି ଯାଉଥିଲା। ଖୁବ୍ ଶୀଘ୍ର ଶୀଘ୍ର ଚଢ଼ୁଥିଲେ ବୋଲି ସେମାନଙ୍କର ଦମ୍ ପ୍ରାୟ ବନ୍ଦ ହୋଇ ଆସୁଥିଲା। ତେଣୁ ଥକା ହୋଇଥିବା ସମୟରେ ସେମାନେ ଖସଡ଼ା ରାସ୍ତାଟାକୁ ଗାଳି ନ ଦେଇ ରହି ପାରୁ ନ ଥିଲେ। ଗାଁର ପ୍ରବେଶ-ପଥର ଆଗରେ ଗୋଟିଏ କୂଅ। ତା ଚାରି ପଟେ ଦଳେ ସ୍ତ୍ରୀଲୋକ ଗପ କରୁଥିଲେ। ପାହାଡ଼ ତଳରେ ସେହି ଦୁଇ ଜଣଙ୍କର ଲାଲ୍ ଟକଟକ ଦୁଇଟି ମୁହଁ ଦେଖାଯିବା ମାତ୍ରେ ସ୍ତ୍ରୀଲୋକମାନେ ବୁଲିପଡ଼ି ଅନାଇଲେ। ସେମାନେ ସେହି ଉରଂତାଷରେ ଭାଇ ଦୁହେଁ ନୁହନ୍ତି ତ? ହଁ ତ, ନେଲ୍ ଓ ପାବେଲ ଉରତୋରଣ। ଆହା ବିଚରାମାନେ! କିନ୍ତୁ ଏମିତି ଦୁଃସ୍ଥ ଭାବର କାରଣ ବା କଣ?

ସାନ ଭାଇ ନେଲର ଆଉ ଏକ ପାଦ ଅଗ୍ରସର ହେବାକୁ କ୍ଷମତା ନ ଥିଲା। ଟିକିଏ ଦମ୍ ନେବା ପାଇଁ ଏବଂ ସ୍ତ୍ରୀଲୋକମାନଙ୍କ ପ୍ରଶ୍ନର ଜବାବ ଦେବା ପାଇଁ ସେ ଅଟକି ଗଲା। କିନ୍ତୁ ପାବେଲ୍ ତା ହାତ ଧରି ତାକୁ ଟାଣି ନେଇଗଲା।

ରାସ୍ତାରେ ଯିବା ବେଳେ ନେଲ୍ କହି ପକାଇଲା, 'ଲୁଇସ୍‌-ଲିନ୍‌କୁ ଗାନ୍ଧିର କଥା କହୁଥିଲ—ସେ ଆମର ଭାଇ ସମ୍ପର୍କ ହେବ !' ସେ ତାର ଦୁଇ ହାତ ଉପରକୁ ଟେକିଲା, ଯେମିତିକି ଈଶ୍ୱରଙ୍କୁ ପ୍ରାର୍ଥନା କଲା ।

ଆତଙ୍କ ଓ ଭୟ ମିଶ୍ରିତ ସ୍ୱରରେ ସ୍ତ୍ରୀ ଲୋକମାନେ ଆର୍ତ୍ତନାଦ କରି ଉଠିଲେ । ସେମାନଙ୍କ ଭିତରୁ ଜଣେ ସେଇଠି ଭାଇମାନଙ୍କୁ ଡାକି ପଚାରିଲା : 'କିଏ ଏହା କଲା ?'

'କେହି ନୁହେଁ । ଭଗବାନ !' ଟିକିଏ ଦୂରରୁ ନେଲ୍ ଚିତ୍କାର କଲା ।

ଗାଆଁ ମଝିରେ ଅଞ୍ଚଳର ଡାକ୍ତରଙ୍କ ଘର । ସେମାନେ ବ୍ୟସ୍ତ ଭାବରେ ସେହି ଆଡ଼େ ଦୌଡ଼ିବାକୁ ଲାଗିଲେ ।

ପାଦରେ ଯୋଡ଼ାଏ ପୁରୁଣା ଚଟି, ଏବଂ କାମିଜର ବୋତାମଗୁଡ଼ିକ ଖୋଲା ଓ ହାତ ଉପରକୁ ଗୁଡ଼ା ହୋଇଥିଲା— ଏହି ଅବସ୍ଥାରେ ଡାକ୍ତର ସିଦୋରୋଭ୍ ଲପିଦ୍‌ଖାଲେ ଘର ଭିତରେ ପଦଚାରଣା କରୁଥିଲେ । ନିଦ୍ରା ଅଭାବରୁ ତାଙ୍କର ଚକ୍ଷୁ ଦୁଇଟି ଫୁଲି ଯାଇଛି ଏବଂ ଲାଲ ଭର୍ତ୍ତି ହୋଇଛି । ତାଙ୍କର ମସୃଣ ଗାଲ ଉପରେ ଅନ୍ତତଃ ଦଶ ଦିନ ହେଲା ଦାଢ଼ୀ ବଢ଼ି ଯାଇଛି । ପ୍ରାୟ ନଅ ବର୍ଷର ଗୋଟିଏ ଝିଅକୁ ସେ ଜାକେଇଛନ୍ତି—ତା ଦେହରେ ଖାଲି ଚର୍ମ ଓ ଅସ୍ଥି ଅଛି ଏବଂ ରୋଗରେ ଶଢ଼ି ପଡ଼ି ସେ ହଳଦିଆ ରଙ୍ଗ ପାଲଟି ଗଲାଣି ।

ଗତ ଏଗାର ମାସ ହେଲା ତାଙ୍କ ସ୍ତ୍ରୀ ଶଯ୍ୟାଶାୟିନୀ । ଯେଉଁ ଝିଅଟିକୁ ସେ ଜାକେଇଥିଲେ, ସେ ସବୁ ଠାରୁ ବଡ଼ । ତାକୁ ଛାଡ଼

ତାଙ୍କ ପରିବାରରେ ଅଛନ୍ତି ଛଅଟି ପୁଅ ଝିଅ । ସେମାନେ ଯେମିତି ଦୁଷ୍ଟ, ସେମିତି ଅପରିଚ୍ଛନ୍ନ ମଧ୍ୟ । ଘର ଭିତରେ ବି ଅସମ୍ଭବ ରକମର ବିଶୃଙ୍ଖଳା— ଚଟାଣରେ ଭଙ୍ଗା-ଦଦରା ଆସନ-କୁସନ, ଫଳର ଚୋପା, ଅଣ୍ଡ ଚୋପା ଗଦା ମଇଳା, ଚୌକିଗୁଡ଼ାକ ଭଙ୍ଗା, ଆରାମ ଚୌକିର ବସିବା-ସ୍ଥାନରେ ଗାତ, କିଏ ଜାଣେ କେତେ ଦିନ ହେଲା ବିଛଣା ବି ହୋଇ ନାହିଁ, ଏବେ ବିଛଣା-ଚାଦରଗୁଡ଼ିକ ଚିରି ଟିକି ଟିକି ହୋଇ ଯାଇଛି । କାରଣ ସେହି କ୍ଷୁଦ୍ର ଶୟତାନ ପିଲାଗୁଡ଼ିକ ବିଛଣା ଉପରେ ବସି ତକିଆରେ ଲଢ଼େଇ କରି ମଜା ମାରନ୍ତି ।

ଦିନେ ଯେଉଁଟା ବୈଠକଖାନା ଥିଲା, ତାର କାନ୍ଥ ଉପରେ ଟଙ୍ଗା ହୋଇଥିବା କେବଳ ଖଣ୍ଡିଏ ପ୍ରତିକୃତି ଏବେ ବି ଅକ୍ଷତ ଅଛି । ତରୁଣାବସ୍ଥାରେ ଡାକ୍ତର ପିଡୋବେଗେ ଲପିଟେଙ୍କୋଙ୍କ ତାଙ୍କର ଡିପ୍ଲୋମା ପାଇବାର କିଛି ଦିନ ପରେ ଖଣ୍ଡିଏ ଫଟୋ ଉଠାଇ ଥିଲେ । ଏହି ଛବିଟି ତାହାର ବର୍ଦ୍ଧିତ ଆକାର । ଛବିରେ ତାଙ୍କୁ ଦେଖା ଯାଉଥିଲା ପରିପାଟି, ଏପରିକି ଶୌଖୀନ, ଫୁର୍ତ୍ତିବାଜ ଓ ସହାସ୍ୟ-ବଦନ ।

ତାଙ୍କର ଦାଦରା ଚଟି ଫଟଫଟ କରି, ଛବିଟି ପାଖକୁ ଯାଇ, କାଖେଇ ଥିବା ସୁଗଣା ଝିଅଟିକୁ ତା ଅଣ୍ଟାକୁ ଟେକି ଧରି, ସେ ତାଙ୍କ ଦାନ୍ତ ବାହାର କରି ସେହି ଫଟୋ ଟିକିଏ ଖଚେଇ ହେଲେ ।

‘ତୁମେ ଏଇଟି, ସିସିନେ,’ ସେ କହିଲେ ।

‘ସିସିନେ’ ତାଙ୍କର ଡାକ ନାମ । ଅନେକ ଦିନ ତଳେ ତାଙ୍କ ମାଆ ତାଙ୍କୁ ଚିଡ଼ାଇବାକୁ ଚାହିଁଲେ, ସେହି ନାମରେ ତାଙ୍କୁ ଡାକୁଥିଲେ । ସେ ତାଙ୍କର ଶ୍ରେଣୀରେ ୧ ନଂ ପରିବାରର ଆଶା ଭରସା ଥିଲେ । ତାଙ୍କର ଭବିଷ୍ୟତ ଅତି ଉଜ୍ଜ୍ୱଳ ଥିଲା ।

ବାସ୍ତବିକ, ସିସିନେ !

ରୁଗ୍ଣୀ ଜୁଇ ଜଣଙ୍କୁ ଦେଖି ସେ ପାଗଳା କୁକୁର ଭଳି ତାଙ୍କ ଆଡ଼କୁ ଚଢ଼ିଆସିଲେ ।

'ତୁ ର କଣ ଦରକାର ?'

ହାତରେ ଟୋପି ଧରି ଏବେ ବି ଥରିଁଥରିଁ ଆୱାଜ ହେଉ ସାଙ୍ଗେ ଭଦ୍ରଲୋକଟି ଜବାବ ଦେଲା ।

'ଡାକ୍ତର ବାବୁ……… ଜଣେ ଗରିବ ଲୋକର—ଆମର ଲୋକରେ ଭାଇ—ବର୍ତ୍ତମାନ ମରଣ ଦୁଆରେ ।'

'ତା ହେଲେ ତାର କପାଳ ତ ଖୁବ୍ ଭଲ ! କଫିନର ବ୍ୟବସ୍ଥା କର !' ଡାକ୍ତର ଚିତ୍କାର କଲେ ।

'ନା, ଡାକ୍ତର ବାବୁ……ସେ ମରିବାକୁ ବସିଛି… ହଠାତ୍ ସେ ଅସୁସ୍ଥ ହୋଇ ପଡ଼ିଲା… ସେହି ରୋଗଟା କଣ ଆମେ କିଛି ଜାଣୁ ନାହିଁ । ସେ ମଣ୍ଟେଷ୍ଟେଲ୍ଲାରେ ଗୋଟିଏ ଦୋକାନଶାଳାଟିର ପଡ଼ି ରହିଛି ।'

ଡାକ୍ତର ଏକ ପଦ ପଛେଇ ଯାଇ କ୍ରୋଧାନ୍ୱିତ ସ୍ୱରରେ କହିଲେ: 'ମଣ୍ଟେଷ୍ଟେଲ୍ଲାରେ ! ହାୟ ଭଗବାନ !'

ସେ ଜାଣନ୍ତି, ସେହି ସ୍ଥାନଟି ତାଙ୍କ ଗ୍ରାମ ଠାରୁ ପନ୍ଦ୍ରା ସାତ ମାଇଲ—ଆଉ ସେ ଯେ କି ରାସ୍ତା !

'ହଁ, ଅଜ୍ଞା ! ଯେତେ ଶୀଘ୍ର ପାରନ୍ତି, ଦୟା କରି ଟିକିଏ ଚାଲନ୍ତୁ,' ଭଦ୍ରଲୋକଟି ଅନୁନୟ କରି କହିଲା । 'ଭଲ ଜାତ ତାର ରଙ୍ଗ କ । ପଡ଼ି ଗଲାଣି, ଆଉ ସେ ଏମିତ ଫୁଲି ଗଲାଣି ଯେ ତାକୁ ଦେଖି ଲୋକ ଡର ମାଡୁଛି । ଦୋହାଇ ଆପଣଙ୍କୁ, ଟିକିଏ ଆସନ୍ତୁ ।'

'କଣ ! ପାଦରେ ?' ଡାକ୍ତର ଚିତ୍କାର କଲେ । 'ଚାଲି ଚାଲି ଦଶ ମାଇଲ ଯିବାକୁ ହେବ ! ତୁମେ କଣ ପାଗଳ ହୋଇଛ ? ଗୋଟିଏ ଗା—ଗୋଟାଏ ଗଧ ମୋର ଲୋଡ଼ା, ଶୁଣି ପାରୁଛ ତ ! ତୁମର କଣ ଗଧ ଅଛି ?'

'ମୁଁ ଏକ୍ଷଣି ଦୌଡ଼ି ଯାଇ ଗୋଟାଏ ନେଇ ଆସୁଛି,' ଉରତେ ହିଟ ତୁରନ୍ତ ଜବାବ ଦେଲା । 'କାହାର ଠାରୁ ମୁଁ ଗୋଟାଏ ଗଧ ଧାରରେ ନେଇ ଆସିବି ।'

'ଇତି ମଧ୍ୟରେ ମୁଁ ଯାଉଛି, ଡାକ୍ତୀମା ଘର ହୋଇ ଆସେଁ,' ଯାନ ଭାଇ କେଲି କହିଲା ।

ଡାକ୍ତର ତାହା ଅଢ଼କୁ ଏମିତ ଭାବରେ ଅନାଇଲେ ଯେମିତ କି ସେ ତାକୁ ଗିଳି ଦେବାକୁ ଚାହାନ୍ତି ।

'ଆଜ୍ଞା ରବିବାର, ଡାକ୍ତର ବାବୁ,' କେଲି ତାର ହସେଇ ବାଢ଼ିଲା, ଏବଂ କିଛିଟା ଅକୁଳ-ହାଇ ଟିକିଏ ହସି ଦେଲା । 'ଆଉ, ଡାକ୍ତର ବାବୁ, ଜାଣନ୍ତି ନା, ମୋର ବିଲ୍ଡଘର ବଥାହା ବ ଯାଇ ହୋଇ ଗଲଣି ……।'

'ଓଃ ! ତା ହେଲେ ତୁମର ବିଲ୍ଡଘର ହେଉଛି, ନା ?' ଡାକ୍ତର ରାଗରେ ଅଟ୍ଟହାସ୍ୟ ହୋଇ କହିଲେ । 'ଏଇ, ଧର ତାହେଲେ ଏହୁ ପିଲଟିକୁ ।'

ଏହା କହୁଥାଉ, ସେ ରୋଗଣା ଝିଅଟିକୁ ଯୁବକର ହାତରେ ଗୁଞ୍ଜି ଦେଲେ । ତା ପରେ ଯେଉଁ ଅନ୍ୟ ପିଲାମାନେ ସେଠାରେ ଭିଡ଼ କରି ଠିଆ ହୋଇଥିଲେ, ଜଣ ଜଣ କରି ସେମାନଙ୍କୁ ଧରି ଆଣି, ତାହା ଅଢ଼କୁ ଜୋରରେ ଠେଲି ଦେଇ ଦେଇ, ସେ ଚିତ୍କାର କରିବାକୁ ଲାଗିଲେ, 'ଅଉ ଏଟାକୁ,' 'ଅଉ ଏଟାକୁ,' ଆଉ ଏଟାକୁ ।' …… 'ଗଧ କେଉଁଠିକାର' ! ସେ ଶେଷରେ କହିଲେ, 'ତୁମେ ଗୋଟାଏ ଗଧ ……।'

ଚାଲି ଯିବା ପାଇଁ ସେ ଯେମିତ ବୁଲିପଡ଼ି ଠିଆ ହେଲେ, ଏବ ତା ପରେ ଫେରି ଆସି, ରୋଗଣା ଝିଅଟାକୁ ପୁଣି କୋଳକୁ ନେଇ, ସେ ଦୁଇ ଭାଇଙ୍କୁ କହିଲେ :

'ତୁମ ସାଙ୍ଗରେ ଯିବ ! ତୁମେ ଗୋଟାଏ ପଥ ନେଇ ଆସ । ମୁ ଏଇଠି ଗୁଳିପିଇ !'

ତାର ଭାଇ ପଛେ ପଛେ, ସିଡ଼ୀରେ ତଳକୁ ଓହ୍ଲାଇବା ବେଳେ ଟେନାଲ୍ ଡରଡେଜାବରେ ପୁଣି ହସିବାକୁ ଲାଗିଲା । ତାର ବସ୍ତ୍ର କୋଞ୍ଚଏ ବର୍ଣ୍ଣ, ଆଉ ତାର ବାଗ୍‌ଦଣ୍ଡ, ଅତି ସୁନ୍ଦର ଆଲ୍‌କୋର ଶୋଳ ବର୍ଣ୍ଣ । ସାତୋଟି ସନ୍ତାନ ! ତାହା ଯଥେଷ୍ଟ ନୁହେଁ—ସେ ଗୁଡ଼େ ବାଢ଼େଇଛି ! ଏହା ସତ ଯେ ଈଶ୍ୱର ଦତ୍ତ ଦୁଇଟି ସବଳ ବାହୁ ଛଡ଼ା ତାହାର ଜୀବିକା ଉପାର୍ଜନର ଅନ୍ୟ କୌଣସି ଉପାୟ ନାହିଁ, କିନ୍ତୁ ହସହସ ବଦନରେ ଯେ କୌଣସି କାର୍ଯ୍ୟ କରିବାକୁ ସେ ପ୍ରସ୍ତୁତ । ଦୁଇଟି ଜିନିଷ ତାକୁ ଖୁବ୍ ଭଲ ଲାଗେ—ଦାଆ ଚଳାଇବା ଓ ଗୀତ ବୋଲିବା । ଲୋକେ ତାକୁ 'ଜ ସୁଙ୍ଗ' (କବି) ବୋଲି ଡାକନ୍ତି, କାରଣ ସେ କାମ କରିବା ସମୟରେ ସଙ୍ଗୀତ ରଚନା କରିପାରେ । ପରୋପକାରୀ ଓ ସର୍ବଦା ହସଖୁସି ବୋଲି ସମସ୍ତଙ୍କର ସେ ପ୍ରିୟପାତ୍ର—ଏହା ସେ ଜାଣେ । ସବୁବେଳେ ତାର ହସ ଲାଗିଥାଏ, ଏପରିକି ଆତ୍ମୀୟ ପରିଜନରେ ବି । ସୂର୍ଯ୍ୟ ଏବେ ସୁଦ୍ଧା ତାର ଚମଡ଼ା ପୋଡ଼ି କରି ପାରି ନାହାନ୍ତି କିମ୍ବା ତାର ଉଜ୍ଜ୍ୱଳ ଓ କୁଞ୍ଚୁକୁଞ୍ଚିଆ କେଶ ବିବର୍ଣ୍ଣ କରି ପାରି ନାହାନ୍ତି—ତାର ଏହି ଗାଢ଼ ସୁନା ରଙ୍ଗର କେଶ ଦେଖି ସ୍ତ୍ରୀଲୋକମାନେ ହିଂସା କରନ୍ତି । ସେ ସେମାନଙ୍କ ଆଡ଼କୁ—ତାର ସେହି ଉଜ୍ଜ୍ୱଳ ନୀଳ ଚକ୍ଷୁରେ—ଏକ ବିଶେଷ ଭଙ୍ଗୀରେ—ଚାହିଁଲେ, କେତେ ସ୍ତ୍ରୀଲୋକ ଯେ, ଲଜ୍ଜାରେ ଅବନତ ହୋଇ ନ ଯାଆନ୍ତି !

ତାର ଖୁଡ଼ୁତା-ପୁଅ ଭାଇ ଜାନୁବ ଅସୁସ୍ଥତାରେ ସେ ଖ୍ରାପଣ ସ୍ୱବରେ ହଡ଼ବଡ଼େଇ ଯାଇଛି, ଏବଂ ତାର ଲଜା ଜଣ୍ଟସ୍ ତା ଉପରେ ଖୁବ୍ ରାଗି ଯାଇଥିବ ବୋଲି ସେ ଆହୁରି ବେଶୀ ଦୁର୍ଭାବନାରେ ପଡ଼ି ଯାଇଛି—କାରଣ ଏହି ବିବାହ ପାଇଁ ଲଜା ଛଅ ଦିନ ହେଲା ଗୁଣ୍ଡ୍ରି

କାଟିଥିବ, ଅନ୍ତତଃ କେତୋଟି ଘଣ୍ଟା ତ ସେ ଅଜା ତା ସହିତ ଯାପନ କରି ପାରିଥାନ୍ତା । କିନ୍ତୁ ବିବେକ ବୁଦ୍ଧି କାଉଁଠିରେ, ଏହି କାମରେ କଣ୍ଟି ନ କରି ସେ କିପରି ବା ଚୁପଚାପ ରହି ପାରିବ ? ବିଚରା ଲୁଇଗିଙ୍କୁ ଜାଣୁ ! ତାହାର ମଧ୍ୟ ଖଣ୍ଡିପର ଠିକ୍ ହୋଇ ସାରିଥିଲା—ଆଉ ଏଯାଏ ତା ମଥା ଉପରେ ଏହି ବଜ୍ରଘାତ ପଡ଼ିଲା । ମଣ୍ଟେଲୁସାରେ ଲେପ୍ସର ଜମିରେ ବାଦାମ ଗଛ ପିଟିବା କାର୍ଯ୍ୟରେ ସେ ନିଯୁକ୍ତ ଥିଲା । ତା ଆର ଦିନ ସକାଳେ—ଶନିବାର ଦିନ—ପାଗଟା ବଦଳି ଗଲା ଏବଂ ଆକାଶରେ ସହସା ବୃଷ୍ଟିର କୌଣସି ସୂଚନା ନ ଥିଲେ ସୁଦ୍ଧା, ମେଘ ଘୋଟିଗଲା । ତାହା ହେଉ, ଦି-ପହରେ ଲେପ୍ସ ଆଜ୍ଞା ଦେଲା :

'ପିଲାମାନେ, ଘଣ୍ଟାକ ଭିତରେ ଇନ୍ଦ୍ରଦେବ ତାଙ୍କର ବୃଷ୍ଟି ଆମ ଉପରେ ଅଜାଡ଼ି ଦେବେ । ମୋ ବାଦାମଗୁଡ଼ାକୁ ଓଦା ଭୂମିରେ ପକାଇ ରଖିବା ମୋର ଆଦୌ ଇଚ୍ଛା ନୁହେଁ । ତେଣୁ ତୁମ୍ଭେମାନେ ବାଦାମ ଝାଡ଼ିବା କାମ ବନ୍ଦ କର ।'

ଯେଉଁ ସ୍ତ୍ରୀ ଲୋକମାନେ ଫଳ ଗୋଟାଉ ଥିଲେ, ସେ ସେମାନଙ୍କୁ ତାଙ୍କ ଖାହାଣ୍ଡ ଉପରର ଗୋଦାମ ଘରକୁ ଯାଇ ସେଠାରେ ବାଦାମ ଛୁଟିବାକୁ ଆଦେଶ ଦେଲା । ବାଦାମ ଗଛ ପିଟୁଥିବା ଲୋକମାନଙ୍କ ଆଡ଼କୁ ବୁଲିପଡ଼ି—ସେମାନଙ୍କ ମଧ୍ୟରେ ନେଲି ଓ ସାଙ୍ଗେ ଭରତୋରିଓ ଥିଲେ—ସେ କହିଲା, 'ହଁ, ତୁମେମାନେ—ଇଚ୍ଛା ହେଲେ, ତୁମେ-ମାନେ ମଧ୍ୟ ଯାଇ ପାର—ସ୍ତ୍ରୀଲୋକମାନଙ୍କ ସାଙ୍ଗରେ ଯାଇ, ବାଦାମ ଛୁଟିପାର ।'

ଲୁଇଗିଙ୍କୁ ଜାଣୁ ଜବାବ ଦେଲା: 'ମୁଁ ଏହା କରିବି, କିନ୍ତୁ ମୋର ସେବକତା ମଜୁରି ଏବି ଦିନକୁ ମୋତେ ପଇସା ଅଲଗା ହିସାବରେ ଆପଣଙ୍କୁ ଦେବାକୁ ପଡ଼ିବ ।'

‘ନା, ସେହି ହିସାବରେ ଓକବାଲ-ଅବତାରଙ୍କ ପାଇଁ,’ ସେଫ୍ସ ଜବାବ ଦେଲା । ‘ଆଉ ଅବତାର ପାଇଁ ତୁମେ ପାଇବ ଅଧ-ଲିଗ୍ ହିସାବରେ, ସ୍ତ୍ରୀଲୋକମାନେ ଯେଉଁ ହାରରେ ପାଆନ୍ତି ।’

ଘୋର ଅବିଚାର ! ପୁରୁଷମାନେ ନିଜ କାମ କରି ପୁରା ଦିନର ଯେଉଁ ମଜୁରି ପାଆନ୍ତି, ତାହା ତାଙ୍କୁ ଯେ ସେମାନେ ନ ପାଇବେ ତାର କୌଣସି କାରଣ ନାହିଁ । ବର୍ଷା ହେଲା ନାହିଁ । ବାସ୍ତବରେ, ଦିନ ସାରା କମ୍ପା ଏପରିକି ରାତିରେ ମଧ ଆଦୌ ବୃଷ୍ଟି ହେଲା ନାହିଁ ।

‘ଦିନକୁ ଅଧ-ଲିଗ୍ ହିସାବରେ ଆପଣ ମୋତେ ମଜୁରି ଦେବେ ତ ?’ ଭୁଇର୍ଲାନ୍ଦ୍ କାକୁ ଚିତ୍କାର କଲା । ‘ବେଶ୍, ମୁଁ କାମ କରିବ ନାହିଁ ! ମୁଁ ପାଇଜାମା ପିନ୍ଧନ୍ତି—ଘାଘରା ନୁହେଁ ! ହଁ, ଦିନକୁ ପଚିଶ ସଲ୍ଦି ହିସାବରେ ମୋର ଅଜାବାକର ମଜୁରି ଆପଣ ମୋତେ ଦେଇ ଦିଅନ୍ତୁ, ମୁଁ ଚାଲିଯିବି ।’

ସେ ଅବଶ୍ୟ ଗଲା ନାହିଁ, କିନ୍ତୁ ତାର ଗୁଡ଼ିଚିଆ ପୁଅ ଭାଇମାନଙ୍କ ପାଇଁ ସନ୍ଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କଲା । ଦିନକୁ ଅଧ-ଲିଗ୍ ହିସାବରେ, ସ୍ତ୍ରୀଲୋକମାନଙ୍କ ସହିତ, ବାଦାମ ଗୋଟିବାକୁ ସେମାନେ ରାଜି ହୋଇ-ଥିଲେ । ଠିଆ ହୋଇ ଅନାଇ ଅନାଇ ଏବଂ ଅପେକ୍ଷା କରି କରି, କିନ୍ତୁ ସମସ୍ତ ପରେ ବିରକ୍ତ ହୋଇ, ସେ ନିକଟରେ ଥିବା ଗୋଟିଏ ଘୋଡ଼ାଶାଳକୁ ଯାଇ ଶୋଇ ପଡ଼ିଲା । ଫେରିବା ସମୟରେ ତାକୁ ଡାକିବା ପାଇଁ ସେ ଅନ୍ୟମାନଙ୍କୁ କହିଥିଲା ।

ମାତ୍ର ତେର ଦିନ ସେମାନେ ବାଦାମ ଗଛ ପିଟିଥିବାରୁ, ଅଳ୍ପ ଫଳ ଫଳୁଥିଲେ ଛିଞ୍ଚାଯାଉଥିଲା । ତତକ୍ଷଣ ସ୍ତ୍ରୀଲୋକମାନେ ପ୍ରସ୍ତାବ କଲେ, ସନ୍ଧ୍ୟା ବେଳକୁ ଅଳ୍ପ ବେଶୀ କାମ କରି, ସବୁଠାରୁ ଗୋଟିଏକରି ତାଙ୍କ ସବୁ ଯୋଗାଇବା ହେଲେ, ଏବଂ ସେଇ ଦିନ ରୋଜ ଦେବା ଦୁଇକୁ

ଉଠି ଗ୍ରାମକୁ ଫେରି ଯିବେ । ଏହି ପ୍ରସ୍ତାବରେ ରାଜି ହୋଇ, ଲେପ୍‌ସ୍ ସେମାନଙ୍କ ପାଇଁ ଏକ ପାନ୍ ଶିମ ଓ ଦୁଇ ବୋତଲ୍ ମଦ ବରାଦ କଲା । ମଧ୍ୟ ରାତିରେ, କୁଣ୍ଠା ସରିବା ପରେ, ସେହି ସ୍ତ୍ରୀ ଓ ପୁରୁଷ ସମସ୍ତେ, ଖୋଲା ଖଳା ବାଡ଼ିରେ ଶୋଇ ପଡ଼ିଲେ । ସେଠାରେ କୁଣ୍ଠାଗୁଡ଼ିକ ଝାଙ୍କରରେ ଭର୍ତ୍ତି ଯାଉଥିଲା, ଯେମିତିକି ପ୍ରକୃତରେ ଅସରାଏ ବୃଷ୍ଟି ହୋଇ ଯାଉଛି ।

'ଲମ୍ବୁ, ଆମକୁ ଗୀତ ଶୁଣାଅ,' ସେମାନେ ପାଟିକଲେ ।

ନେଲ୍ ଟଗୋଟାକ ପରେ ଗୋଟାଏ ଗୀତ ଗାଇବାକୁ ଲାଗିଲା । କେତେବେଳେ ଜହ୍ନ ବଉଦ କୋଳରେ ଲୁଚି ଯାଉଥାଏ ତ କେତେବେଳେ ବାହାରି ଆସୁଥାଏ । ମେଘ ଖଣ୍ଡସବୁ କ୍ଷଣକେ ଧଳା ତ କ୍ଷଣକେ କଳା ହୋଇ ଯାଉଥାନ୍ତି । ଜହ୍ନଟା ଯେମିତି ତାର ଲୁଚାର ମୁହଁ ଭଳି ଦିଶୁଥାଏ । ସେମାନଙ୍କ ପ୍ରେମର ଆନନ୍ଦ ଓ ବିଷାଦ ଅନୁସାରେ ସେ ଯେମିତି ତାକୁ ଦେଖି କେବେ ହସି ପକାଉ ଥିଲା ତ କେବେ କଳା କାଠ ପଡ଼ି ଯାଉଥିଲା ।

ଜୁଲ୍‌ଲିନ୍ କାହ୍ନୁ ସେହି ଘୋଡ଼ାଶାଳରେ ପଡ଼ି ରହିଥିଲା । ଭୋର ହେବା ଆଗରୁ, ତାକୁ ଉଠାଇବାକୁ ଯାଇ ସାରେ ଦେଖିଲା ଯେ ସେ ଜ୍ୱରରେ ବେହୋସ ହୋଇ ପଡ଼ି ରହିଛି ଏବଂ ତାର ସର୍ବାଙ୍ଗ ଫୁଲି କଳା କାଠ ପଡ଼ି ଯାଇଛି ।

ଭଣ୍ଡାରୀ ଦୋକାନରେ ବସି ନେଇ ଡରଟୋକରି ସମ୍ପ୍ରଦାୟ ଗପଟି କହିଗଲା । ଗପର ଏକ ଅଂଶରେ, ଭଣ୍ଡାରୀଟି ଏତେ ଉତ୍ତେଜିତ ହୋଇ ପଡ଼ିଲା ଯେ ସେ ତାର ଗାଲ୍ କାଟିଦେଲା । ଅତଃ ଅସମାନ୍ୟ ହୋଇ ଥିବାରୁ ଅବଶ୍ୟ ତାର ମଥା ବୁଲାଇବାକୁ ପଡ଼ିଲା ନାହିଁ, ଏବଂ କେତେ ବେଳେ ଭଣ୍ଡାରୀର ଏହି ତ୍ରୁଟି ଦର୍ଶାଇବାକୁ ଜେଲ୍‌ର ଆଦୌ ସମୟ ନ ଥିଲା, କାରଣ ସେହି ମୁହୂର୍ତ୍ତରେ ଲଜା ଆସି ଜୁଲିଙ୍କ ମୁହଁରେ ରକ୍ତ ଜମାଇ ଗଲା । ତାହା ସାଙ୍ଗରେ ତାର ମାଆ ଓ ଜୁଲିଏନ୍‌ଙ୍କୁ ଜାଣିବା ସମସ୍ତଙ୍କ ବାଦ୍‌ଦକ୍ଷ ମିଛ ଲମ୍ବା ଥିଲେ — ମିଛ ଅଦ୍ଭୁତ ଲୋଭ ବାସୁରେ ।

ତିଅଣି ବର୍ଷ ତାର ପ୍ରେମିକକୁ ଦେଖିବା ପାଇଁ ଉତ୍କଣ୍ଠାରେ ମଣ୍ଟେଲୁସାକୁ ଯିବା ଲାଗି ଜିଗର ଧରିଥିଲା । ନେଲ୍ ବନ୍ଧୁ ଭାବରେ ତାକୁ ସେଥିରୁ ନିବୃତ୍ତ କଲା । ସେ ତାହା ନିକଟରେ ଅଙ୍ଗୀକାର କଲା ଯେ ସେମାନେ ତାକୁ ଏଠାକୁ ଯେଉଁ ଆସିବା କ୍ଷଣି, ସେ ସନ୍ଧ୍ୟା ପୂର୍ବରୁ ତାକୁ ଦେଖି ପାରିବ—ଯେ କୌଣସି ମତେ ସେମାନେ ତାକୁ ଏଠାକୁ ନେଇ ଆସିବା ପାଇଁ ବ୍ୟବସ୍ଥା କରିବେ । ସେହି ମୁହୂର୍ତ୍ତରେ ସାଭେଗ୍ ଅସ୍ଥିର ଭାବରେ ଆସି, ଜଣାଇଲା ଯେ ଡାକ୍ତର ଗଧରେ ଚଢ଼ି ଚାଲି ଗଲେଣି, ଏବଂ ସେ ଆଉ ମୁହୂର୍ତ୍ତେ ମାତ୍ର ସେଠାରେ ରହି ପାରିବ ନାହିଁ । ନେଲ୍ ଲଜ୍ଜାକୁ ଗୋଟାଏ ପାଗକୁ ନେଇ ଯାଇ ତାର ଫେରି ଆସିବା ଯାଏ ଧୈର୍ଯ୍ୟ ଧରି ଅପେକ୍ଷା କରିବା ପାଇଁ ତାକୁ ଅନୁନୟ କଲା; ରାତି ହେବା ଆଗରୁ ସେ ଫେରି ଆସିବ । ତାକୁ ଶୁଣାଇବା ଲାଗି ତାର ନିକଟରେ ରହସ୍ୟମୟ କଥା ଅଛି ......

ପ୍ରକୃତରେ ରାସ୍ତାଟା ବଡ଼ ଜଘନ୍ୟ । କେତୋଟି ଗଭୀର ଖାଲର କଡ଼ ଦେଇ ଯିବା ସମୟରେ ଡାକ୍ତର ଲପିରୋଲ୍ଲୋ ତାଙ୍କ ଜୀବନର ଆଶା ପ୍ରାୟ ଛାଡ଼ି ଦେଇଥିଲେ । ଗଧର ଲଗାମ ଧରି ତାଙ୍କର ଏକ ପାଖରେ ଥିଲା ସାଭେଗ୍ ଓ ଅନ୍ୟ ପାଖରେ ନେଲ୍ । ତଳେ ଶସ୍ୟ-କ୍ଷେତ୍ର ଏବଂ ଅଲିଭ୍ ଓ ବାଦାମ ଗଛରେ ପୂର୍ଣ୍ଣ ଉଦ୍ୟାନ, ବିସ୍ତୃତ ମାଳଭୂମି ଓ ଉପତ୍ୟକା । ଫସଲର ମୂଳଗୁଡ଼ାକ ହଳଦିଆ, ମଝିରେ ମଝିରେ ଜମିର ରଙ୍ଗ କଳା—ସାର ଉର୍ବର ହେବା ପାଇଁ ସେଠାରେ ଆବର୍ଜନା ପୋଡ଼ା ହୋଇଛି । ଅନେକ ଦୂରରେ ସମୁଦ୍ର ଦେଖାଯାଉଛି,

ତାର ରଙ୍ଗ ଗାଢ଼ ନୀଳ । ମଲ୍‌ବେରୀ, ଲୋକଷ୍ଟ, ସାଇପ୍ରେସ ଓ ଅଲିଭ୍ ଗଛସବୁ ନାନା ପ୍ରକାର ଶର-ସବୁଜ ରଙ୍ଗର ଆଭା ଧାରଣ କରିଛନ୍ତି, କିନ୍ତୁ ବାଦାମ ଗଛର ଚୂଳା ସବୁ ଇତି ମଧ୍ୟରେ ପତଳା ହେବାକୁ ଆରମ୍ଭ କଲଣି ।

ସେମାନଙ୍କ ଚତୁର୍ଦ୍ଦିଗରେ, ସୁଦୂର ଚକ୍ରବାଳ ତଳେ, ପବନରେ ଉଡ଼ି ଆସୁଥିବା ମେଘମାଳାର ବିରାଟ ପର୍ବତମାନ ଦେଖା ଯାଉଥିଲା । କିନ୍ତୁ, ପବନ ବହୁଥିବା ସତ୍ତ୍ୱେ, ଅସହ୍ୟ ଗରମ ବୋଧ ହେଉଥିଲା ଏବଂ ପଥରଗୁଡ଼ାକ ଖରାରେ ଫାଟି ଯାଉଥିଲା । ମଝିରେ ମଝିରେ, ଚୂନ୍‌ପୂର୍ଣ୍ଣ ସାତଫେଣିଆ ବୁଦାର ଅନ୍ୟ ପାଖରୁ, ଗୁଡ଼ିକ କିମ୍ବା ନୀଳକଣ୍ଠ ପକ୍ଷୀର ପରିଷ୍କାର ଡାକ ଭାସି ଆସୁଥିଲା । ଶବ୍ଦ ଶୁଣି, ଗଧଟା ଭୟରେ ତାର କାନ ଠିଆ କରିଦେଲା ।

'ଖରାପ ଗଧଟାଏ ! ଖରାପ ଗଧଟାଏ !' ଡାକ୍ତର ହୁଙ୍କାର ଛାଡ଼ିଲେ ।

ସେ ଏକ ଦୃଷ୍ଟିରେ ଗଧର ମଥା ଉପରକୁ ଚାହିଁ ରହିଲେ ଏବଂ ତାଙ୍କର ପୁରୁଣା ସବୁଜ-କନାର ଛତାଟା ତାଙ୍କ କାନ୍ଧ ଉପରୁ କ୍ରମେ କ୍ରମେ ଖସିଗଲା । ତାଙ୍କ ମୁହଁ ଉପରେ ସୂର୍ଯ୍ୟ-କିରଣ ପଡୁଥିଲେ ସୁଦ୍ଧା ସେଥି ପ୍ରତି ତାଙ୍କର ଆଦୌ ଖିଆଲ ନ ଥିଲା ।

'ଆପଣଙ୍କର ଭୟ କରିବାର କୌଣସି କାରଣ ନାହିଁ । ଆମ୍ଭେମାନେ ଆପଣଙ୍କ ପାଖରେ ରହିଛୁ,' ତାଙ୍କୁ ଦମ୍ଭ ଦେବା ପାଇଁ ଚରଟୋବିଚ ଭାଇ ଦୁହେଁ କହିଲେ ।

ନିଜ ପାଇଁ ଡାକ୍ତରଙ୍କର ବାସ୍ତବିକ କୌଣସି ଭୟ ନ ଥିଲା— କିନ୍ତୁ ତାଙ୍କର ସକଳ ଚିନ୍ତା ତାଙ୍କର ସନ୍ତାନମାନଙ୍କ ଉପରେ ନିବଦ୍ଧ ଥିଲା । ସେହି ସାତୋଟି କ୍ଷୁଦ୍ର ଅସହାୟ ଜୀବଙ୍କ ପାଇଁ ତାଙ୍କର ନିରାପଦରେ ରହିବା ଆବଶ୍ୟକ ।

ଧାନ୍ କ୍ଷେତରେ ବଞ୍ଚିବା ପାଇଁ ତରତୋରତ ଚାଷୀମାନେ ଗପ ଆରମ୍ଭ କଲେ । ସେମାନେ ଫସଲ୍ କଥା ପକାଇଲେ : ଗହମ ଓ ଶିମ ଏଥର ଆମର ଖୁବ୍ ଅଳ୍ପ ଫଳିଛି; ବାଦାମ ଗଛ କଥା ତ ସମସ୍ତେ ଜାଣନ୍ତି, ଏଥର ଆଦୌ ଫଳି ନାହିଁ—ବର୍ଷେ ଛଡ଼ା ବର୍ଷେ ତର ଫସଲ୍ ଖୁବ୍ ଭଲ ହୁଏ । ଆଉ ଅଙ୍ଗୁର୍ ! ସେ କଥା ଛାଡ଼—ଏ ବର୍ଷର ଆରମ୍ଭରେ କୁହୁଡ଼ି ଲାଗି ଭଲ ଭାବରେ ବଢ଼ି ପାରିଲା ନାହିଁ । ଚାଷୀମାନେ ଅଙ୍ଗୁର ଅମଦାନିରୁ ଯେ ସେମାନଙ୍କର ଲୋକସାନ ମେଣ୍ଟାଇ ନେବେ ସେ ଆଶା ବି ନାହିଁ, କାରଣ ସେଥିର ଜିଲ୍ଲାର ସବୁ ଅଙ୍ଗୁର-କୁଞ୍ଜରେ ରୋଗ ବ୍ୟାପି ଯାଇଥିଲା ......

'କି ସୁନ୍ଦର ଭବିଷ୍ୟତ !' ମଝିରେ ମଝିରେ ମଥା ହଲାଇ ଜାକ୍ସ ଏହା କହୁ ଥାଆନ୍ତି ।

ଦୁଇ ଘଣ୍ଟା ଚାଲିବା ପରେ, ସେମାନଙ୍କର କଥାବାର୍ତ୍ତାସବୁ ଖତମ ହୋଇଗଲା । ଏଠାରୁ ହେଉର୍ ବାଟ ଯାଏ ରାସ୍ତା ସିଧା ପଡ଼ିଲା ଏବଂ ଧଳା ଧୂଳିର ମୋଟା ପରସ୍ତରେ ତାହା ଆଚ୍ଛାଦିତ ହୋଇ ରହିଥିଲା । ଗଧର ଖୁରାର ଶବ୍ଦ ସହିତ ବୁଢ଼ୀ ଦୁହିଁଙ୍କର ଲମ୍ବା-ନାଲ-ଲଗା ଯୋତାର ଶବ୍ଦ ମିଶି ଯିବାକୁ ଲାଗିଲା । ଲଫ୍ଲୁ ଅଟେପ ଆଟେପ, ନିଜ ମନେ ମନେ ଧୀରେ ଗୀତ ଗାଇବାକୁ ଲାଗିଲା—କିନ୍ତୁ ସେ ହଠାତ୍ ବନ୍ଦ ହୋଇଗଲା । ରାସ୍ତାରେ କୌଣସି ଜନ ମାନବ ଦେଖା ଯାଉ ନ ଥିଲେ । ରବିବାର, ତେଣୁ ସବୁ ଚାଷୀମାନେ ଜପର ଗ୍ରାମରେ ରହିଥିଲେ—କେତେକ ଗୀର୍ଜାକୁ ଯିବେ, ଅନ୍ୟମାନେ ବଜାର କରିବାକୁ କିମ୍ବା ମଉଜ ମଜଲିସ କରିବାକୁ ଯିବେ । ବୋଧହୁଏ ତଳେ, ମଦ୍ୟଶାଳାରେ, ଜୁଇର୍‌ଲାକୁ ଛାତି ଭିତରେ ଦେଖି ନାହାନ୍ତି । ଏବେ ବି ଯଦି ସେ ବଞ୍ଚିଥାଏ, ତା ଦେଖିଲେ ତାକୁ ମାରିବା ପାଇଁ ଏକା ରଖି ଦେଇ ସମସ୍ତେ ପଳାଇଥିବେ ......

ପ୍ରକୃତରେ, ସେମାନେ ଦେଖିଲେ, ସେହି ପୁରୁଣା ଜନ୍ତୁଟା ଘୋଡ଼ାଶାଳର କାନ୍ଥ କଡ଼ରେ ସେ ଏକା ପଡ଼ି ରହିଛି । ସାବେଁ ଓ ନେଲି ତାକୁ ଠିକ୍ ଏହି ଅବସ୍ଥାରେ ଛାଡ଼ି ଦେଇ ଯାଇଥିଲେ । ସେ ଅତଶକ୍ତି ବିବର୍ଣ୍ଣ ହୋଇ ଯାଉଥିଲା, ତେଣୁ ତାର ମୁହଁ ଆଉ ବାହାର ହେଉ ନ ଥିଲା । ସେ ଶବ୍ଦ କରି ଅତି କଷ୍ଟରେ ନିଶ୍ୱାସ ନେଉଥିଲା । କୁଟା-ରଖା ଥାକ ନିକଟ ଝରକା ଭିତର ଦେଇ ସୂର୍ଯ୍ୟ-କିରଣ ଆସି ତା ମୁହଁ ଉପରେ ପଡ଼ୁଥିଲା—ସେ କୌଣସି ମଣିଷ ବୋଲି ଜଣା ଯାଉ ନ ଥିଲା । ଶରୀରଟା ଏତେ ବେଶୀ ଫୁଲି ଯାଇଥିଲା ଯେ ନାକଟା ଏକବାରେ ଲୁଚି ଗଲାଣି; ଓଠ ଗୁଡ଼ାକ କଳା ଓ ଖୁବ୍ ମୋଟା ଦେଖା ଯାଉଛି । ସେହି ଓଠ ଦୁଇଟି ମଧ୍ୟରେ ତାର ନିଶ୍ୱାସ ଅତି କଷ୍ଟରେ ଯାଉଥିଲା, ଏବଂ ସେହି ଶବ୍ଦ ଗୋଟାଏ ରାଗୀ କୁକୁରର ସ୍ୱର ପରି ମନେ ହେଉଥିଲା । ଖଣ୍ଡିଏ କୁଟା ତାର କୁଞ୍ଚିକୁଞ୍ଚିଆ କଳା କେଶ ମଧ୍ୟରେ ଅଟକି ଯାଇ ସୂର୍ଯ୍ୟ-କିରଣରେ ଝଟକୁ ଥିଲା ।

କେତେ ସମୟ ତାହା ଆଡ଼କୁ ଅନାଇ, ସେହି ତିନ ଜଣ ଯାକ ଦୁଆର ମୁହଁରେ ଠିଆ ହୋଇ ରହିଲେ । ଅତଙ୍କରେ ସେମାନଙ୍କୁ ପଛକୁ ହଟିଯିବା ପରି ବୋଧ ହେଲା । ଗଧଟା ନାକରେ ଶବ୍ଦ କଲା ଏବଂ ଘୋଡ଼ାଶାଳର ଚଟାଣ ଉପରେ ଖୁରା ପିଟିଲା । ତା ପରେ ସାବେଁ ତରତରକରି ମୁହୂର୍ତ୍ତେ ଲୋକଟି ପାଖକୁ ଯାଇ, ତାକୁ ସ୍ନେହରେ ଚାହିଁବାକୁ ଲାଗିଲା ।

'ଜୁଇର୍ଲି ! ଜୁଇର୍ଲି ! ଡାକ୍ତର ଆସିଛନ୍ତି ; ଚାହିଁ ଦେଖ !'

କୁଟା-ରଖା ଥାକ ନିକଟରେ ବାନ୍ଧିଦେବା ପାଇଁ ନେଲି ଗଧଟାକୁ ନେଇଗଲା । କାନ୍ଥରେ ଅଉ ଗୋଟାଏ କନ୍ତୁର ଛାୟା ଦେଖାଗଲା—ଯେଉଁ ଗଧଟା ସାଧାରଣତଃ ଏଠାରେ ବନ୍ଧାଯାଏ ତାର ଛବି । ଦିନ ସାରା ସେ କାନ୍ଥର ଧଳା ଚୂନ ଉପରେ ଦେଖି ପଡ଼ୁଥାଏ ।

କୁଇର୍‌ଲାନ୍‌କୁ ଜାନ୍ଧକୁ ପୁଣି ଥରେ ଉଠାଇବା ପାଇଁ ଚେଷ୍ଟା ହେବାରୁ, ସେ ଶ୍ୱାସରୋଧ କରି କୌଣସି ମତେ ତାର ଆଖି ଖୋଲିଲା । ଆଖି ଦୁଇଟା ରକ୍ତ ପରି ଲାଲ, ମୁହଁ ପଟେ କଳା ବୁନ୍ଦୁଗୁଡ଼ାଏ ଏବଂ ଅଶ୍ରୁ-ପରିପୂର୍ଣ୍ଣ । ତାର ବୀଭତ୍ସ ମୁହଁଟା ଖୋଲି ସେ ଗଁ ଗଁ ହେବାକୁ ଲାଗିଲା ! ସେହି ସ୍ୱର ଯେମିତ ତାର ତଣ୍ଟି ପାଖରେ ବାନ୍ଧୁଥିଲା :

'ମୁଁ ...... ମରିଗଲି ...'

'ନା, ନା,' ଅଧୀର ସ୍ୱରରେ, ସାବେଲ୍ ତତ୍‌କ୍ଷଣାତ୍ ଜବାବ ଦେଲା । 'ଏହି ଦେଖ, ଡାକ୍ତର ତୋତେ ଦେଖିବାକୁ ଆସିଛନ୍ତି । ଆମେ ତାଙ୍କୁ ତୋ ପାଖକୁ ନେଇ ଆସିଛୁଁ । ତୁ ତାଙ୍କୁ ଦେଖି ପାରୁଛୁ ତ ?'

'ମୋତେ ନେଇଯାଅ ...... ଗାଆଁକୁ ...,' ମୁମୂର୍ଷୁ ଲୋକଟି କାତର ସ୍ୱରରେ କହିଲା । 'ଓଃ, ମାମା ମିଆ ......' । ବହୁ କଷ୍ଟରେ ଧଇଁସଇଁ ହୋଇ ସେ ଏହି କଥାଗୁଡ଼ିକ କହିଲା, କିନ୍ତୁ ତାର ଓଠ ଦୁଇଟି ମିଶାଇ ପାରିଲା ନାହିଁ ।

'ହଁ, ହଁ, ଆମେ ତୋତେ ନେଇଯିବୁ । ଆମେ ଗୋଟାଏ ଗଧ ଆଣିଛୁ । ଏହି ଦେଖ,' ସାବେଲ୍ ଆଗ୍ରହରେ ଜବାବ ଦେଲା ।

'ଚାଲିକି, ମୁଁ ତୋତେ କାନ୍ଧେଇ କରି ନେଇ ଯିବି, କୁଇର୍‌ଲି,' ତୁରନ୍ତ ତା ପାଖକୁ ଲାଗିଯାଇ ଆଉ ତା ଉପରେ ନଇଁପଡ଼ି, ନେଲି କହିଲା । 'ଏମିତ ଅଧୈର୍ଯ୍ୟ ହୁଅ ନା — ତୁ ନିଶ୍ଚେ ଭଲ ହୋଇଯିବୁ ।'

ନେଲିର ସ୍ୱର ଶୁଣି, କୁଇର୍‌ଲାନ୍ ଜାଣୁ ଧୀରେ ଧୀରେ ମଥା ବୁଲାଇ, ତାର ରକ୍ତାକ୍ତ ଚକ୍ଷୁରେ ତାକୁ ଅନାଇଲା । ମନେ ହେଲା, ସେ ଯେମିତି ତାକୁ ପ୍ରଥମେ ଚିହ୍ନି ପାରିଲା ନାହିଁ । ତା ପରେ ତାର ହାତ ବଢ଼ାଇ ସେ ତା ଭାଇର କାନ୍ଧରେ ବନ୍ଧା ହୋଇଥିବା ଲାଲ ସିଲ୍‌କ ରୁମାଲକୁ ମୁଠାଇ ଧରିଲା ।

'ଆରେ ...... କିଏ, ତୁ ନା ?'

'ହଁ, ମୁଁ । ମୁଁ ନେଲି । ଖୁସି ରହ । ଭାବ ନା, କୁଇର୍ଲି, ଭାବ ନା ...... ମୋର ସେମିତି କିଛି ବେଶୀ ହେଉ ନାହିଁ ।'

ସେ ତାର ହାତ ଓସ୍ୱାଗୀର ସ୍କନ୍ଧ ଉପରେ ରଖିଲା । ତାକୁ ଲୁହ ଝାପସରେ କାନ୍ଦିବାକୁ ଲାଗିଲା, କିନ୍ତୁ ତାର ଗଳାରୁ କୌଣସି ସ୍ୱର ବାହାରିଲା ନାହିଁ । କିଛି କ୍ଷଣ ପରେ, ତାର ଚେଷ୍ଟା ବ୍ୟର୍ଥ ହେବାରୁ, ଜାଲୁ ସ୍ୱଗରେ ମଥା ହଲାଇ ଦେଲା, ଏବଂ ତା ପରେ ଗୋଟିଏ ହାତ ବଢ଼ାଇ, ନେଲିର ବେକକୁ ଧରି ତାକୁ ତା ଆଡ଼କୁ ଟାଣି ନେଲା ।

'ଆମ ଦୁହିଙ୍କର ବିଭା ହେବାର ଥିଲା— ଏକା ସାଙ୍ଗରେ ...' ସେ କହିଲା ।

'ହଁ, ଆମେ ଏକା ସାଙ୍ଗରେ ବିଭା ହେବା— ତୁ ସେଥିପାଇଁ କିଛି ଚିନ୍ତା କର ନା,' ତାର ବେକରୁ ହାତଟା ଛଡ଼ାଇ ନେଇ, ନେଲି ଜବାବ ଦେଲା ।

ଇତି ମଧ୍ୟରେ ଡାକ୍ତର ମୁମୁର୍ଷୁ ଲୋକଟିକୁ ପରୀକ୍ଷା କରୁଥିଲେ । ତାଙ୍କୁ ପରିଷ୍କାର ଜଣାଗଲା— ଏହା ଗ୍ଲାଣ୍ଡର୍ସ (ଅଶ୍ୱଜାତୀୟ ସଂକ୍ରାମକ) ରୋଗ ।

'ଅଚ୍ଛା, କୁହ ତ,' ସେ ପଚାରିଲେ, 'କୌଣସି କୀଟ-ପତଙ୍ଗ ତୁମକୁ କାମୁଡ଼ିଛନ୍ତି ବୋଲି ତୁମର ମନେ ପଡୁଛି କି ?'

ଜୀରୁ ମଥା ହଲାଇଲା

'କୀଟ ?' ସାବେ ପଚାରିଲା ।

ଡାକ୍ତର, ତାଙ୍କର ସାଧ୍ୟ ମତେ, ସେହି ଦୁଇ ଜଣ ଅଙ୍କ ଲୁଣୀଙ୍କୁ ସବୁ କଥା ବୁଝାଇ ଦେଲେ । ସେ କହିଲେ, ନିଶ୍ଚୟ ନିକଟରେ କୌଣସି ଜନ୍ତୁ ଗ୍ଲାଣ୍ଡର୍ସ ରୋଗରେ ମରିଛି, ଏବଂ ମୃତ ଦେହଟା କୋଉଠିଏ ଗୋଟାଏ ଖାଲ ଭିତରେ ପକାଇ ଦିଆ ଯାଇଛି । ଅସଂଖ୍ୟ ମାଛି ଆସି ତା ଉପରେ ବସୁଛନ୍ତି । ତା ପରେ ସେଠାରୁ

ଗୋଟାଏ ମାଛି ଏହି ଘୋଡ଼ାଶାଳକୁ ଉଡ଼ି ଆସି, ଜାନୁର ଦେହରେ ସେହି ରୋଗର ବିଷ ଛାଡ଼ି ଦେଇଛି ।

ଡାକ୍ତର ଏହି ବିଷୟ ବୁଝାଉଥିବା ବେଳେ, ଜାନୁ ଜାନୁ ଆଡ଼କୁ ତା ମୁହଁ ବୁଲାଇ ନେଲା । ସେମାନଙ୍କ ମଧ୍ୟରୁ କେହି ଜାଣି ନ ଥିଲେ ସୁଦ୍ଧା, ମୃତ୍ୟୁର ବାହନଟି ସଦାବେଳେ ସେଠାରେ ଥିଲା— ତଥାପି ସେଠାରେ ଏବଂ ତାହା ଏତେ କ୍ଷୁଦ୍ର ଯେ ଆଖିକୁ ପ୍ରାୟ ଦେଖାଯିବ ନାହିଁ । ତାହା ହେଉଛି ନିକଟବର୍ତ୍ତୀ କାନ୍ଥ ଉପରେ ବସିଥିବା ଗୋଟାଏ ମାଛି । ଏହା ଅତି ନୀରବରେ ବସିଥିଲା, କିନ୍ତୁ ତୀକ୍ଷ୍ଣ ଭାବରେ ନିରୀକ୍ଷଣ କଲେ ଜଣାଯିବ ଯେ ମଝିରେ ମଝିରେ ଏହା ତାର ଛୋଟ ଶୁଣ୍ଢଟା ବାହାର କରି ଚାଟୁଛି, ନ ହେଲେ ତାର ପତଳା ଆଗ-ଗୋଡ଼ ଦୁଇଟି ତୃପ୍ତି ସହକାରେ ଘଷି ଘଷି ଶୀଘ୍ର ଶୀଘ୍ର ପରିଷ୍କାର କରୁଛି ।

ଡାକ୍ତର କଥା କହୁଥିଲେ, ସେତିକିବେଳେ ଜାନୁ ହଠାତ୍ ମାଛିଟାକୁ ଦେଖି ପାରିଲା । ସେ ଏକ ଦୃଷ୍ଟିରେ ତା ଆଡ଼କୁ ଅନାଇ ରହିଲା ।

ଗୋଟାଏ ମାଛି ······ ହୁଏତ ଏଇଟା ସେହି ମାଛି, କିମ୍ବା ଅନ୍ୟ ଗୋଟାଏ ହୋଇଥିବ— କିଏ ତାହା କହି ପାରିବ ? କାରଣ ବର୍ତ୍ତମାନ, ଡାକ୍ତରଙ୍କ କଥା ଶୁଣି, ତାର ମନେ ପଡ଼ିଲା ଯେ କାଲି, ଯେତେବେଳେ ସେ ସେଠାରେ ଶୋଇପଡ଼ି, କ୍ଲେପ୍‌ସର ବାଦାମ ଲୁଟିବା ଶେଷ କରି ତା ଭାଇମାନଙ୍କର ଆଗମନ ପ୍ରତୀକ୍ଷା କରୁଥିଲା, ଗୋଟାଏ ମାଛି ତାକୁ ଭାରି ଜଳେଇଥିଲା ······ ଏଇଟା କଣ କୌଣସି ମତରେ ସେହି ମାଛି ହେବ କି ?

ହଠାତ୍ ସେ ମାଛିଟାକୁ ଉଡ଼ିଯିବାର ଦେଖିଲା । ତାର ଦୃଷ୍ଟି ତାକୁ ଅନୁସରଣ କରିବାକୁ ଲାଗିଲା ।

ଏଁ ! ନେଲ୍‌ର ଗାଲ ଉପରେ ସେଠା ଉଡ଼ୁଥିଲା । ଗାଲରୁ, ଅତି ନୀରବରେ ଦୁଇଟି କ୍ଷିପ୍ର ଲମ୍ଫରେ ସେଠା ଶରୁଙ୍କ ଠାକୁ ଖସି ଆସିଲା ଏବଂ ଭଣ୍ଡାସ୍ୱର ଝୁରରେ କଟି ଯାଇଥିବା ସ୍ଥାନରେ ବସି ଟେପ୍ ପରି ଖାଇବାକୁ ଲାଗିଲା ।

ଜୁଲିଅନ୍ ତାକୁ ଅତି ନିବିଷ୍ଟ ଚିତ୍ତରେ ତାହା ଆଡ଼କୁ ଅନାଇ ରହି, ଚିନ୍ତାରେ ବୁଡ଼ିଗଲା । ତା ପରେ ଅତି କଷ୍ଟରେ ଏହି ଶବ୍ଦଗୁଡ଼ିକ ଉଚ୍ଚାରଣ କରି, ସେ ମୁମୂର୍ଷୁ ସ୍ୱରରେ କହିଲା ।

'ଗୋଟାଏ ମାଛି ? ...... ଗୋଟାଏ ମାଛି କଣ ଏହା କରିପାରେ ......?'

'ହଁ, କାହିଁକି ମାରିପାରିବ ନାହିଁ ?' ଡାକ୍ତର ଜବାବ ଦେଲେ । ଜୁଲିଅନ୍ ତାକୁ ଆଉ କିଛି କହିଲା ନାହିଁ, କିନ୍ତୁ ମାଛିଟାର ଗତି ଲକ୍ଷ୍ୟ କରିବାକୁ ଲାଗିଲା । ଏଣେ ଡାକ୍ତରଙ୍କ କଥାରେ ନେଲ୍ ଏମିତି ତନ୍ମୟ ହୋଇ ଯାଇଥିଲା ଯେ ମାଛିଟାକୁ ଘଉଡ଼ାଇବା ଲାଗି ସେ ଆଦୌ ଚେଷ୍ଟା କଲା ନାହିଁ । ତାକୁ ଆଉ ଶୁଣିଲା ନାହିଁ । ଡାକ୍ତର କ୍ରମାଗତ କଥା କହୁଛନ୍ତି ବୋଲି ସେ ଖୁବ୍ ଖୁସି । କାରଣ ତଦ୍ୱାରା ତାର ଭାଇ ନେଲର ସମ୍ପୂର୍ଣ୍ଣ ଧ୍ୟାନ ଏମିତି ଅନ୍ୟମନସ୍କ ହୋଇ ଯାଇଥିଲା ଯେ ସେ ପଥର ମୂର୍ତ୍ତି ପରି ନିଷ୍ପନ୍ଦ ଭାବରେ ଠିଆ ହୋଇଥିଲା ଏବଂ ତାର ମୁହଁ ଉପରେ ବସିଥିବା ମାଛିଟି ଆଡ଼କୁ ସେ ଆଦୌ ଦୃଷ୍ଟି ଦେଲା ନାହିଁ । ଓ ! ବର୍ତ୍ତମାନ ସେମାନେ ଏକା ସଙ୍ଗରେ ପ୍ରକୃତରେ ଖୁସି ହେବେ ...... ତାର ତରୁଣ ଭାଇର, ଏମିତି ଅଟଳ ସ୍ୱାସ୍ଥ୍ୟ ଓ ଜୀବନର ଉଜ୍ଜ୍ୱଳ ଭବିଷ୍ୟତ ଦେଖି, ତା ମନରେ ଏକ ଗଭୀର ଈର୍ଷା ଓ ନୀରସ ବିଦ୍ୱେଷ ଭରିଗଲା— ତାର ମନେ ହେଉଥିଲା ଏହି ସୁନ୍ଦର ଜୀବନ ଠାରୁ ତାକୁ ହଠାତ୍ ବିଚ୍ଛିନ୍ନ କରି ଯାଉଛି ।

କ୍ଷଣକପରେ ନେଲିର ମନେ ହେଲା ଯେମିତ କିଏ ଗୋଟାଏ ତାକୁ କାମୁଡ଼ୁଛି । ସେ ହାତ ଉଠାଇ ମାଛିଟାକୁ ତଡ଼ି ଦେଲା । ତା ପରେ ତା ଚିବୁକରେ ଯେଉଁ ସ୍ଥାନଟି କାଟି ଯାଇଥିଲା ସେ ତାକୁ ଚିପିବାକୁ ଲାଗିଲା । ଡାକ୍ତର ଆଡ଼କୁ ଫେରି ପଡ଼ି ସେ ଦେଖିଲା ଯେ ସେ ଏକ ଦୃଷ୍ଟିରେ ତା ଆଡ଼କୁ ଅନାଇ ରହିଛନ୍ତି । ବୃଦ୍ଧ ଲୋକଟିର ବିଭତ୍ସ ଓଠରେ ଏକ କଦର୍ଯ୍ୟ ହାସ୍ୟର ରେଖା ଦେଖିପାରି ସେ ଟିକିଏ ଅସ୍ୱସ୍ତି ବୋଧ କଲା । କିଛି କ୍ଷଣ ସେମାନେ ପରସ୍ପରକୁ ଚାହିଁ ରହିଲେ; ତା ପରେ, ପ୍ରାୟ କିଛି ନ ବୁଝି, ଡାକ୍ତର କହିଲେ :

‘ମାଛିଟା ......’

ନେଲି ବୁଝି ପାରିଲା ନାହିଁ ! ସେ ତା ହାତ ଉପରେ ନଇଁ ପଡ଼ିଲା ।

‘କଣ କହୁଛ ?’

‘ମାଛିଟା ......’ ଡାକ୍ତର ପୁଣି ଉଚ୍ଚାରଣ କଲେ !

‘କେଉଁଟା ? କେଉଁଠି ?’ ଡାକ୍ତରଙ୍କ ଆଡ଼କୁ ଅନାଇ, ଭୟରେ, ନେଲି ପଚାରିଲା ।

‘ସେଇଠି ...... ତୁ ଯେଉଁଠି ହାତରେ ଘଷୁଛୁ ......ମୁଁ ନିଶ୍ଚିତ—ମୁଁ ନିଶ୍ଚିତ ଯେ ଏଟା ସେହି ମାଛି,’ ଡାକ୍ତର କହିଲେ, ଏବଂ ବିଭତ୍ସ ଭାବରେ ହସିବାକୁ ଲାଗିଲେ ।

ନେଲି ଡାକ୍ତରଙ୍କୁ ତାର ଚିବୁକର କଟା ସ୍ଥାନଟା ଦେଖାଇଲା ।

‘ଏଠାରେ କଣ ହୋଇଛି ଦେଖନ୍ତୁ ତ ! ଖାଲି ଜଳୁଛି ...’

ଡାକ୍ତର ସ୍ଥାନଟି ପରୀକ୍ଷା କରି ଅତି ଉଦ୍‌ବିଗ୍ନ ଦେଖାଗଲେ । ତା ପରେ, ଯେପରିକି ତାହା ଆଉ ଟିକିଏ ଭଲ ଭାବରେ ପରୀକ୍ଷା କରିବେ, ସେଥିପାଇଁ ସେ ତାକୁ ଘୋଡ଼ାଶାଳର କୋଣକୁ ନେଇ-ଗଲେ । ସାହେବ୍ ବି ତାଙ୍କ ପଛେ ପଛେ ଗଲା ।

ତା ପରେ କଣ ହେଲା ? ସଦର ସେ ଗମ୍ଭୀର ଅନ୍ଧକାରରେ ସ୍ତମ୍ଭିତ ଶରୀରରେ ସୁଦୀର୍ଘ କାଳ ଅପେକ୍ଷା କରି ରହିଲା, କୁଇର୍‌ଲାନ୍ତୁ କାହୁଁ ଅଦୌ କିଛି ଜାଣି ପାରିଲା ନାହିଁ । ଅସ୍ପଷ୍ଟ ଭାବରେ ସେ ବାହାରର ସ୍ୱର ଶୁଣି ପାରିଲା । ହଠାତ୍ ସାହେବ ଅସ୍ଥିର ଭାବରେ ଘୋଡ଼ାଶାଳ ଭିତରକୁ ପଶିଗଲା ଏବଂ, ଏପରିକି ତା ଅଡ଼କୁ ଟିକେ ମାତ୍ର ନ ଅନାଇ, ଗଧଟିକୁ ଫିଟାଇ ପୁଣି ଦ୍ରୁତ ଗତିରେ ବାହାରି ଆସିଲା । ସେତିକିବେଳେ ସେ ଅସ୍ଫୁଟ ଆର୍ତ୍ତ ଧ୍ୱନି କରୁଥିଲା, 'ହାୟ ଭଗବାନ ! ମୋ ନେଲ୍ ...... ମୋର କୁନି ନେଲ୍ ବରଂ ...'

ତା ହେଲେ ଏହା ସତ୍ୟ ! ଅଜ କୁକୁର ପରି ମରିବା ପାଇଁ ସେମାନେ ତାକୁ ସେଠାରେ ଏକା ଛାଡ଼ି ଚାଲିଗଲେ । କୌଣସି ମତେ ତା କହୁଣୀ ଉପରେ ଭର ଦେଇ ଉଠି ପଡ଼ି ସେ ଦୁଇ ଥର ଡାକି ଛାଡ଼ିଲା :

'ସାହେବ ... ସାହେବ ...'

ନୀରବତା । ସେଠାରେ କେହି ନ ଥିଲେ ।

ତା କହୁଣୀ ଉପରେ ଭର ଦେଇ ସେ ନିଜକୁ ଅଧିକ ସମୟ ରଖି ପାରିଲା ନାହିଁ ଏବଂ ଚଟାଣ ଉପରେ ଢଳି ପଡ଼ିଲା । ଗାଆଁର ଏହି ପାଖଟା ଯେ କିପରି ନିସ୍ତବ୍ଧ ହୋଇ ଯାଇଛି ତାହା ଯେମିତି ଲକ୍ଷ୍ୟ କରି ନ ହୁଏ, ସେଥିପାଇଁ ସେ କିଛିକ୍ଷଣ ସେହି କୁଟା-ବିଛଣାରେ ମୁହଁ ଗୁଞ୍ଜି ପଡ଼ି ରହିଲା— ଭୟଙ୍କର ନିସ୍ତବ୍ଧତା । ହଠାତ୍ ତା ମନରେ ଏକ ସନ୍ଦେହ ଜାତ ହେଲା, ସମସ୍ତ ବ୍ୟାପାରଟା ଗୋଟାଏ ଦୁଃସ୍ୱପ୍ନ ହୋଇ ନ ପାରେ ତ— ତାର ଜ୍ୱରର ପରିଣାମ । କିନ୍ତୁ ପୁଣି ତାଙ୍କୁ ଅଡ଼କୁ ବୁଲିଯିବା ମାତ୍ରେ, ସେ ସେହି ସ୍ଥାନରେ, ସେହି ମାଛିଟାକୁ ଦେଖିଲା ।

ସେଇଠି ତ ଏହା ଥିଲା ...... ଠିକ୍ ସେଇଠି ।

ମଝିରେ ମଝିରେ ତାର ଲେଞ୍ଜ ଶୁଣ୍ଢା ବାଙ୍କାର ଭଳି ଟେକି ରଖୁଥିଲା, ଏବ ଅନ୍ୟ ସମୟରେ ତାର ପତଳା ଅଗ-ଗୋଡ଼ ଦୁଇଟି ଦ୍ୱାରା ସହଜଭାବରେ ଏକାଠି ଘଷି ଘଷି ସେ ତାହାକୁ ଦ୍ରୁତ ଗତିରେ ସଫା କରୁଥିଲା ।

# ସେବାର ମହିମା

ଦରଭସ୍ୱାର ମାଆ ଦୁଇ ଥର ଦୁଆର ମୁହଁରେ ଉଙ୍କି ମାରି ତାର ସାନ ଝିଅଟିକୁ କହୁଛନ୍ତି ଯେ ସେ ଏତେ ବେଶୀ କଥା କହିବ ନାହିଁ କିମ୍ବା ଏତେ ଉତ୍ତେଜିତ ହେବ ନାହିଁ, କାରଣ ତାର ଜର ଅଧିକ ବଢ଼ିବ।

'ତୁ ସବୁବେଳେ ବକର୍ ବକର୍ ହେଉଛୁ ...... ତୁ ଖାଲି ସଦାବେଳେ ଖେଳି ବୁଲୁଛୁ ......'।

ଷ୍ଟେଟ ବଚ୍ଛଣାରେ, ଗଦାଏ ତକିଆକୁ ଆଉଜି ଦରଭସ୍ୱା ବସିଥିଲା। ତାର ସୁନ୍ଦର କୁଣ୍ଢେଇଗୁଡ଼ାକ ତା ଗ୍ରୀବ ପଟେ ସଜା ହୋଇଥିଲା। ଖେଳର ଉତ୍ତେଜନାରେ, ତାର ହଳଦିଆ ଚିକଣ ବାଳ ସିଲ୍କର ଟୋପି ତଳୁ ବାହାରି ପଡୁଥିଲା। ଆଖି ଉପରୁ କେଶର ଅଗଗୁଡ଼ାକ ଠେଲି ଦେଇ ସେ ଜବାବ ଦେଲା :

'ନା, ମାଆ, ମୁଁ ଏବେ ଖେଳୁ ନାହିଁ। ନେନା ମଧ୍ୟ ଖେଳୁଛି।'

ନେନା ହେଉଛି ନର୍ସର ସ୍ନେହ ଝିଅଟି।

କିନ୍ତୁ ଯେତେବେଳ ଯାଏ, ସତ କହିବାକୁ ଗଲେ, ନେନା ପଦଏ କଥା ବି କହି ନ ଥିଲା। ଦରଭସ୍ୱାର ମାଆ ଯେତେ ଥର ଦୁଆର ଖୋଲି ଘର ଭିତରକୁ ଉଙ୍କି ମାରିଛନ୍ତି, ସେତେ ଥର, ପ୍ରାୟ ଭୟଭରେ ସେ ତାଙ୍କ ଆଡ଼କୁ ଏକ ଦୃଷ୍ଟିରେ ଅନାଇଛି। ଦରଭସ୍ୱାର ଘରକୁ ଯେତେବେଳେ ସେ ଆସିଛି, ତା ପରେ ଦୁଇ ଘଣ୍ଟା ଯାଏ

ଜେନା ଯେମିତ ସ୍ୱପ୍ନଲୋକରେ ବିଚରଣ କରୁଛି । ପ୍ରତି ଥର ହ୍ୟାଣ୍ଡେଲର ଶବ୍ଦ, ଦୁଆର-ଖୋଲିବା ଅବାଜ, ଦରଜିଆଁର ମାଆ ଓ ତାର କଣ୍ଠସ୍ୱର ତାକୁ ସେହି ସ୍ୱପ୍ନଲୋକରୁ ଖସାଇ ପକାଉଛି । ସେ ଯେମିତ ଏତେ ସମୟ ପରୀ-ରାଜ୍ୟରେ ଥିଲା । ତା ମନରେ କେବଳ ଏତିମାତ୍ର ଭୟ ଜାତ ହୋଇଛି—ହୁଏ ତ ଯାହା ସେ ଦେଖୁଛି, ଯାହା କିଛି ସେ ସ୍ପର୍ଶ କରି ପାରୁଛି—ଏ ସବୁ ଆଦୌ ସତ ନୁହେଁ ।

ହିଁ ଅଟି ଖଣ୍ଡିଏ ପୁରୁଣା ସବୁଜ ରଙ୍ଗର ଫ୍ରକ ପିନ୍ଧିଥିଲା । ଗତ ଦୁଇ ବର୍ଷ ହେଲା ସେ ଏହା ପିନ୍ଧୁଛି ଏବଂ ତାହା ଏତେ ସାନ ହୋଇ ଗଲାଣି ଯେ ବେକ ପାଖରେ, ହାତ ତଳ ଓ ତାଳ ଉପରେ ତାହା ବର୍ତ୍ତମାନ ଅତି ଟାଣ ହେଉଛି । ମଥାରେ ଖଣ୍ଡିଏ ରଙ୍ଗ-ଛାଡ଼-ଯା ଥିବା ପାତଳ ସିଲକ ରିବନ ବନ୍ଧା ଯାଇଛି । ଗୋଛାଏ ଘନ କଳା କେଶର ଚାପରେ କ୍ରମଶଃ ତାହା ଖୋଲି ଯାଉଛି । କେଶଗୁଡ଼ିକ ଏବେ ବି ଓଦା ଅଛି, କାରଣ ସେହି ଦିନ ସେ ମୁଣ୍ଡରୁ ଗୋଡ଼ ଯାଏ ଖୁବ୍ ଭଲ ଭାବରେ ଗାଧୋଇଛି । ପ୍ରଥମେ ନାର୍ସାରୀରେ ପ୍ରବେଶ କରି, ଗଦି-ଦିଆ ଚାକି, ନୀଳ ସିଲକ ପରଦା ଓ ଅନ୍ୟାନ୍ୟ ମୂଲ୍ୟବାନ ଜିନିଷ ଦେଖି, ଜେନା ଏତେ ଅବାକ ହୋଇ ଯାଇଥିଲା ଯେ ପ୍ରଥମେ ସେ କିଛି ଦେଖି କିମ୍ବା ଶୁଣି ପାରିଲା ନାହିଁ । ଧୀରେ, ସେ କଣ କରୁଛି ତାହା ଜାଣି ନ ପାରି, ମାଂସ ସହିତ ଚମଡ଼ା ଘରି ଟାଣ ହୋଇଥିବା ଜାମାଟା ଯୋଗୁଁ ଫୁଲିଥିବା ଅବହା ଖାବଡ଼ା ହାତଟା ଜେନା ଦରଜିଆଁ ଆଡ଼କୁ ବଢ଼ାଇ ଦେଲା । ତା ପରେ ବିଛଣାରେ ବସି ନରମ ଗ୍ଦଦଟା ଉପରେ ଅଙ୍ଗୁଳି ବୁଲାଉଥିଲା, ଏବଂ ଆଁ କରି ଆଖି-ଖୋଲି ରଙ୍ଗିଲୁଜ ମାଲିକାଣୀଙ୍କ ଠାରୁ ଅନର୍ଗଳ ନିରର୍ଥକ କଥାଗୁଡ଼ାକ ଶୁଣୁଥିଲା ।

ଦରଭସ୍ମା ଗଇସ୍ଥାଁର ଦେଖିଲା ଯେ ଏତେ ବେଳ ଯାଏ ଯଦିଏ ଚେଲେ କଥା କହୁ ନ ଥିଲେ ସୁଦ୍ଧା ପ୍ରକୃତରେ କେହିହେଁ କୁଣ୍ଢେଇ ଖେଳୁଥିଲେ । କେବଳ ଦୁଇ ହୋଇ ଟେବୁଲ ବାରରେ ସଜ୍ଜିତ ଯୋଡ଼ାଟି କୁଣ୍ଢେଇ ଅଡ଼କୁ ଉତ୍ସୁକ ଭାବରେ ଚାହିଁ ରହିଥିଲେ— ତାର ଏହି ଏକାଗ୍ରତାରୁ ମନେ ହେଉଥିଲା ଯେମିତି କୁଣ୍ଢେଇଗୁଡ଼ାକ କେତେ ଜଣ ଭଦ୍ର ମହିଳାଙ୍କ ପରି ଚୁଲିକାରରେ ବସି ସୁରା ପାନ କରୁଛନ୍ତି । କେନେରର ଏହି ଅବସ୍ଥା ଦେଖି କୁଣ୍ଢେଇଗୁଡ଼ାକୁ ହସାଇ ଓ କଥା କୁହାଇ ଦରଭସ୍ମା ଆଉ ଥରେ ଆନନ୍ଦ ଲଭ କଲା । ଏବେ ଦିନ ହେଲା ଦରଭସ୍ମାର ମନେ ହେଉଥିଲା ଯେ ତାର ଏହି ସ୍ୱାତନ୍ତ୍ରି କୁଣ୍ଢେଇର ପ୍ରକୃତରେ ଅଦୌ ପ୍ରାଣ ନାହିଁ— କେବଳ କେତେ ଖଣ୍ଡ କାଠ, ମହମ ରମ୍ପା ସୁଇନାର ମଥା, କାଚର ଆଖି, ଓ ଘୋଡ଼ାର ବାଳ । କିନ୍ତୁ ଆଜି ମନେ ହେଉଛି, ସେମାନଙ୍କର ପ୍ରାଣ ଅଛି, ସେମାନେ ଏପରି ଭାବରେ ଜୀବନ ଲାଭ କରିଛନ୍ତି ଯେ ଦରଭସ୍ମା ତାହା କେବେ ସ୍ୱପ୍ନରେ ସମ୍ଭବପର ବୋଲି ଭାବି ପାରି ନ ଥିଲା । କେବଳ ଜଣେ ଦାସୀର ଶ୍ରେଷ୍ଠ କୃତିତ୍ୱର ପ୍ରଶଂସା, ଓ କେନେରର ସାହାଯ୍ୟ ହେତୁ, କୁଣ୍ଢେଇଗୁଡ଼ାକ ଯେ ଏପରି ପ୍ରକୃତ ମଣିଷ ହୋଇ ଯାଇ ପାରନ୍ତି, ଏହା ଦେଖି ସେ ସମ୍ପୂର୍ଣ୍ଣ ଅବାକ୍ ହୋଇଗଲା । ତାର ଖୋଡ଼ାଟିକୁ ମୁଗ୍ଧ କରିବା ପାଇଁ, ସେ କୁଣ୍ଢେଇଗୁଡ଼ାକୁ ବଡ଼ ବଡ଼ ଭଦ୍ର ମହିଳାଙ୍କ ପରି କଥା କୁହାଉ ଥିଲା— ତା ମାଆର ଖାସ ଖିଆଲ୍ ଓ ସ୍ନେହପ୍ରବଣା ବନ୍ଧୁମାନେ ଠିକ୍ ଯେମିତି ଭାବରେ କଥାବାର୍ତ୍ତା କରନ୍ତି ।

'ସେହି କୁଣ୍ଢେଇଟା ଦେଖୁଛ ? ତାର ନାମ ଜାଉଣ୍ଟେସ ଲିଲ୍ । ସେ ନିଜେ ତା ମଠର ଚଳାଏ, ସୁନା ଜରି-ଦିଆ ସିଗାରେଟ୍ ଟାଣେ, ଏବଂ ଏହିପରି ଭାବରେ, ସବୁବେଳେ ତା ଅଙ୍ଗୁଳି ଉଠାଇ, କହେ:

"ମରର୍ଜି, ମରର୍ଜି, ତୁମେ ଦୌଡ଼ି ପଳାଇଲେ, ମୁଁ ବି ଦୌଡ଼ିଯାଇ ତୁମ ସାଙ୍ଗରେ ମିଶିଯିବି !" '

ମରର୍ଜି କିଏ ? ନେଲି ଜାଣି ପାରିବ ନାହିଁ । ବୋଧହୁଏ ଜଣେ ଯାଦୁକର— କିମ୍ବା ବୋଧହୁଏ ଦରଜାମ୍ମାର ମାଆର କୌଣସି ବନ୍ଧୁ, ବା ତା ଦଳର ମହିଳା-ବନ୍ଧୁମାନଙ୍କ ଭିତରୁ ଜଣେ ହୋଇଥିବ । କିନ୍ତୁ ଯେତେ ଥର ନେଲି ଡାଉନ୍ସେସ ଲିଲିର କଥା ଶୁଣେ, ସେ ମରର୍ଜିକୁ କୌଣସି ଜଣେ ଯାଦୁକର ବୋଲି ଧରିନିଏ, କାରଣ ଦରଜାମ୍ମା ତାକୁ କହିଛନ୍ତି ଯେ ମରର୍ଜିର ମିଷ୍ଟ୍ରେସ ଏକଟି ନାମ୍ଫୁଲ କ୍ଲୁଣ୍ଣେଇ ସହିତ ଖୁବ୍ ଭାବ ଅଛି ।

"ଅଚ୍ଛା, ଧନ୍ୟବାଦ !"

'ନା, ନା, ନେଲି, ତୁ ଯେମିତି ହସିବୁ ନାହିଁ। ମିଷ୍ଟ୍ରେସ ଫେର୍ଟି ସବୁବେଳେ ଇଂରାଜୀରେ କଥା କହେ— ମୋ ମାଆକୁ ଓ ସମସ୍ତଙ୍କୁ । ସେ ସବୁବେଳେ ଘୋଡ଼ାରେ ଚଢ଼ି ବୁଲେ— ଗଟ୍ ! ଗଟ୍ ! ଗଟ୍ !— କିନ୍ତୁ ସେ କଦର୍ଯ୍ୟ ଭାବରେ ଘୋଡ଼ା ଉପରେ ବସିଥାଏ, ପୁରୁଷଙ୍କ ପରି ······ତାର ଗୋଡ଼ ମେଲା କରି ······ ମହିଳାମାନଙ୍କ ପକ୍ଷରେ ଏପରି ଭାବରେ ଘୋଡ଼ାରେ ଚଢ଼ିବା ଅତି କଦର୍ଯ୍ୟ । ସେ ବାରମ୍ବାର ଘୋଡ଼ାରୁ ପଡ଼ିଯାଏ ଏବଂ ଥରେ, ଗୁଡ଼ାଏ ଗଧିଆଙ୍କୁ ତଡ଼ି ନେଉଥିବା ସମୟରେ, ତା ଗାଲରେ ଆଘାତ ଲାଗିଥିଲା । ଦେଖ, ଏଇଟି ଦାଗ ! ଜାଗାଟା ଦେଖି ପାରୁଛୁ ତ ? ସେ ମଧ ଠିକ୍ ଫଳ ପାଇଛି— ଉଦ୍ଦ୍ୟାନିକ ଅମେରିକାନ ସ୍ତ୍ରୀଲୋକ ନା ! ପଡ଼ି ଯାଇଥିବା ହେତୁ ତା ଛାତି, ପିଠି ଓ ଏପରିକି ଗୋଡରେ ଯେଉଁ ଦାଗସବୁ ହୋଇଛି— ତାହା ସେ ସମସ୍ତଙ୍କୁ ଦେଖାଏ— ଆଉ ସେ ତୁମ ସହିତ କରମର୍ଦ୍ଦନ କରିବା ସମୟରେ ତୁମକୁ ଆଘାତ କରେ ।

' "ଅଚ୍ଛା, ଧନ୍ୟବାଦ !"

'ଅଉ ସେଠାରେ ସେହି ଅନ୍ୟ କୁଣ୍ଢେଇଟା ? ଓ, ସେ ଭାରି ମଜାର ଲୋକ— ହସାଇ ହସାଇ ଏକବାରେ ମାରି ପକାଇବ । ସେ ହେଉଛନ୍ତି ହନା ମାରିୟୁ । ତାର କଥା କହିବାର ଢଙ୍ଗ ତୋର ଶୁଣିବା ଉଚିତ । "ଓଃ, ବାପ୍‌ରେ ବାପ୍ ! ··· ମଥାଟା ମୋର ଗଲା ! ମନେ ରଖ, ମୋର ହୃଦୟ ଦୁର୍ବଳ । ମହଦି, ଟିକିଏ ଗମ୍ଭୀର ହୁଅ । ମହସିଂ, ତୁମେ ମୋତେ ବ୍ୟତିବ୍ୟସ୍ତ କରି ପକାଉଛ । ··· ମୁଁ ଆଉ ହସି ପାରିବି ନାହିଁ । ମୋ ମଥାଟା ଗଲା । ମନେ ରଖ, ମୋର ହୃଦୟ ଦୁର୍ବଳ । ଆଉ ସେ ଭାରି ମଜାରେ କଥା କହେ, ସେ ଶବ୍ଦଗୁଡ଼ିକ ଅଦ୍ଭୁତ ଭାବରେ ଉଚ୍ଚାରଣ କରେ । ମହସିଂ ଯେମିତି ଭାବରେ କଥା କହେ ସେ ବି ସେମିତି କହିବା ପାଇଁ ଚେଷ୍ଟା କରେ । ଓଃ, ସେ ଭାରି ମଜାର ଲୋକ !'

ନେନା ଅସମ୍ଭବ ପ୍ରକାରେ ହଡ଼ବଡ଼େଇ ଗଲା ।

ସେ ଅବାକ ହୋଇ ଭାବିଲା, ପ୍ରକୃତରେ ଏ କଥା କଣ ସତ ଯେ ଗୋଟାଏ କୁଣ୍ଢେଇ ସିଗାରେଟ ଟାଣେ ଏବଂ ଆଉ ଗୋଟାଏ ଘୋଡ଼ାରେ ଚଢ଼ି ବୁଲେ— ସେହି କୁଣ୍ଢେଇଟାର ଗାଲରେ ସେହି ଦାଗଟା ବି ଠିକ୍ ଅଛି ··· କାରଣ, କୁଣ୍ଢେଇଗୁଡ଼ାକ ଯଦି ଲେସ୍-ଝାଲ-ଦିଆଯାଇଥିବା ଜାମା ପିନ୍ଧି ପାରନ୍ତି, ମଥାରେ ସ୍ଲେଟ ଧନୁ-ଆକାରରେ ରିବନ ବାନ୍ଧି ପାରନ୍ତି, ଅଉ ସିଲ୍‌କ୍ ମୋଜା, ମଖମଲି ଗାର୍ଟର ଓ ସୁନା ବକ୍‌ଲେସ୍-ଦିଆ ପେଟେଣ୍ଟ ଚମଡ଼ା ଜୋତା ପିନ୍ଧି ପାରନ୍ତି, ତା ହେଲେ ଏହା ବି ଏତ ସତ ହୋଇପାରେ ଯେ ସେମାନେ ଘୋଡ଼ାରେ ଚଢ଼ନ୍ତି, ସିଗାରେଟ ଟାଣନ୍ତି ଏବଂ ସେହି ଭାଷାରେ କଥାବାର୍ତ୍ତା ହୁଅନ୍ତି— ତାର ଗୋଟାଏ ହେଲେ ଶବ୍ଦ ସେ ବୁଝି ପାରେ ନାହିଁ । ସେହି ଘରେ ଯେ କୌଣସି କୌତୂହଳପ୍ରଦ ଘଟଣା ସମ୍ଭବ ହୋଇପାରେ— ସେ ପ୍ରାୟ ଆଶା କରୁଛି ଯେ କୌଣସି

ମୁହଁ ଭିତରେ, ଘୋଡ଼ାଗୁଡ଼ାକ — ସେହି ଛୋଟ ଛୋଟ କାଠିଆ ଘୋଡ଼ା-ଗୁଡ଼ାକ — ହଠାତ୍ ବାହାରି ପଡ଼ି ମଖମଲ କାର୍ପେଟର ସୁବିସ୍ତୀର୍ଣ୍ଣ ପ୍ରାନ୍ତରରେ ଦୌଡ଼ିବା ଆରମ୍ଭ କରି ଦେଇ ପାରନ୍ତି । କଣ୍ଢେଇଗୁଡ଼ାକ ତାଙ୍କ ପିଠି ଉପରେ ବସିଥିବେ ଏବଂ ସେମାନଙ୍କର ସୁନ୍ଦର ପତଳା ଓଢ଼ଣାସବୁ ପବନରେ ଫରଫର ହୋଇ ଉଡୁଥିବ ।

ନିଜ ସ୍ୱପ୍ନରେ ନେଲି ଏତେ ବିଭୋର ହୋଇ ପଡ଼ିଥିଲା ଯେ ଦରଜିଆର କଥାଗୁଡ଼ାକ ତା କାନରେ ପଶୁ ନ ଥିଲା, କିମ୍ବା ପଶିଲେ ବି କୌଣସି ମତେ ତାର ଅର୍ଥ କରି ପାରୁ ନ ଥିଲା । କାରଣ ସେହି ତରୁଣୀ ମହିଳାଟି, ଖେଳି ଖେଳି ଶେଷରେ କ୍ଳାନ୍ତ ହୋଇ ପଡ଼ି, ସ୍ଥିର କରିଛି ତାକୁ ଗୋଟାଏ କଣ୍ଢେଇ ଉପହାର ଦେବ, କିନ୍ତୁ ଏବେ ସୁଦ୍ଧା ସ୍ଥିର କରି ନାହିଁ କେଉଁଟା ତାକୁ ଦେବ ।

'ନା, ସେଇଟା ନୁହେଁ,' ଦରଜିଆ କହିଲା । 'ତାର ଗୋଟାଏ ହାତ ଖରାପ ହୋଇ ଯାଇଛି ଏବଂ ତାର ଓମା ସହିତ ବିଛଣାରେ ଶୋଇ ରହିବା ଉଚିତ । ଦେଖ, ମୁଁ ତୋତେ ଦେବି ··· ମୁଁ ତୋତେ ମିସ୍ଟ୍ରେସ ବେଟିକୁ ଦେଇ ଦେବି । ······ ନା, ନା, ମୁଁ ତାକୁ ବି ଦେଇ ପାରିବି ନାହିଁ । ସେ ତୋ ପାଖରୁ ଖସି ପଳାଇବ । ···ସେ ଏମିତି ଦୁଷ୍ଟ କଣ୍ଢେଇ — ମିସ୍ଟ୍ରେସ ବେଟି — ଓଃ, ଏତେ ଦୁଷ୍ଟ । ଆଉ ତା ପରେ, ତୁ ଦେଖ, ସେ ସବୁବେଳେ ଇଂରେଜୀରେ କଥା କୁହେ, ଏବଂ ତୁ ତା କଥା ଆଦୌ ବୁଝି ପାରିବୁ ନାହିଁ । ତେଣୁ ମୁଁ ତୋତେ ଏହି ଅନ୍ୟ କଣ୍ଢେଇଟି ଦେବି । ତାର ନାମ ମିମି, କିନ୍ତୁ ତୁ ତାକୁ ନିଶ୍ଚୟ "ମି ଲେଡି" ବୋଲି ଡାକିବୁ, କାରଣ ସେ ଜଣେ ମାର୍ଶନେସ । ତୁ ତ ଜାଣୁ ତାହା କଣ, ଜାଣୁ ନାହିଁ ନା ? ଅଚ୍ଛା, ସେ ହେଉଛି ମାର୍ଶନେସ ମିମି, ଏବଂ ସେ ଅତି ଅସାଧାରଣ ······ ଓଃ, ବାସ୍ତବିକ ଅତି ଅସାଧାରଣ । କାଲି ସକାଳେ ଠିକ୍ ସମୟରେ ତାର ସ୍ନାନର

ବ୍ୟବସ୍ଥା ହେବା ଦରକାର, ଆଉ ପ୍ରାତଃ-ଭୋଜନରେ ସେ ଚକୋଲେଟ୍ ଓ କିସ୍‌ମିସ୍ ଭୁଞ୍ଜିବ ଏବ...... ଏବଂ ତା ପରେ, ତୁ ଜାଣୁ......ସେ ବେଶି କିଛି ଖାଇପାରେ ନାହିଁ ଏବ ଲୁଚେଇଲି ତାଙ୍କ ସ୍ପୃହା ରଖାଇଥିବା ସେହି ଚକୋଲେଟ ମିଠେଇ ଛଡ଼ା ସେ ଅନ୍ୟ କିଛି ଖାଏ ନାହିଁ—ସେହି ରକମ ମିଠେ ମାଆ ବେକାର୍ସରୁ କିଣି ଆଣେ—ତୁ ତ ଜାଣୁ, ଗ୍ରାଣ୍ଡ ହୋଟେଲ ଆଗରେ ସେହି ରସାୟନ-ଦୋକାନଟା । ହଁ, ମୁଁ ତୋତେ ସିମିଲୁ ଦେବି । ଏହି ନେ— ତାକୁ ଧର । ତାକୁ ରଖିବା ପାଇଁ ମୁଁ ପ୍ରକୃତରେ ତାକୁ ତୋତେ ଦେଉଛି— ତୁ ବୁଝି ପାରୁଛୁ ତ ? ମୁଁ ତୋତେ କହୁଛି, ତୁ ତାକୁ ନେଇପାରୁ ... ଟିକିଏ ରହ, ମୁଁ ତାକୁ ଗୋଟାଏ ଚୁମ୍ବନ ଦେଇ ଦିଏଁ । ସେ ସେଠାରେ ଅଛି । ବର୍ତ୍ତମାନ ତୁ ତାକୁ ତୋ ସାଙ୍ଗରେ ନେଇ ଯାଇ ପାରୁ ।'

ନେନା କଣ କରିବ ଭାବି ପାରିଲା ନାହିଁ । ସେ ଏମିତ ଅବାକ ହୋଇ ଯାଇଥିଲା ଯେ ଦୁଃଖ ଛଡ଼ା ଆନନ୍ଦ ଉପଭୋଗ କରି ପାରିଲା ନାହିଁ । ଦରଡସ୍ୱା ଉପହାରଟି ତା ହାତରେ ଗୁଞ୍ଜି ଦେବା ବେଳେ ସେ ହଠି ଠିଆ ହୋଇ ପଡ଼ିଲା, କିନ୍ତୁ ସେ ସ୍ଥିର ଭାବରେ ଠିଆ ହୋଇ ରହିଲା, କୁଣ୍ଡେଇଟି ନେବା ପାଇଁ ତା ହାତ ବଢ଼ାଇ ପାରିଲା ନାହିଁ, ଆଉ ତା ଆଖି ଲୋତକରେ ଛଳଛଳ ହୋଇଗଲା ।

ସେହି ସମୟରେ ଦରଡସ୍ୟାର ମାଆ ଘରେ ପ୍ରବେଶ କଲା, ତା ପଛରେ ନର୍ସ— ନେନାର ମାଆ । ଦରଡସ୍ୟାକୁ ଦୁଧ ଦେବା ପାଇଁ ତାକୁ ପ୍ରଥମେ ଏହି ପରିବାରରେ ଚାକରି ଦିଆ ଯାଇଥିଲା ଏବ ଶିଶୁଟି ବଡ଼ ହୋଇ ଯାଇଥିଲେ ମଧ୍ୟ ତାକୁ ଚାକରିରେ ରଖା ଯାଇଛି । ନେନା ତା ମାଆ ପାଖକୁ ଅନାଇ ଦେଖିଲା, ସେ ଦରଡସ୍ୟାର ମାଆ ପାଖରେ ଠିଆ ହୋଇଛି । ମଥାରେ ନର୍ସର ଟୋପି ଓ ଏପ୍ରନ୍‌ରେ ପଟା ଏମ୍ବ୍ରଏଡରି-କରା ଏପ୍ରନ ପିନ୍ଧି ତା ମାଆ ଏମିତ ସୁନ୍ଦର

ଉଦଗା ଯାଉଥିଲା ସେ, ତା ହିପଟିର ମନେ ହେଲା ସେମିତକି ତାଙ୍କ ମାଆ ମଧ୍ୟ ସେହି ଅଶ୍ରୁସଞ୍ଜନକ ସରଳ ଗୌରବରେ ରୂପାନ୍ତରିତ ହୋଇ ଯାଉଛି, ଅଥଚ ସେ ନିଜେ ତାହା ଠାରୁ ଖୁବ୍ ଦୂରରେ ସେହି ସୁଦୂର-ପ୍ରସାରି ନୀଳ ଆକାଶରେ ଝୁଲୁଛି ।

ତା ମାଆ କଣ କହୁଥିଲା ? ସେ ଦରଜିଆକୁ କହୁଥିଲା, ସେ ତାକୁ କୁଣ୍ଡେଇଟା ଦେବ ନାହିଁ । ସେଟା ଦେଇ ଦେବା ତାର ଉଚିତ ନୁହେଁ, ସେ କହୁଲା, କାରଣ, ପ୍ରଥମେ ଏହା ଅତି ସୁନ୍ଦର, ଖୁବ୍ ଭଲ ପୋଷାକ, କୋଟ, ଗ୍ଲୋଭସ ଓ ଟୋପି ପିନ୍ଧନ୍ତି । ଏମିତ କୁଣ୍ଡେଇଟିଏ ନେନାକୁ ଦେବା ପାଇଁ ଏ କ ଖିଆଲ ! ଆଉ ତା ପରେ, ନେନା ବା ଏହା ନେଇ କଣ କରିବ ? ନେନାକୁ ଘରେ ଅନେକ କାମ କରିବାକୁ ପଡ଼େ । ସେ ତା ବାବାଙ୍କର ସବୁ ଖିଦ୍‌ମତ ବଜାଇବ । ତାର ଖେଳିବାକୁ ଆଦୌ ସମୟ ନାହିଁ । ରାତିରେ ଘରକୁ ଫେରି ଅପି ତା ବାବା ଯଦି ଦେଖନ୍ତି ଯେ ସବୁ ବ୍ୟବସ୍ଥା ଠିକ୍ ନାହିଁ, ତାହାହେଲେ ତାକୁ ଖୁବ୍ ମୁସ୍କିଲରେ ପଡ଼ିବାକୁ ହେବ ।

ତାର ବାବା ? ସେ କେଉଁଠି ? ନେନାର ମନେ ହେଲା, ସେହି ସମୟରେ ସେ ଅନ୍ୟ ଜଗତରେ ଅଛନ୍ତି— ତାର ସେହି ପାଷଣ୍ଡ ବାବା, ସବୁବେଳେ ମାତାଲ ହୋଇ ଘରକୁ ଫେରନ୍ତି ଓ ବକର୍ ବକର୍ ହୁଅନ୍ତି, ଅଉ ଗାଲି ମିଛଟାରେ ତାକୁ ମାରଧର କରନ୍ତି, ଏବ ଭୀଷଣ ଭାବରେ ତା'ର ମଥାର କେଶ ଟାଣନ୍ତି, ଆଉ ତାଙ୍କ ହାତ ପାଖରେ ଯେଉଁ ଜିନିଷସବୁ ପାଆନ୍ତି, ତାହା ତା ଅଡକୁ ଫୋପାଡ଼ି, ଚିତ୍କାର କରନ୍ତି, 'ତା ବଦଳରେ ତୁ ବା ମରିଗଲୁ ନାହିଁ କାହିଁକି ?'

ଏହାର ଅର୍ଥ ତାର ସାନ ଭାଇ ବଦଳରେ । ତା ମାଆ ଯେତେବେଳେ ନର୍ସ ଚାକିରି କରିବାକୁ ଗଲା, ପିଲାଟିକୁ ଘରେ ଛାଡ଼ି

ଦେଇ ଯାଇଥିଲା, ଏବଂ ଜଣେ ପଡ଼ୋଶୀ ମାଇକିଙ୍କ କେତେ ଲକ୍ଷ୍ୟ ନେଇ ତାକୁ ଦୁଧ ଦେବାକୁ ରାଜି ହୋଇଥିଲା, ଆଉ ନେଲିକୁ ତାକୁ ଦେଖାଶୁଣା କରିବାକୁ ପଡ଼ୁଥିଲା । ଯେବେ, ଯାହାହେଉ, ସେ ସାନ ଝିଅଟିକୁ ଖାଟେଇ ଥିବା ସମୟରେ, ସେ ମରିଗଲା । ସେ ଜାଣି ନ ଥିଲା ଯେ ପିଲାଟି ମରି ଗଲାଣି, ଏବଂ ତାକୁ ଧରି ବଞ୍ଚୁ ସମସ୍ତ ଦୁର ବୁଲିଲା— ଅତି ଥଣ୍ଡା, ବିଷଣ୍ଣ, ନୀରବ ଓ କଠିନ ଅବସ୍ଥାରେ । ସେହି ସମୟରୁ, ତାର ବାବା ପାପିଷ୍ଠ ଓ ନିର୍ଦ୍ଦୟ ହୋଇ ଯାଇଛନ୍ତି— ଏପରି ନିର୍ଦ୍ଦୟ ଯେ ତାର ମାଆ ଆଉ ତାଙ୍କ ପାଖରେ ରହୁ ନାହିଁ, କିନ୍ତୁ ସେ ଏହି ଘରେ ଜଣେ ଗୃହର ଭାବରେ ରହୁଛନ୍ତି— କିମ୍ବା ତା ବାବାଙ୍କ କଥାରେ, ଜଣେ 'ଗ୍ରାଣ୍ଡ ଲେଡି' ଭଳି । ଆଉ ବର୍ତ୍ତମାନ ପ୍ରକୃତରେ ନେଲି ତା ଅଡ଼କୁ ଅନାଇଲେ, ତାର ସେହି କଥା ମନେ ପଡ଼ିଯାଏ । ତାର ଚେହେରା, କଥାବାର୍ତ୍ତାର ଢଙ୍ଗ, ହସଖୁସି ଓ ଚାଲିଚଳନରୁ ଜଣାଯାଏ, ସେ ବାସ୍ତବିକ, ଠିକ୍ ଦରଡ୍ୟାର ମାଆ ପରି, ଜଣେ ଭଦ୍ର-ମହିଳା ହୋଇ ଯାଇଛନ୍ତି । ସେ ଆଜି ତାର ମାଆ ଭଳି ନେଲିକୁ ବୋଧ ହେଉ ନାହିଁ ।

'ନା, ନା, ମିସ୍ ଦରଡ୍ୟା ! ତୁମେ ଏପରି କଥା ବା ଭାବୁଛ କିପରି ? ଏହା ଆଦୌ ହୋଇ ପାରିବ ନାହିଁ । ଏମିତି ସୁନ୍ଦର କୁଣ୍ଢେଇଟିଏ ମୋର ନେଲି ବଚ୍ଚାକୁ ତୁମେ କୌଣସି ମତେ ଦେଇ ପାରିବ ନାହିଁ ।'

କିନ୍ତୁ ସେହି ମୁହୂର୍ତ୍ତରେ ଦରଡ୍ୟାର ମାଆ ଝିଅଟିର ହାତ ଧରି ନେଇ, କୁଣ୍ଢେଇଟି— ମାର୍ଗନେସ ମିମି— ତା ଛାତି ଉପରେ ରଖି ଦେଲେ ଏବଂ ତା ପରେ କୁଣ୍ଢେଇଟିକୁ ଦୃଢ଼ ଭାବରେ ଧରିବା ପାଇଁ ସେ ତା ହାତକୁ ତା ଉପରେ ଥୋଇ ଦେଲେ ।

'ତୋର କଣ ଭଦ୍ରତା ନାହିଁ ?' ନେଲର ମାଆ ପାଟି କଲା । 'ଧନ୍ୟବାଦ ଦେଉ ନାହୁଁ ? ଉପହାର ପାଇଲେ କଣ କହିବାକୁ ତୁ ଏ ଜାଣୁ ନାହିଁ ?'

କିଛି ନା ! ନେଲ କଣ କହିବ କିଛି ଭାବି ପାରିଲା ନାହିଁ । ହାତରେ ଭିଡ଼ି ଧରିଥିବା ମାର୍ଗେନେସ କୁଣ୍ଢେଇଟାକୁ ବି ଅନାଇବା ପାଇଁ ତାର ଟିକିଏ ବି ହେମତ ନ ଥିଲା ।

ଖୁବ୍ ବିଭୋର ହୋଇ ସେ ଘରୁ ବାହାରି ଗଲା । ତାର ଆଖି ଛଳ ଛଳ ଦେଖା ଯାଉଥିଲା, ତାର ମୁହଁ ମଧ୍ୟ ମେଲା ହୋଇଥିଲା ଏବଂ ତାର ମାଆ ତା ବାଳଗୁଡ଼ାକ ସଜାଡ଼ି ଦେବାକୁ ଚେଷ୍ଟା କରିଥିଲେ ସୁଦ୍ଧା ତାହା ଲାଲ୍ ରିବନ ତଳେ ଠିଆ ହୋଇଥିଲା । ତା ଚାରି ପଟେ କିଛି ନ ଦେଖି ଓ ଶୁଣି, ସେ ସିଡ଼ିରେ ତଳକୁ ଓହ୍ଲାଇ ଗଲା ଏବଂ ରାସ୍ତାରେ ଚାଲିବାକୁ ଲାଗିଲା । ଶେଷରେ ତା ବାବା ସହିତ ବାସ କରୁଥିବା ଦୀନ କୁଟୀରରେ ଆସି ସେ ପଦାର୍ପଣ କଲା । ତାର ମନେ ହେଲା, ଯେମିତିକି ତାର ସମସ୍ତ ଜୀବନୀଶକ୍ତି ସେହି ଅଜବ କୁଣ୍ଢେଇଟି ମଧ୍ୟରେ ସଞ୍ଚାରିତ ହୋଇ ଯାଇଛି । କୁଣ୍ଢେଇଟିକୁ ସେ ଦୃଢ଼ ଭାବରେ ଧରିଥିଲା ଏବଂ ଭାବୁଥିଲା, ମାର୍ଗେନେସର ଜୀବନ-ଯାତ୍ରା ସମ୍ବନ୍ଧରେ ତାର ନିଜର କୌଣସି ଧାରଣା ନାହିଁ— ଅସ୍ପଷ୍ଟ ଦରଜିଆର ଅନର୍ଗଳ ବକବକ-କରିବା ଭିତରେ ସେହି ଜୀବନର ଉଜ୍ଜ୍ୱଳ ଛବି ସେ ଦେଖି ପାରିଥିଲା । ହାସ୍ୟରେ ବିଧାତା, ମିସ ଦରଜିଆ ଯେଉଁ କଥା କହୁଥିଲା ସେହି କୁଣ୍ଢେଇଟା ଯଦି ତାହା କହି ଆସନ୍ତା, ତାହା ସେ ତା କିପରି ବୁଝି ପାରିଥାନ୍ତା ?

'ମରଗିଂ, ମରଗିଂ, ତୁମେ ଯଦି ଦଉଡ଼ି ପଳାଅ, ମୁଁ ବି ଦୌଡ଼ିଯାଇ ତମ ସାଙ୍ଗରେ ମିଶିଯିବି ।'

ଆ, ମାର୍ଗରେଟ ମିସିଙ୍କ ସାଙ୍ଗରେ ଦେଖା କରିବା ପାଇଁ ମରକିଂ ଶାଷ୍ଟ୍ରସ୍ ସେହି ଭଙ୍ଗା ଘରକୁ ଆସିବା କଥା ଅଚିନ୍ତ୍ୟ ସମ୍ଭବ ନାହିଁ,— ତାର ମହଲା ବନ୍ଧୁମାନଙ୍କ ସହିତ ମଧ୍ୟ । ସେମାନଙ୍କର ସୁନେଲି ସିଗାରେଟ ଓ ସୁଗନ୍ଧ ରୁମେଲ ମିଠାଇ ଅଛି ! ଆଉ ପ୍ରକୃତ ଘୋଡ଼ାସବୁ, ଜୀବନ୍ତ ଘୋଡ଼ା, ଗ୍ଲେଟ ଗ୍ଲେଟ ଘୋଡ଼ା !

ମୁହୂର୍ତ୍ତିକ ପାଇଁ ହିଁଅଟିର ମଥାରେ ଏହା କଦାପି ପଶି ନ ଥିଲା ଯେ ସେ କ୍ରୁଣ୍ଡେଲ ସହିତ ଖେଳିପାରେ । ସେ ମାର୍ଗରେଟର ଜଣେ ଦାସୀ ହୋଇପାରେ— ହଁ, ସେ ତାର ସେବା କରିପାରେ । କିନ୍ତୁ ତା ସହିତ କପରି କଥା କହିବାକୁ ହୁଏ ତାହା ନ ଜାଣିଲେ, ଏବଂ କ୍ରୁଣ୍ଡେଲଟି କପରି ଭାବରେ ଚଳାଚଳ କରେ ସେ ସବୁ କିଛି ନ ଜାଣିଲେ, ସେ କଣ କରି ପାରିବ ?

ତାର କ୍ଷୁଦ୍ର ହୀନ ବାସସ୍ଥାନକୁ ଫେରି ଆସିବା ମାତ୍ରେ ନେଞ୍ଜ ଲଜ୍ଜାରେ ମଥା ନତ କଲା— ତା ନିଜ ପାଇଁ ନୁହେଁ, କିନ୍ତୁ ଯେଉଁ ଗ୍ଲେଟ ମହଲାଟିକୁ ସେ କାଖେଇ ନେଇ ଆସିଥିଲା ତାର ପାଇଁ । ଏଠାରେ ତାର ଶୋଇବା ଘରେ ସାମାନ୍ୟ ବିଛଣା, ଖଣ୍ଡିଏ ଭଙ୍ଗା ଟେବଲ-ଚୌକି, ଏବଂ ଗୋଟାଏ ଗ୍ଲେଟ ଟୁଲ— ସେ ସ୍କୁଲରେ ପଢ଼ିବା ସମୟରେ ଏହି ଟୁଲଟାକୁ ଟେବୁଲ ପରି ବ୍ୟବହାର କରୁଥିଲା । ତଥାପି ତା ଆଡକୁ ଅନାଇବାକୁ ସେ ସାହସ କରୁ ନ ଥିଲା । ମାର୍ଗରେଟ ମିସିର ଆଖି କେବଳ କାଚରେ ତିଆରି ହୋଇ ଥିବାରୁ, କି କଦର୍ଯ୍ୟ ସ୍ଥାନରେ ସେ ଆସି ପହଞ୍ଚିଛି ତାହା ସେ ନିଜେ ଦେଖି ପାରୁ ନ ଥିଲା, କିନ୍ତୁ ଏତେ ସୁନ୍ଦର ଘରୁ ଆସିଥିବା ମାର୍ଗରେଟର ଚକ୍ଷୁ ଦ୍ୱାରା ନେଞ୍ଜ ବର୍ତ୍ତମାନ ତାହା ଲକ୍ଷ୍ୟ କଲା । ଯେତେ ବେଳ ଯାଏ ସେ କ୍ରୁଣ୍ଡେଲଟାକୁ ତା କାଖ ତଳେ ଜାକି ରଖିଥିଲା ଓ ତାହା ଆଡକୁ ଅନାଉ ନ ଥିଲା, ସେତେବେଳ ଯାଏ ମାର୍ଗରେଟ ମିସି

କିଛି ଦୋଷ ଖାଲି ନ ଥିଲା । କିନ୍ତୁ କେହି ଯେତେବେଳେ ତା ଅଙ୍ଗକୁ ଛୁଇଁବାକୁ ଇଚ୍ଛା କରିବ, ସେତେବେଳେ ସେ ତ ସବୁ କିଛି ଦେଖି ପାରିବ । ତେଣୁ ଏପରି ଭାବରେ ସବୁ ବ୍ୟବସ୍ଥା କରିବା ଦରକାର, ଯଦ୍ୱାରା ପ୍ରଥମ ଦୃଷ୍ଟିରେ ତାର ଧାରଣା ଯେପରି ଖରାପ ନହେବାର କଥା ସେପରି ନ ହୁଏ ।

ତାର ମନେ ପଡ଼ିଲା ଯେ ତାର ବିଛଣା ତଳେ ଗୋଟିଏ ଟ୍ରଙ୍କ ବାକ୍ସରେ ମିସ୍ ଦରଡସ୍କାର ଖଣ୍ଡିଏ ପୁରୁଣା ନୀଳ ଘାଗରା ଅଛି— ସେହି ବାକ୍ସରେ ସେ ତାର ପୋଷାକ-ପତ୍ର ରଖେ । କେଉଁ ପିନ୍ଧିବା ପାଇଁ ତାର ମାଆ ତାହା କର୍ସକୁ ଦେଇଥିଲା । ବାରମ୍ବାର ଧୁଆ ହେବାରେ ତାର ରଙ୍ଗ ଧୋଇ ଗଲାଣି ଏବଂ ଏକାଧିକ ସ୍ଥାନରେ ଝରି ଗଲାଣି, କିନ୍ତୁ ସେହି ବଡ଼ ଘରୁ ଏହା ଆସିଥିଲା, ଦିନେ ଏହା ଦରଡସ୍କାର ଥିଲା, ଏବଂ ମାର୍ଶନେସ ବୋଧହୁଏ ଏହାକୁ ଚିହ୍ନି ପାରିବ ।

କୁଣ୍ଡେଇଟାକୁ ତଳକୁ ନ ଓହ୍ଲାଇ କିମ୍ବା ତା ଅଙ୍ଗକୁ ଆଉ ନ ଛୁଇଁ, କେବଳ ନଇଁପଡ଼ି ବାକ୍ସରୁ ଘାଗରାଟି ବାହାର କଲା, ଏବଂ ତା ପରେ ତାହାକୁ ଟୁଲ୍ ଉପରେ ଟେବୁଲ-କ୍ଲଥ ପରି ବିଛାଇ ଦେଲା— ଚିରା ସ୍ଥାନଗୁଡ଼ିକ, ଅନ୍ତତଃ ଯେଉଁଠି ବେଶି ଛିଣ୍ଡି ଯାଇଛି, ସେପରି ଟେବୁଲ ଉପରେ ନ ରହେ ସେଥି ପ୍ରତି ସେ ବିଶେଷ ଯତ୍ନ ନେଇଥିଲା । ସେଠାରେ ! ବର୍ତ୍ତମାନ ସେ ଖଣ୍ଡିଏ ସ୍ଥାନ କରି ପାରିଲା, ଅନ୍ତତଃ ଆପାତତଃ, ସେ କୁଣ୍ଡେଇଟାକୁ ଏହା ଉପରେ ବସାଇ ପାରିବ; କାରଣ, ଅତି ପୁରୁଣା ହୋଇ ଯାଇଥିଲେ ବି, ଘାଗରାଟା ପରିଷ୍କାର ଥିଲା ଓ ସବୁ ସୂତାରେ ତିଆରି ହୋଇଥିଲା ।

କୁଣ୍ଡେଇଟାକୁ ଧୀରେ ଧୀରେ ବସାଉଥିବା ବେଳେ, କାଳେ ତା ଦେହରେ ଲାଗିବ କିମ୍ବା ତାର ପୋଷାକ କୁଞ୍ଚା ହୋଇଯିବ, ଏହି ଭୟରେ ତାର ହାତ ଥରିବାକୁ ଲାଗିଲା । ତା ପରେ ଅବଶେଷରେ

ସେ ତା ଅଡ଼କୁ ଅନାଇବାକୁ ସାହସ କଲା । ଏକ ଦୁଃଖ ମିଶ୍ରିତ ଘୃଣଂସାବାଚକ ଭଙ୍ଗୀରେ ସେ ତାର ବାହୁ ବିସ୍ତାର କରି ଦେଲା, କିନ୍ତୁ ତା ମୁଖ ମଣ୍ଡଳରେ ବ୍ୟଥାତୁର ଅଣାଶ୍ୱିତତା ଫୋଟି ଯାଇଥିଲା । ଧୀରେ ତା ଆଣ୍ଠୁ ଭାଙ୍ଗି ବସି ପଡ଼ି, ସେ କ୍ଲୁଣ୍ଟେକର ଅର୍ଦ୍ଧ ଅଡ଼କୁ ଅନାଇଲା । ହାୟ ! ତା ପରେ ମିସ୍ ଦରଡଯ୍ୟା କ୍ଲୁଣ୍ଟେକଟିକୁ ଯେଉଁ ଚମତ୍କାର ଜୀବନ ପ୍ରଦାନ କରିଥିଲା, ଏଠାରେ ତାହା ପ୍ରାପ୍ତ ଲଭିଗଲା । ନେଲର ମନେ ହେଲା, ତା ଆଗରେ ବସି କ୍ଲୁଣ୍ଟେକଟି ତାର ଜୀବନ ଲାଭ କରିବା ପାଇଁ କଷ୍ଟ କରିବାକୁ ଯେମିତି ଉତ୍କଣ୍ଠାରେ ଅପେକ୍ଷା କରୁଛି— ତାର ମୃତ ଜୀବନ, ଜଣେ ଭଦ୍ର ମହିଳାର ଜୀବନ । କିପରି ଏହା କରାଯାଇ ପାରେ ? ନେଲ କଣ କରି ପାରିବ ? ତାର ଯେ ସବୁ କଷ୍ଟର ଅଭାବ । ମିସ୍ ଦରଡଯ୍ୟା କହୁଥିଲେ ଯେ ତାର କ୍ଲୁଣ୍ଟେକମାନଙ୍କର ଦିନ ଭିତରେ ଅନେକ ଥର ଲୁଗା ବଦଳାଇବାର ଅଭ୍ୟାସ ଅଛି, ଏବଂ ମାର୍ଶନେସ ମିସିର ଅନେକ ପୋଷାକ ଅଛି, ଗୋଟିଏ ଅନ୍ୟଟି ଠାରୁ ଅଧିକ ସୁନ୍ଦର— ଗୋଟିଏ ନୀଳ, ଅନ୍ୟଟି ହଳଦିଆ, ଅନ୍ୟଟି ସବୁଜ, ଗୋଟାକ ଉପରେ ଛୋଟ ଛୋଟ ଫୁଲ ଛପା ହୋଇଛି, ଅନ୍ୟଟି ସହିତ ଜାପାନୀ ଛତା ଅଛି । ବର୍ତ୍ତମାନ ଏହା କିପରି ବା ଆଶା କରାଯାଇ ପାରେ ଯେ ଏକ ପୋଷାକରେ, ତାର ଛୋଟ ପାଦରେ ସେହି ଜୋତା ଯୋଡାକ ପିନ୍ଧି, ଗୋଟାଏ ଟୋପି, ସେହି ବ୍ରେସଲେଟ ଓ ସଦାବେଳେ ବେକରେ ସେହି ହାରଟା ନାଇ, ମାର୍ଶନେସ ତାର ଦିନ ଯାପନ କରିବ ? ଅସଲ ପରଦେର ଉଆର, କି ସୁନ୍ଦର ପଙ୍ଗାଟିଏ : ଯେ କେହି ଏଥିରେ ବସିଲେ ନିଜେ ହାର୍ଯ୍ୟ ପାଇ ପାରିବ— ଖୁବ୍ ଅଳ୍ପ ପରିମାଣ ହାର୍ଯ୍ୟା, କିନ୍ତୁ କୁନି ମାର୍ଶନେସ ମିସି ପକ୍ଷରେ ତାହା ସମ୍ପୂର୍ଣ୍ଣ ଯଥେଷ୍ଟ ।……

ମିସ୍ ଦରଣ୍ଡିଅର ଘରେ ସବୁ ଦରକାରୀ ଜିନିଷ ଥିଲା— ଓଭ୍ନ ଧଳା ବିଛଣା ଓ କୁଣ୍ଡେଇର ଅନ୍ୟାନ୍ୟ ଆସବାବପତ୍ର, ସୁନ୍ଦର ଶୋଟାକ-ବାକ୍ସ— ସେଠାରେ ଯଦି ସେମାନେ ଥାଆନ୍ତେ, ତା ହେଲେ କି ଖୁସି ମନରେ ନେଲି ମାର୍ଶନେସ ମିମିର ଦାସୀ ହୋଇ ନ ଥାଆନ୍ତା । କିନ୍ତୁ ଏଠାରେ ସେ ତାର କି ସେବା କରି ପାରିବ ? ଛୋଟ ବିଛଣାଟିଏ ଓ ଅନ୍ତତଃ କିଛି ଲୁଗାପଟା ତାକୁ ଦେବା କଥା ତ ମିସ୍ ଦରଭସ୍ୱାର ମନରେ ଜାଗି ହେବା ଉଚିତ ଥିଲା । ନେଲି ସେସ ଆଉ କିଛି ଅଧିକ ମୂଲ୍ୟବାନ ଉପହାର ଚାହୁଁଛି ତାହା ନୁହେଁ କି, କିନ୍ତୁ ସେହିଁଥିରେ କୁଣ୍ଡେଇଟା କଷ୍ଟ ନ ପାଏ ଏବଂ ସେ ନିଜେ ବି ସେହିଁଥିରେ ମାର୍ଶନେସର ସେବା କରିପାରେ, ଏଥି ପ୍ରତି ତ ତାର ନଜର ଦେବା ଉଚିତ ଥିଲା । ତାର ନିଜର ଅଦୌ କିଛି ନ ଥିବା ସ୍ଥଳେ, ସେ ବା ତାର ଅଭାବ ମେଣ୍ଟାଇବ କିପରି ? ସେ କେବଳ ମାର୍ଶନେସର ପେଟେଣ୍ଟ-ଚମଡା ଜୋତା ଉପରେ ନିଶ୍ୱାସ ଛାଡ଼ି ଓ ତାର ଆଙ୍ଗୁଳି ଟିପରେ କାମ୍ବ୍ରିକ୍ ରୁମାଲର କୋଣରେ ତାହା ଘଷି-ସଫା କରିଦେଇ ପାରେ । ତାହା ଛଡା ସେ ଆଉ କଣ କରିପାରିବ !

ମିସ୍ ଦରଭସ୍ୱା ପାଖକୁ କୁଣ୍ଡେଇଟା ଫେରାଇ ନେଇ ଏକଥା କହିଲେ କଣ ବରଂ ଭଲ ହେବ ନାହିଁ: 'ହୁଏ ତ ଯେପରି ଭାବରେ ତାର ରହିବା ଅଭ୍ୟାସ, ସେହିପରି ଭାବରେ ରହିବା ପାଇଁ ତାର ଯାହା ଦରକାର ସବୁ ମୋତେ ଦିଅ, ନଚେତ୍ ତୁମେ ନିଜେ ତାକୁ ରଖ ।'

ଆଉ କିଏ କହି ପାରିବ ? ହୁଏ ତ ମିସ୍ ଦରଭସ୍ୱା କୁଣ୍ଡେଇର ସବୁ ଦରକାରୀ ଜିନିଷ ତାକୁ ଦେଇ ଦେବ ।......

ନେଲି ଟ୍ରଙ୍କଟା ଆଗରେ ବସି ପଡ଼ି, ଗୋଟାଏ ଲମ୍ବା ନିଶ୍ୱାସ ଛାଡ଼ିଲା । ସେ ଥରେ ଘରର ଚାରିଆଡ଼କୁ ଅନାଇବା ମାତ୍ରେ, ତାର

ହଠାତ୍ ମନେ ହେଲା ଯେ ମାର୍ଶନେସ ମିମିଙ୍କ ଶୋଇବା ଘରଟି ଯେପରି ତାର ଭଙ୍ଗା ଘରର ଗୋଟାଏ କୋଣରେ ଆସି ପଡ଼ିଛି । ଘରଟି ଯଥେଷ୍ଟ ପ୍ରଶସ୍ତ ଦେଖା ଯାଉଛି, ଚଟାଣ ଉପରେ ନରମ ନାଲି କାର୍ପେଟ ବିଛା ଯାଇଛି, କାଠ ଖଟ, ଧଳା ବିଛଣା, ନାଲି ସିଲ୍କର ମଶାରି, ଏବଂ ତା ପାଖରେ କାଚ-ବସା ଓ୍ୱାଡରୋବ୍, ସୁନେଲି ଟେବୁଲ, ଓ ବଡ଼ ଆଇନା-ଦର୍ପଣ । ନେଲି ନିଜକୁ ଦେଖି ପାରିବ, ଯେମିତିକି ତାର ମାଥା ଉପରେ ସୁନ୍ଦର ଗୋଲାପୀ ଟିଣ୍ଡ, ଏବଂ ମନରେ ତାର ଖାମଖିଆଲ୍ ଟିକେ ସୁନାବାଣୀର ସେବା କରୁଛି । ମାଲିକମାନଙ୍କୁ ଖୁସି ରଖିବା ପାଇଁ, ସେ ଆଗରୁ ମନଯୋଗ ଓ ସତର୍କତା-ପୂର୍ବକ ସବୁ କାମ କରି ଦେଇଥିବ; କାରଣ ତାର ସବୁ ପ୍ରକାର ସୁବିଧା ହୋଇଥିଲେ ବି, ତାର ପ୍ରୟୋଜନୀୟ ସକଳ ବିଳାସ ସାମଗ୍ରୀ ଥିଲେ ବି, ସେ ସେଠାରେ ସବୁବେଳେ ଏକା ଥିବାରୁ, ମାର୍ଶନେସ ଟିକି ଟିକି ଅସନ୍ତୁଷ୍ଟ ହେବ । ସେ ତାର ମହୁଲା ବନ୍ଧୁମାନଙ୍କର ଦର୍ଶନ ଲାଭ କରିବ ନାହିଁ...... ମରଚିଂ ସହିତ ତାର ଦେଖା ହେବ ନାହିଁ ଏବଂ ସକାଳେ ସେ ଘୋଡ଼ା ଚଢ଼ି ପାରିବ ନାହିଁ । ଖଣ୍ଡିଏ ଲମ୍ବା ଛଡ଼ିରେ ସେ ତାର ଚାକରକୁ ଶାସନ କରିବ ।

'ମୋର ସ୍ନାନର ବ୍ୟବସ୍ଥା ହୋଇଛି ତ ?'

'ମୁଁ ଠିକ ମଧ୍ୟରେ ସବୁ ବ୍ୟବସ୍ଥା କରି ଦେଉଛି, ମି ଲେଡ଼ି...।'

'କିନ୍ତୁ ମୁଁ ଉଠିବା ଷଣି ମୋର ସ୍ନାନର ସମ୍ପୂର୍ଣ୍ଣ ବ୍ୟବସ୍ଥା ହୋଇଥିବା ଉଚିତ । ମୋତେ ବସାଇ ରଖିବାର ଅର୍ଥ କଣ ? ମୋତେ ଶୀଘ୍ର ମୋ ଚକୋଲେଟ ଓ ବିସ୍କୁଟ ଆଣି ଦେ । ଆଉ ମୋ ପୋଷାକ— ଜଲ୍‌ଦି କର !'

'କେଉଁଟା, ମି ଲେଡ଼ି ? ନୀଳଟା ? ନା ହଳଦିଆଟା ? ନା ଜାପାନୀ ଛିଟାବାଲା ପୋଷାକଟା ?'

‘ନା, ବାଇଗଣୀଟା । ସେଟା ଭଣଙ୍କୁ ଖାପ୍ଖା ନାହିଁ ?’

‘ହଁ, ହଁ, ଠିକ୍ କଥା, ମି ଲେଙ୍ଗ୍ । ଧନ୍ୟବାଦ, ଏବଡ଼ି, ମି ଲେଙ୍ଗ୍...।’

ନେଲି ଏକ ଦୃଷ୍ଟିରେ ଘରର କୋଣକୁ ଚାହିଁ ରହିଛି, ଯେମିତିକି ତାର ସ୍ୱପ୍ନ ବାସ୍ତବ ହୋଇ ଯାଉଛି । କିନ୍ତୁ ସମସ୍ତ ଟହଲ ମାର୍ଶନେସ ସହିତ ସେ ଜୋରରେ କଥାବାର୍ତ୍ତା କରୁଥିଲା, ମାର୍ଶନେସ ପାଇଁ ସେ ଉଚ୍ଚ-ଦାମ୍ଭିକ ସ୍ୱର ଏବଂ ତା ପାଇଁ ଏକ ଭକ୍ତି-ବିନମ୍ର ସ୍ୱର ବ୍ୟବହାର କରୁଥିଲା— ପ୍ରଭୁ ପରାୟଣା କ୍ଷୁଦ୍ର ଦାସୀଟିଏ, ତାର ଅତ୍ୟାଗ୍ରହୀ ମୂକବାଣୀର କୌଣସି କଥା ପ୍ରତି ତାର ଭ୍ରୂକ୍ଷେପ ନାହିଁ । ହଠାତ୍, ତାର ମଥା ଠାରୁ ପାଦ ଯାଏ କମ୍ପି ଉଠିଲା । ସେ ଦେଖି ପାରିଲା, ଗୋଟାଏ ବଡ ମୋଟା ହାତ ତା ମଥା ଉପରେ ଆସି, ଟୁଲ୍ ଉପରେ ବସିଥିବା କ୍ଲୁଣ୍ଟେଇଟାକୁ ହଠାତ୍ ଉଠାଇ ନେଇଗଲା ।

ଲଜ୍ଜାରେ, ତା ମଥା ତଳକୁ ହୋଇଗଲା; ତା ପରେ, ଅଳ୍ପ କ୍ଷଣରେ, ସେ ତା କାନ୍ଧ ଉପରେ ପଛକୁ ଦୃଷ୍ଟି ନିକ୍ଷେପ କରିବାକୁ ସାହସ ବାନ୍ଧିଲା ।

ତା ବାବା ତା ପଛରେ ଠିଆ ହୋଇଥିଲେ । ତାଙ୍କ ବଡ଼ାବଡ଼ ହାତରେ ସୁନ୍ଦର କ୍ଲୁଣ୍ଟେଇଟି ପରୀକ୍ଷା କରୁଁ କରୁଁ, ତାଙ୍କ ମୋଟା ଓଠରେ ଅସ୍ଥିର ହସ ଫୁଟି ଉଠିଲା । ସେ ତାଙ୍କ ମୁଣ୍ଡ ହଲାଇ, ପାଟିକଲେ:

‘ଓ, ବସି ବସି ଏହା ହେଉଛି, ନା ?’

ତାର ବାବା ଅନ୍ୟ ହାତଟି ଉଠାଇ, ତାଙ୍କ ଅଙ୍ଗୁଳିରେ କ୍ଲୁଣ୍ଟେଇର ଟୋପିର ଧାର ଧରିବାର ସେ ଯେମିତି ଦେଖିଲା, ତାର ଅନ୍ତର ମର୍ମାନ୍ତିକ ଯନ୍ତ୍ରଣାରେ ପୂର୍ଣ୍ଣ ହୋଇଗଲା । ସେ ଜୋରରେ ଟାଣି ଆଣିଲେ । ମାର୍ଶନେସ ମିମିର ଟୋପି ସହ ମଥାଟା ବାହାରି ଆସିବା ବେଳେ, ନେଲି ଅତି କଷ୍ଟରେ ନିଜକୁ ସମ୍ଭାଳି ନେଲା । ତା ପରେ କ୍ଲୁଣ୍ଟେଇଟାକୁ ଖଣ୍ଡ ଖଣ୍ଡ କରି ଷ୍ଟୋଭ ଘରକା ଭିତରେ

ବାହାରକୁ ଫୋପାଡି ଦିଆଗଲା । ପର ମୁହୂର୍ତ୍ତରେ ନେଲ୍ସ ଏକ ପ୍ରଚଣ୍ଡ ଗୋଇଠା ଖାଇଲା ଏବଂ କ୍ରୋଧପୂର୍ଣ୍ଣ ଚିତ୍କାର ଶୁଣିଲା :

'ଉଠ୍ ! ଏଡୁ ଦାରୁଣ ମୂର୍ଖତା ଆଉ ଏଠାରେ ନୁହେଁ ! ମୋ ଘରେ ଆଉ "ଗ୍ରାଣ୍ଡ ଲେଡି" ଦରକାର ନାହିଁ—ଶୁଣି ପାରୁଛୁ ତ ?...'

# ପାଞ୍ଚ

ଡାକବାଲା ହାତରୁ ଚିଠିଟା ଛଡ଼ାଇ ନେଇ ସିନୋରା ମାନ୍‌ଫ୍ରେଡି ସ୍ବସ୍ତିର ନିଶ୍ୱାସ ଛାଡ଼ି କହିଲେ, 'ଓଃ, ମଣିଷ ବଞ୍ଚିଲା'। ସେମାନେ କେବେ ଚିଠି ଆସି ପହଞ୍ଚିବ, ସିନୋରା ଦିନ ଗଣୁଥିଲେ। ସେ ଏଣ୍ଟୋନ୍ୟୋ ମୋରିଙ୍କୁ କହୁଥିଲେ, ଏରପ୍ଲେନ୍‌ରେ ଛୁଟି ମିଳିଲେ ହେଲେ ସେ ଯେମିତି ସବୁ ଖବର ଜଣାଇ ଶୀଘ୍ର ଗୋଟିଏ ଚିଠି ଦିଏ। ଏହା ସେହି ଚିଠି।

ଜଲ୍‌ଦି ଲେଫାଫାଟା ଚିରି ପକାଇ ସେ ଚିଠି ପଢ଼ିବା ଆରମ୍ଭ କଲେ। କୋଉଁ ତାର କରି ଆଗରୁ ଜଣାଇଥିଲା ଯେ ତାଙ୍କ ଝିଅ ଖୁବ୍ କଷ୍ଟ ପାଉଛି, ପଢ଼ର ଜ୍ୱରର କୌଣସି କାରଣ ନ ଥିଲା। ବର୍ତ୍ତମାନ ଚିଠିପତ୍ରି ଜଣାପଡ଼ୁଛି, ପ୍ରକୃତରେ ବିପଦର ସମ୍ଭାବନା ଘଟିଥିଲା; ଏପରିକି ଡେପୁଟର ଧାତ୍ରୀ-ବିଦ୍ୟାରେ ବିଶେଷଜ୍ଞ ଜଣେ ଡାକ୍ତରଙ୍କୁ ବି ଡାକିବାକୁ ପଡ଼ିଥିଲା। ମୋର ଅତୁଳ ଲେଖିଛି ଯେ ଆଉ କେଇ ଘଣ୍ଟା ଗଣ୍ଡଗୋଳ ମନ ଭଙ୍ଗ ହେବ, ସେଥିପାଇଁ ସେ ଆଗରୁ ସବୁ କଥା ଜଣାଇ ନାହିଁ। ବର୍ତ୍ତମାନ ଅବସ୍ଥା ଭଲ ଅଛି, କାରଣ ଝିଅଟିର

ଦୁଃଖେ ସୁଖେ ତୁଟି ଯାଉଛନ୍ତି । ସେଇ ଅନୁଯୋଗ କରନ୍ତି ଯେ ଏରପିଲ୍ୟା ତା କଥା ନ ମାନି ଚାଲିବାରୁ ଏମିତି ହେଲା । ମୋବର କାରଣ ସତ୍ତ୍ୱେ ବି ସେଇ ଶେଷ ଯାଏ ଅଣ୍ଟା-ଜାମା ଓ ଫୁଲ-ଲଗା ଜୋତା ପିନ୍ଧିବା ଛାଡ଼ନ୍ତି ନାହିଁ ।

'କି କଥା କେଇଁଛନ୍ତି, ଫୁଲ-ଲଗା ଜୋତା ପିନ୍ଧିବା ଛାଡ଼ିଲି ନାହିଁ, ଭାରି ମୂର୍ଖ କେଉଁଠିକାର ।' ଝିଅଟା କେତେ ଥର ପଚାରନ୍ତି, ସିନେମା ଷ୍ଟାରଙ୍କର ଛବିରଖି ଚୋଟିଆ କଟେ । କଟକଟ କରି ସେଇ ଏ ପାଖ ସେ ପାଖ ଚାହିଁ ଦେଖନ୍ତି । ଭିତରେ ଝାଡ଼ିବାକୁ ପାଇଲେ ଯେମିତି ସେଇ ମନର ରାଗ ମେଣ୍ଟାଇ ନିଅନ୍ତି ।

'ବୋକାଟା । କଣ କେଉଁଛନ୍ତି ଦେଖ । ପୁଅର ଧାଡ଼ି ଓରମର ଲୋକ ହେଲେ ଚଳିବ ନାହିଁ । ତାହିଁ ଭିତରେ ବାବା, ସେମର ଲୋକ କି ଦୋଷ କଲା କି ? ଦରମା କେତେ ଥିବ, ଏସ୍ତା ନ । ଲୋକଟା ଭାରି କୃପଣ । ଭଲ ଦରମା ଦେଇ ଭଲ ଧାଡ଼ି ରଖିବା ବେଳକୁ ଯେତେ ସବୁ ଟଣାଓଟରା, ଏଣେ ପୁଣି ସାମ୍ୟବାଦୀ ! ବିଭାଘର ବେଳେ ଦାବୀ-ଟଙ୍କାଟା ତ ହାତ ପତାଇ ଗଣି ନେଇଥିଲ ! ଛି ଛି ଛି, ଏରପିଲ୍ୟାର କପାଳରେ ପୁଣି ଏଯା ଥିଲା ! ପିଲାଙ୍କୁ କେତେ ଗାଈଁଲ ଦୁଧ ପିବ ତାର ଛୁଆଙ୍କୁ ବଜାର ଦୁଧ ଦେଇ ମଣିଷ କରିବାକୁ ! ତାଙ୍କୁ ଧରି ସେ ଚଳିବ ଓବାମର ସ୍ୱାମୀଙ୍କୁ କେଉଁ ଲଜ୍ଜାରେ ବାହାରିବ ? ଗୃହପୁତ୍ରୀଟାକୁ ପୋଷ ଦ ପିଇବାକୁ ଦେଲେ ତ ବସି ଆଉ ଧାଡ଼ି ହେବ ନାହିଁ । ଯାହା ଅବସ୍ଥା, ତାଙ୍କୁ ଦଶ କୋଡ଼ିଏ ଥର କହିଲେ ବି ସେଥିରୁ ବଦଳା ହେବେ ନାହିଁ । ମୂର୍ଖ କେଉଁଠିକାର ! ବୋକା !'

'ଆଗୋ, ଛିଟେ ଫୁଲ ଲଗା ଜୋତା କାହିଁ ଗଲା କି ? ଆଉ ତାଙ୍କ ଖାଲିକା ଶିଖିବାକୁ ଦେବ କହିଁ କି ?'

ସିନୋର ମାନଫ୍ରେଡ ପ୍ରବେଶ କଲେ । ଏଣ୍ଟୁନିଏଲା ତାଙ୍କର ନବଦ୍ୟ-ବିମିତ୍ରର । ଏତେବେଳେ ଦାସୀ ଓ ସନ୍ତୁଣ୍ଟୀଙ୍କୁ ଗାଲି ଦେଉ ଥିଲେ ।

'ସବୁ କଥାରେ ଏତେ ମେଜାଜ ଦେଖାଅ କାହିଁକି କୁହ ତ ? ଜାଣ ତ, ତୁମର ଏ ସବୁ କେତେବେଳେ ହାତରୁ କାମ ଯାଉ ନାହିଁ ।'

'ବେଶ୍, ମାହା ଦେଉ ଖୁବ୍ ଭଲ ଅଛ । ଅଚ୍ଛା, ମୋ କାମ କଥାଟା ଥରେ ଖବର ଦେଇଛ କି ?'

'ଖାଇବା-ଜିନିଷ ନ ଆସିବା ଯାଏ ତୁମର ସେହି ସ୍ନେହର ଜୁଅଁଇଁ-ବାବୁଙ୍କର ଚିଠିଟା ପଢି ସମସ୍ତ କହାଇ ଦାଅ ।'

'ଏହାପ୍ରକାରର କଥା କହୁଛନ୍ତି ବୋଧହୁଏ ?'

'ପଢି ଦେଖ ନା ।'

ସିନୋର ମାନଫ୍ରେଡ କ୍ଷଣକେ ରୁଷ୍ଟ ତ, କ୍ଷଣକେ ତୁଷ୍ଟ । ଖାଇବା କଥା ଭୁଲିଯାଇ ସେ ଚିଠି ପଢିବାକୁ ଲାଗିଲେ । ପଢା ଶେଷ ହେଲା । ଚିଠିଟା ଭାଙ୍ଗି ଲଫାପା ଭିତରେ ପୁରାଇ ପୁଣି ସେ କହିଲେ — 'ଭଲ ହୋଇଛି । ଯେମିତି ଦରକାର ଠିକ୍ ସେମିତି ଲୋକଟିଏ ମିଳିବ ।' ସିନୋର ମାନଫ୍ରେଡଙ୍କର ପ୍ରାୟ ଏହିପରି 'ଅନ୍ତଃପ୍ରେରଣା' ଆସେ । ଏହା ଯେମିତି ହଠାତ୍ ଆଲୋକର ଝଲକ — ଭାଙ୍କ ଜୀବନର ଚରମ ସ୍ୱାର୍ଥଟାକୁ ହୋଇଯାଏ । ବ୍ୟବସାୟରୁ ସେ ଯେଉଁ ପ୍ରଚୁର ଅର୍ଥ ସଞ୍ଚୟ କରିଛନ୍ତି, ତାଙ୍କର ଧାରଣା ସମସ୍ତଙ୍କ ଏହି ପ୍ରେରଣା-ଲବ୍ଧ । ଟିକିଏ ଅବିଶ୍ୱାସର ଭଙ୍ଗୀରେ ସିନୋରା କହିଲେ, 'ସେହି ଲୋକଟି କିଏ ଶୁଣେ ?'

'ତମ ମାଉସୀଙ୍କ ସ୍ତ୍ରୀ ।'

'କଣ କହୁଛ ? ଯେଉଁ ଦାସୀ ରୋଜିନାର ?'

'ଚୁପ୍ କର ।'

'ନିରକ୍ଷ ଲୋକଙ୍କୁ-ଜଗାଇବା-ସର୍ଦ୍ଦାରଟାର ଖବର ?'

'ବାଟେ ବଳ ନାହିଁ କହୁଛି ।'

'ଜେଲଖାନାର କଏଦୀର ଖବରଟା ଶେଷକୁ...... ।'

'ମୋତେର ଟିକିଏ ବୁଝାଇ କହ ଦିଅ ତ । ସ୍ତ୍ରୀ ଲୋକଙ୍କର ବୁଦ୍ଧି ଥାଉ କେତେ ହେବ ? ଭଗବାନ ତୁମ୍ଭମାନଙ୍କ ମଥାରେ ମସ୍ତିଷ୍କ ବଦଳରେ ଗୋବର ପୁରାଇ ଦେଇଛନ୍ତି । ଅନ୍ତତଃ ସାମାଜିକ ବ୍ୟବସ୍ଥାରେ...... ।'

ଅବାକ ହୋଇ ସିନୋର ପଚାରିଲେ, 'ଏଥି ଭିତରେ ପୁଣି ସାମାଜିକ ଅବସ୍ଥା କଥା ଆସିଲା କିପରି' ?

'ଆସେ ନାହିଁ କେମିତି, ଖୁବ୍ ଆସେ । ଏହି ଦେଖ ନା, ଆମେ ଯେଉଁମାନେ ମୁଣ୍ଡର ଝାଳ ତୁଣ୍ଡରେ ମାରି, ଅର୍ଥାତ୍ ଶ୍ରମର ରକ୍ତ ପାଣି କରି ଦୁଇଟା ପଇସା ଜମାଇଛୁ, ଆମ ଆଗରେ ବର୍ତ୍ତମାନ କଣ ରହିଛି ଜାଣ ? ଗୋଟାଏ ଅନିଶ୍ଚିତ ସଙ୍କଟମୟ ଭବିଷ୍ୟତ । ମଥାରେ ପଶୁଛି ନା କଥାଟା ?'

'କଣ ସେ କହୁଛ ତାର ମୁଣ୍ଡଗଣ୍ଡି କିଛି ନାହିଁ ।'

'ସେଇଥା ତ କହୁଚି । ତେଣୁ ମୁଁ କହେ, ତୁମ୍ଭମାନଙ୍କ ମଥାରେ ଗୋବର ଅଛି ।'

ଶେଷରେ ଗରଗର ହୋଇ ସିନୋର ଅସହ୍ୟ ଭାବରେ ଗୋଟାଏ ଚୌକି ଟାଣି ଆଣି ସ୍ତ୍ରୀଙ୍କ ଚୌକି ନିକଟରେ ଯାଇ ବସିଲେ । ସୁଜିରମାନେ ବାଟେ ବାଳ ପାତ କଥା ଶୁଣି ପଳାନ୍ତି, ସେହି ଭଳିରେ କର୍ଣ୍ଣ ଗଲାର ସ୍ୱର କମାଇ କହିବାକୁ ଲାଗିଲେ —

'ମାରୁଙ୍କୋଲୁ ସେଦିନ ଜାରଖାନାରୁ ବାହାରି ତଡ଼ି ଦେଇଥିଲେ ଜାଣ ? ତା ମଥାରେ ଜନ-ଜାଗରଣର ଭୂତ ପଶିଥିଲା ବୋଲି ।'

'ତାହା ଭିତରେ ଆଜ ତୁମର ସୁନ୍ଦର ଚୋର୍ଣ୍ଣ ମୋର ଭିତରେ କି ରହସ୍ୟ ଅଛି, କୁହ ତ ? ତଥାପି ସେହି ସାମ୍ୟବାଦୀ ଗୁଣ୍ଡାଟା ହାତରେ ତୁମେ ଝିଅକୁ ସମର୍ପି ଦେଲ ତ ?'

ସିନୋର ଅଧୀର ହୋଇ ଚିତ୍କାର କଲେ, 'କେଉଁ ? ମୋତେ ତୁଇ ପଦ କଥା କହିବାକୁ ଦେବ ତ ? ମୋର ହାତରେ ଝିଅ ଦେଇଛି କାହିଁକି—ଏଥି ତ ? ପ୍ରଥମତଃ, ମୋର ଚମତ୍କାର ଚିନ୍ତା, ତେଣୁ—ଦ୍ୱିତୀୟତଃ, ମୋର ସାମ୍ୟବାଦୀ, ତେଣୁ । ସବୁ ଗୋଟା ମୋ ମତଲବ ଅନୁସାରେ ଏତେ ଚମତ୍କାର ମିଳି ଯାଇଥିଲା ବୋଲି ତ ମତ ଦେଇଥିଲି । ଯେଉଁ ମଜୁରମାନେ ମୋ କାରଖାନାଗୁଡ଼ାକରେ କାମ କରନ୍ତି, ସେମାନେ ମୋତେ କାହିଁକି ଏତେ ଶ୍ରଦ୍ଧା କରନ୍ତି, ଜାଣ ? ମଥାରେ ବୁଦ୍ଧି ତ ନାହିଁ, ଜାଣିବ ବା କେମିତି ? ଛାଡ଼ ସେ ସବୁ କଥା—ଏଣିକି ସେ ସବୁ ଏ ବ୍ୟାପାରଟିର କୌଣସି ସମ୍ପର୍କ ନାହିଁ । ମୁଁ ତଣ୍ଟ ମାରୁଚ୍ଛୋର କଥା କହୁଥିଲି । ସେଇଟି ଭାଗ୍ୟଶାଳୀଙ୍କୁ ତ ତାକୁ ଚଢ଼ି ଦେଲି । ହତଭାଗା ଦେବାର ହୋଇ ବୁଝିଅଛେ ସୁଦ୍ଧା ବୁଲିଲା । ତା ପରେ ଯେମିତି ହାତାହାତି ଆରମ୍ଭ କଲା—ଯେମିତି ହେଲା, ତା ପରେ କଳାପାଣି । ବର୍ତ୍ତମାନ ମୁଁ ଯେଉଁ କଥା କହିବାକୁ ଯାଉଛି, ତାହା ହେଲା ଏହା : ମୁଁ ବଡ଼ଲୋକ ସତ—କିନ୍ତୁ ମୋର ତ ହୃଦୟ ବୋଲି ଗୋଟାଏ ପଦାର୍ଥ ଅଛି । ତେଣୁ, ମୁଁ ଠିକ୍ କରିଛି ଯେ ମାରୁଚ୍ଛୋର ସ୍ତ୍ରୀକୁ ଏଠାକୁ ଆଣାଇବି— ଗୋଟାଏ ତୃତୀୟ- ଶ୍ରେଣୀ ଟିକେଟ କାଟି ରୋମକୁ ପଠାଇ ଦେବି—ସେଠାକୁ ଯାଇ ସ୍ତ୍ରୀଲୋକଟି ମୋ ନାତିର ଦାଈ ବୃତ୍ତି କରିବ ।'

ସିନୋର ମାଜେଷ୍ଟ୍ରୁଜ୍ଜ ଅନେକ ଅନେକ ଯୁକ୍ତି ବାଢ଼ିବାକୁ ଯାଉଥିଲେ କିନ୍ତୁ ହଠାତ୍ ରହିଗଲେ । ସିନୋରଙ୍କ ଗାଲ ଉପରେ ଏକ ଅଦ୍ଭୁତ ଚାପ ଛାଇ । ସ୍ୱାମୀଙ୍କର ଅଭାବ୍ୟ ଯୁକ୍ତି ନିକଟରେ

ଯେତେବେଳେ ଖବସ୍ତ୍ର ହେବାର ସମ୍ଭାବନା ଥାଏ, ସେତେବେଳେ ମିନୋଷ୍ ସେଥିରୁ କମ୍ପ୍ୟୁଟ କମାବାର ଦାଗଟା ଅଭଲ୍ଲୁ ଛିର ଦୃଷ୍ଟିରେ ଗୃହଁ ରହନ୍ତି । ଏହି ତାଉଲା ଦୃଷ୍ଟି ତଳେ କିବେକୀ ପିନୋରଙ୍କର କଥା ମିଳାଇ ଯାଏ, ସେ ଅନେକ ବାତେଇ କଥା ବକିବାକୁ ଆରମ୍ଭ କରନ୍ତି । ସେ ଯଥା ସମ୍ଭବ ଅନେକ ଆଗରୁ ଆଲୋଚନା କମାଇ ଘଣ୍ଟା ବଜାଇ ଗୃହସ୍ୱାମୀକୁ ଡାକିଲେ—

‘ଲପ୍‌ସକୁ କହ, ଯେମିତ ଏଖଣି ଆସି ମୋ ସହିତ ଦେଖା କରେ ।’

ଲପ୍ସି ଏକାଧାରେ କର୍ଆନ ଓ ଗୃହର । ଦେହରେ ଖୋଟ କାହିଁ, କମିଜର ହାତ ଗୁଞ୍ଜା ହୋଇଥିଲା । ଲପ୍ସି ଆସି ଦୁଆର ଭିତରେ ଠିଆ ହେଲା । ଉଡ଼ାଙ୍କର ଡାକ ପଡ଼ିଲେ ଲପ୍ସି ଦା ବାହାର କରି ହସେ— ଏହା ତାର ସ୍ୱଭାବ । ତାହାର ମୁହଁ ଉପରେ ପ୍ରଥମରୁ ପିନୋରଙ୍କର କେମିତି ଏକ ଆସ୍ଥା ଜନ୍ମି ଯାଇଛି ।

‘ଡତ୍ତ ମାଲୁକ୍ଷୋର ସ୍ତ୍ରୀ କେଉଁଠି ଥାଏ ଜାଣୁ ?’

‘ଆଜ୍ଞା ହଁ, ବୁଝିଛି’— ଲପ୍ସି କହିଲା । ଗୋଟାଏ ଶବୋଧ ହସରେ ତାର ମୁଖ-ମଣ୍ଡଳ ଉଦ୍‌ଭାସିତ ହୋଇଗଲା ।

ଠିକ୍ ସେହି ମୁହୂର୍ତ୍ତରେ ଲପ୍ସିର ବୁଦ୍ଧିକୁ ତ ହସ କରିବା ଭଳି ଅବସ୍ଥା ପିନୋରଙ୍କର ନ ଥିଲା । ‘କଣ ବୁଝିଲୁ, ହତଭାଗା ?’ ସେ ପାଟି କଲେ ।

ଲପ୍ସି ଏପରି ଏକ ସଲଜ୍ଜ ଭଙ୍ଗୀ କଲା, ଯେମିତିକି କଥା ଭା ପିଠି ଥାପୁଡ଼େଇଛନ୍ତି । କହିଲା, ‘ତାକୁ ଯାଇ କହିବି, ହଜୁର ।’

‘କହିବୁ, ଏଖଣି ଏଠାକୁ ଆସିବ, ତାହା ସାଙ୍ଗରେ କଥା ଅଛି ।’

କିଛି କ୍ଷଣ ପରେ ପିନୋର ତାଙ୍କ ଗୃହର ଅଦ୍ଭୁତ ତତ୍ପରତାର ପ୍ରମାଣ ପାଇଲେ । ସେ ଓ ପିନୋର ...

ଭୋଜନ ଶେଷ କରି ନାହାନ୍ତି, ଏପରି ସମୟରେ ଜଣେ ସ୍ତ୍ରୀ ଲୋକ ଆସି ଖାଇବା-ଘରେ ପ୍ରବେଶ କଲା । ତା କୋଳରେ ଦୁଇ ମାସର ଶିଶୁଟିଏ । ଏ ଆଉ କେହି ନୁହେଁ— ଡନ୍ ମାଲୁଚେଲ୍ଲୋର ସ୍ତ୍ରୀ ଅନ୍ନିଚିଆ ।

ସିନୋରଙ୍କ ପାଦ ତଳେ ପଡ଼ି ସ୍ତ୍ରୀ ଲୋକଟି କହିବାକୁ ଲାଗିଲା, 'କର୍ତ୍ତା ବାବୁଙ୍କର ଦୟାର ଶରୀର । ଆପଣଙ୍କ ହାତ ଦୁଇଟି ଦିଅନ୍ତୁ, ମୁଁ ଥରେ ଚୁମ୍ବନ କରେ ।' ସ୍ୱଚ୍ଛ୍ରୀ ଓ ଗୃହକର୍ତ୍ରୀ ଦୁଆର ମୁହଁରେ ଠିଆ ହୋଇ ସବୁ ଦେଖୁଥାଆନ୍ତି । ସେମାନଙ୍କ ଆଗରେ ଲୁସି ଠିଆ ହୋଇଥାଏ, ମୁଖ-ମଣ୍ଡଳରେ ତାର ଆକର୍ଣ୍ଣ-ବିସ୍ତୃତ ଅହ୍ଲାଦର ହସ ।

ସିନୋର ମାନଫ୍ରେଡ଼ିଙ୍କ ମୁଖରେ ଦ୍ୱନ୍ଦ୍ୱର ରେଖା ଫୁଟି ଉଠିଲା । ଏହି ହଠାତ୍ ଆବିର୍ଭାବରେ ସେ ଯେତେ ଅବାକ ହୋଇଛନ୍ତି, ସେତେ ବିରକ୍ତ ବି ହୋଇଛନ୍ତି । ଭ୍ରୂ କୁଞ୍ଚିତ କରି ସେ ହାତ ଘୁଞ୍ଚାଇ ନେଲେ, ଏବଂ ଦୁଆର ଆଡ଼କୁ ଅନାଇ ବଡ଼ ପାଟିରେ କହିଲେ, 'ବାହାର ଯାଅ ଏଠାରୁ । ଲୁସି, ତୁ ଯାଅ ନା । ଏଣେ ଆ । ଏହାକୁ କିଏ ଡାକିଛି କହ ତ ?'

ଅନ୍ନିଚିଆ ସେତେବେଳେ ଯାଏ ଆଣ୍ଠୁ ମାଡ଼ି ବସିଥିଲା । 'ଲୁସି କହିଲା— ତମେ ଫେରି ଆସୁଛ, ଆପଣ ତାକୁ ଜେଲରୁ ଖଲାସ କରି ଆଣୁଛନ୍ତି ।'

କଥା ଶୁଣି ସିନୋର ଚମକି ପଡ଼ିଲେ । 'ରହ, ଦେଖୁଛି ବଦମାସଟାକୁ ।' କହି ସେତେବେଳକୁ ଚମ୍ପଟ କଲାଣି ।

ସିନୋରଙ୍କ ଆଡ଼କୁ କରୁଣ ଭାବରେ ଅନାଇ ଅନ୍ନିଚିଆ ଅସ୍ତେ ଅସ୍ତେ ଉଠି ଛିଡ଼ା ହୋଇ, ଏବଂ ପଚାରିଲା, 'ତା ହେଲେ କଥାଟା ସତ ନୁହେଁ ?'

ଅନେକ କଷ୍ଟରେ ତାଙ୍କୁ ବୁଝାଇଗଲା ଯେ ସିନୋର ମାନଫ୍ରେଡ଼ିଙ୍କର ଏଥିରେ କୌଣସି ହାତ ନାହିଁ । ଇଚ୍ଛା ଥିଲେ ବି ସେ ତାଙ୍କୁ ଖଲାସ କରି ଆଣି ପାରିବେ ନାହିଁ । ସିନୋର ତାଙ୍କୁ ବୁଝାଇ କହିଲେ, 'ଦେଖ, ମୋ ଭେଣ୍ଟି କାରଖାନାରୁ ମୁଁ ତାଙ୍କୁ ତଡ଼ି ଦେଇଛି ସତ, କିନ୍ତୁ ତୁ ତ ନିଜେ ଦେଖିଛୁ ତାର କେତେ ଅପରାଧ ମୁଁ ଆଖି ବୁଜି ସହି ଯାଇଛି । ସହିଛି କି ନାହିଁ କି ? ତୋ ଆଡ଼କୁ ଅନାଇ । ପିଲା ଦିନୁ ତୁ ଏହି ଘରେ ମଣିଷ ହୋଇଛୁ । ଏରମିଲିଣ୍ଡାର ତୁ ଖେଳ-ସାଥୀ ଥିଲୁ । ଏ ସବୁ କଥା କଣ ମୁଁ କେବେ ପାଶୋରି ପାରେଁ ?'

ସିନୋର କଥା କହୁଥିଲେ, ଏଣେ ସିନୋରା ତୀକ୍ଷ୍ଣ ଦୃଷ୍ଟିରେ ଅଲିଭିଆକୁ ପରୀକ୍ଷା କରି ଦେଖୁଥିଲେ ଏବଂ ଭାବୁଥିଲେ : ହଁ, ଏ ଘର ପୋଷାକରେ ସେ ଖୁବ୍ ଭଲ ଦିଶିବ । ଲାଲ ରୁମାଲରେ ସୁନେଲି କେଶ ବନ୍ଧା, ଦେହରେ ନର୍ସର ପୋଷାକ ପିନ୍ଧା—ଭାରି ଭଲ ମାନିବ । ସେ ଯେମିତି କଳ୍ପନାର ଚକ୍ଷୁରେ ତାର ସମଗ୍ର-ସଜ୍-ଜେହେରା ମୂର୍ତ୍ତି ଭାବରେ ଦେଖିବାକୁ ପାଉଥିଲେ ।

ସବୁ କଥା ଶୁଣି ଅଲିଭିଆ ଯେମିତି ଆକାଶରୁ ପଡ଼ିଗଲା । ନିଜ ଶିଶୁଟିକୁ ସେମାନଙ୍କ ଆଗରେ ଧରି କହିଲା, 'ମୋ ପିଲାଟି—ତାର କଣ ହେବ ? ତାକୁ କିଏ ଦେଖିବ ?'

ଶିଶୁଟିକୁ ତା ବକ୍ଷରେ ଚିପି ଧରି ବିଚାରୀ ପୁଣି କାନ୍ଦିବାକୁ ଲାଗିଲା । 'ଧନରେ ମୋର, ଲହୁପିଣ୍ଡୁରେ, ତୋ ବାପା ଆଉ ଫେରି ଆସୁ ନାହିଁ ।' ଲୋତକପୂର୍ଣ୍ଣ ଚକ୍ଷୁରେ ସିନୋରାଙ୍କ ଆଡ଼କୁ ଅନାଇ ସେ କହିଲା, 'ତା ବାପା ତାକୁ ଦେଖି ନାହିଁ, ମୋ ପୁଅ ବି ବାପାକୁ ଦେଖି ନାହିଁ ।'

'ଏରମିଲିଣ୍ଡା ତୋତେ ଯେଉଁ ଦରମା ଦେବ, ସେଥିରୁ କିଛି ଖର୍ଚ୍ଚ କଲେ ତୋ ପିଲାଟିକୁ ଦେଖା ଶୁଣା କରିବା ପାଇଁ ଲୋକ ମିଳିବେ ।'

'ସିନୋରା ଏରସିଲିଅସ୍ଙ୍କ ନିକଟକୁ, ମୁଁ ତ ଖୁସି ହୋଇ ଯାଆନ୍ତି, କିନ୍ତୁ ସେ ଯେ ଅନେକ ଦୂର— ସେଇଠି ରୋମ !'

ସିନୋରା ମାନଫ୍ରେଡି ହସି ପକାଇଲେ, 'ଦୁଇ ଘଣ୍ଟାର୍ ବାଟରେ ! ଏ ହେଲା ରେଲ ଷ୍ଟିମରର ଯୁଗ । ଗାଡ଼ିରେ ବସିଲେ ହିଁ ହେଲା, ଦେଖୁଁ ଦେଖୁଁ ରୋମରେ ପହଞ୍ଚି ଯିବୁ ।'

ଅର୍ଲିଗିସ୍ଥା କହିଲା, 'ଆଜ୍ଞା, ତାହା ତ ଠିକ୍ । ମୁଁ ମଫସଲର ମୂର୍ଖ ସ୍ତ୍ରୀ-ଲୋକଟିଏ । କିଏ ଜାଣେ, କେଉଁଠି ବାଟ ହୁଡ଼ିଯିବ । ଗାଁ ଛାଡ଼ି କେଉଁ ଦିନ ଘରୁ ପାଦ ବାହାର କରି ନାହିଁ । ଆଉ ତାହା ଛଡ଼ା, ଭଉଣୀ ତ ଜାଣନ୍ତି, ମୁଁ ଓ ମୋର ଶାଶୁ ଗୋଟିଏ ଘରେ ରହୁଁ । ବିଚାରୀ ବୁଢ଼ୀ ମଣିଷ, ତାକୁ ବା ଏକା ଛାଡ଼ି ଯିବି କିପରି ? ତାଙ୍କୁ ବାରମ୍ବାର କହି ଯାଇଛି, ମୁଁ ଯେମିତି ତା ମାଆକୁ ଦେଖାଶୁଣା କରେଁ । ସେ କଷ୍ଟରେ ଯେ ଅଛି କିଏ କହିବ ? ଏଣେ ମୋର ଏଇ ପିଲାଟି, ତେଣେ ସତୁରି ବର୍ଷର ଏଇ ଝୁଣ୍ଟୁଣି ବୁଢ଼ୀ । କିଛି ଦିନ ହେଲା ଭାବୁଛି, କାହାର ହାତରେ ପିଲାଟିର ଭାର ଦେଇ ମୁଁ କେଉଁଠି ହେଲେ କିଛି ଗୋଟାଏ କାମ କରିବି । ଅଭାବର ସଂସାର; ଏଠା ସେଠା ବିକ୍ରି କରି କୌଣସି ମତେ ସଂସାର ଚଳାଉଛି । ଏପରି ଭାବରେ ଦିନ ଚାଲିଲେ ଆଉ କିଛି ଦିନ ପରେ ଲୁଟା ଗଣ୍ଡିଏ ବି ଘରେ ରହିବ ନାହିଁ । ବାହାଘର ସମୟରେ ତାଙ୍କ କେତେ ଶଉକ କରି ଘର ସଜାଇ ଥିଲା । ଏମିତି କିଛି ଦାମିକା ଜିନିଷ ନୁହେଁ, କିନ୍ତୁ ଶଉକର ଜିନିଷ ତ । ଫେରି ଆସି ସେ ଯେତେବେଳେ ଦେଖିବ ଘର ଦୁଆର ଏକବାରେ ଫାଙ୍କା, ମୁଁ ସେତେବେଳେ ତାକୁ କଣ କହିବି ? କିନ୍ତୁ ବୁଢ଼ୀ କଣ ମୋତେ କାମ କରିବାକୁ ଦେବ ? ତାର ଯେଉଁ ଜମାନା, ଲୋକଙ୍କ କଥା କାନକୁ ନେବ ନାହିଁ । ତଥାପି ସିନୋରା ଏରସିଲିଅସ୍ଙ୍କ କାମରେ ଯୋଗ ଦିଅନ୍ତି··· ଅଚ୍ଛା, ଗୋଟାଏ କାମ କରାଯାଉ, ଶାଶୁଙ୍କୁ ଥରେ ପଚାରି ଦେଖେ ।'

'କିନ୍ତୁ ଜବାବଟା ଜରୁରୀ ଦରକାର । କାଲି ଭିତରେ ଗୁଳା ଯିବାକୁ ହେବ ।'

ଅଲିଭିସ୍କୀ ମହା ଅଡୁଆରେ ପଡିଲା । 'କାଲିକି ? ହେଉ, ଯାଇ ପାରିବ କି ନା କାଲି ଆସି ଜଣାଇବି ।' ଏହା କହି ସେ ଗୁଳିଗଲା ।

ନିକଟବର୍ତ୍ତୀ ଗୋଟାଏ ଟେଳରେ ସେମାନେ ଥାଆନ୍ତି । ଇତିମଧ୍ୟରେ ଲିସିର ବୁଢାରୁ ମିଥ୍ୟା କନ୍‌ଫେବ ପଢ଼ା ସାରା ବସ୍ତି ହୋଇ ଯାଉଛି ଯେ ଛତ୍ ଖଲସ ନୋଟିଛି । ଡିଗ୍ଲର ବୁଢ଼ୀମା ସେମାନଙ୍କର ଶ୍ରେଷ୍ଠ ଏକ-ତାଲା ଘରର ଗୋଟାଏ କୋଣରେ ଶୀତରେ ଥୁରୁ ଥୁରୁ ହୋଇ ନିଆଁ ପୁହୁଁଇଛି । ଦୋର ସ୍ତ୍ରୀଲୋକମାନେ ଆସି ତା ଗୁହ ପଟେ ଭିଡ଼ କରି ଠିଆ ହେଲେ । ସମସ୍ତେ ଏକ ବାକ୍ୟରେ ଫିନୋର ମାନ୍‌ଫନଙ୍କର ଗୁଣ ଗାଇବା ଆରମ୍ଭ କରିଦେଲେ । 'କି ତାଙ୍କର ଦମ୍ଭୁ ଲ ଶରୀର ।' ବୁଢ଼ୀର ମଥାଟା ବଙ୍କ ଉପରେ ଝୁଲି ପଡ଼ିଛି । ମଝିରେ ମଝିରେ ଥରେ ଅଧେ ହୁଁ ହାଁ ଶବ୍ଦ କରୁଛି । ତାହା ମୁହଁରେ କି ବିରକ୍ତିରେ ଠିକ୍ ବୁଝାଯାଉ ନାହିଁ । ଚକ୍ଷୁରେ କିନ୍ତୁ ହେମିତ ଅନ୍ଦେହର ଦୃଷ୍ଟି ।

ଇତିମଧ୍ୟରେ ଅଲିଭିସ୍କୀ ଆସି ଦୁଆର ମୁହଁରେ ଠିଆ ହୋଇଛି । ତାହା ଠାରୁ ସବୁ କଥା ଶୁଣିବା ପରେ ଫିନୋରଙ୍କର ଗୁଣଗାନ ଏକ ମୁହୂର୍ତ୍ତରେ ବନ୍ଦ ହୋଇଗଲା । ବୁଢ଼ୀ ଏଥର ମୁହଁ ଟେକି ପଡ଼ୋଶୀ-ମାନଙ୍କ ଆଡ଼କୁ ଅନାଇଲା । ଚକ୍ଷୁରେ ତାର କି ତୀବ୍ର ଧିକ୍କାର ଦୃଷ୍ଟି । ମାନଫ୍ରିନ ଙ୍କ ତିରସ୍କାର କରୁଛନ୍ତି ଶୁଣି ସେ କମ୍ପ କମ୍ପ ଉଠି ଠିଆ ହେଲା । ଟୋହ୍ଲୁ ପଚାରିଲା, 'କି ଜବାବ ଦେଲ ?'

ଅଲିଭିସ୍କୀ ତାଠାର ଦୃଷ୍ଟିରେ ପଡ଼ୋଶୀମାନଙ୍କ ଆଡ଼କୁ ଅନାଇଲା । ଜବାବଟା ଏହା — ତୁମେମାନେ ଯାଇ, ବୁଢ଼ୀକୁ ବୁଝାଇ ଦିଅ, ଏହି କାମଟା ଛାଡ଼ିଦେବା ମୋ ପକ୍ଷରେ ଉଚିତ ହେବ ନାହିଁ ।

ଶାଶୁଙ୍କ କଥାର ଉତ୍ତରରେ ସେ କହିଲା, 'ମୁଁ କହୁଛି ତୁମକୁ ଅସ୍ପତାଳ ନେଇଯାଅ ।'

ବୁଢ଼ୀ ରାଗରେ ଚିତ୍କାର କଲା, 'ସେ ସବୁ ହେବ ନାହିଁ, କୌଣସି ମତେ ହେବ ନାହିଁ କହି ଦେଉଛି ।'

ଆଉ ଥରେ ଅନୁନୟର ଦୃଷ୍ଟିରେ ପଡ଼ୋଶୀମାନଙ୍କ ଆଡ଼କୁ ଅନାଇ ଅଙ୍କିତା କହିଲା, 'ମୁଁ ତ ଯିବାକୁ ଚାହେଁ ନାହିଁ, କିନ୍ତୁ...'

ଏଥର ଜଣେ ଦୁଇ ଜଣ ଆସି ବୁଢ଼ୀକୁ ବୁଝାଇବାକୁ ଲାଗିଲେ—ଯଦି ବୋହୂ ଏ ସୁଯୋଗ ଛାଡ଼େ, ତା ହେଲେ ଖୁବ୍ ବୋକାମୀ ହେବ । ସେଠି କାମ କଲେ ଏହି ତିନି ପ୍ରାଣୀଙ୍କର ଗୋଟାଏ ବ୍ୟବସ୍ଥା ହେବ ।

ସେମାନଙ୍କ ମଧ୍ୟରୁ ଜଣେ କୋଳରେ ଶିଶୁଟିଏ ଧରି ଆସିଥିଲା । ପିଲାଟିକୁ ଦୁଧ ଦେଇଁ ଦେଇଁ ସେ କହି ପକାଇଲା, 'ତୁ କିଛି ଚିନ୍ତା କରନା, ମୁଁ ତୋ ପିଲାଟିକୁ ଦେଖାଶୁଣା କରିବି ।' ଏହି ଦେଖ କହି ପିଲାଟିର ମୁହଁରୁ ଦେବୁଥିବା ଟିଣ ଅଣି ଦୁଧକୁ ଚେପିକା ଧରି ଚିପିଦେଲା । ପଚ୍ ପଚ୍ ହୋଇ ଦୁଧର ଟୋପା ଆସି ମୁହଁରେ ଆଖିରେ ପଡ଼ିବାକୁ ଲାଗିଲା । ଏ କାଣ୍ଡ ଦେଖି ସମସ୍ତେ ହସି ହସି ଗଡ଼ିଗଲେ ।

କିନ୍ତୁ ବୁଢ଼ୀ ସହଜରେ ଥିନବାର ପାତ୍ରୀ ନୁହେଁ । ସେ କାହାର କଥା କାନକୁ ନେଲା ନାହିଁ । ଗଳା ଫଟାଇ ଚିତ୍କାର କରି ସେ ତା ବୋହୂକୁ କହିଲା, 'ଯିବୁ ତ ମୋ ମଥା ଖାଇବୁ । ମୋ କଥା ନ ଶୁଣିଲେ, ଦେଖ୍ ଭଲ ହେବ ନାହିଁ । ମୋ ଅଭିଶାପରେ ତୋର ସର୍ବନାଶ ହେବ ।'

ଏଣିକି ମୋର ଷ୍ଟେସନକୁ ଆସିଛି—ନେପାଳ୍‌ଗଞ୍ଜ ଗାଡ଼ି ଆସିବାକୁ ଡେରି ନାହିଁ । ମୋର ଲେଖକା କାଗଜ, କଲମ ବୁଝିଛି

ଚଢ଼—ଖଣ୍ଡିଆ ଶରୀର । ଦେଖିଲେ ମନେ ହୁଏ ସନ୍ଧିବାତର ରୋଗ ଅଛି । ଶୀର୍ଣ୍ଣ ମୁଖ ଜାଣ ଦାଢ଼ୀରେ ଆଚ୍ଛନ୍ନ । ଅକ୍ଟୋପସ ଭଳି ତାର ବାଳୁ ବାଳରୁ ଲାଗିଲାଣି । କମାଗଜ-ଚଷମାଟା ନାକ ଉପରେ ସିଧା ବସାଇବାକୁ ସେ ଚେଷ୍ଟା କରୁଛନ୍ତି । ରହି ରହି ପକେଟ ଅଣ୍ଡାଳୁଛି, ସବୁ ମିଶି କେମିତି ଏକ ଅସ୍ଥିର ଭାବ । କୋଟ ଓ ଓଭରକୋଟର ପକେଟଗୁଡ଼ିକ ଖବର କାଗଜରେ ଭରପୁର ।

ଜଣେ ରେଲ କର୍ମଚାରୀ ପାଖକୁ ଯାଇ ସେ ପଚାରିଲା: 'ଆଚ୍ଛା ମହାଶୟ, ନେପଲ୍‌ସର ଗାଡ଼ିଟା ଛାଡ଼ିବ କେତେବେଳେ ଅଥବା—ଛାଡ଼ି ପାରିବେ ?'

'ଗାଡ଼ି ତିରିଶ ମିନିଟ ବିଳମ୍ବ ।'

'କଣ କହୁଛନ୍ତି, ମହାଶୟ । ହେବ ତ, ଖାଲି କଣ କହନ୍ତି ଇଟାଲିଆନ ଗାଡ଼ି । ଯା-ଇଚ୍ଛା-ତା ବ୍ୟାପାର' ।

ଏଣେ ତେଣେ ଚାଲବୁଲି କରି ଶେଷରେ ସେ ଯେମିତି—ସେମିତି ଗୋଟାଏ ସ୍ଥାନରେ ବସି ପଡ଼ିଲା । ଗୋଟାଏ ଘଣ୍ଟା ବି ଗଲା ନାହିଁ ।

'ଶେଷକୁ କଣ ନା ଗୋଟାଏ ଧାଡ଼ି ପାଇଁ ଉମେଦାରୀ କରିବାକୁ ହେବ । ସେ କେତେବେଳେ ଆସି ପହଞ୍ଚିବ, ତାରି ଅପେକ୍ଷାରେ ବସି ରହିବାକୁ ହେବ । ଯା-ଇଚ୍ଛା-ତା ବ୍ୟାପାର ।'

ଏରମିଲିଓ ଆଜିକୁ ପ୍ରାୟ ଦୁଇ ବର୍ଷ ହେଲା ରୋମରେ ଅଛି, ସେମାନଙ୍କର ବିବାହ ପର ଠାରୁ । ସ୍ତ୍ରୀ ପାଖ ଛାଡ଼ି ଯାଇନି, ନା ଆଉ କେଉଁଠି ଯାଇଛି । ଘରର ସାମାନ୍ୟ ଜିନିଷଟିଏ କିଣିବାକୁ ଯିବା ପାଇଁ ବି ତାର ସାହସ ନାହିଁ । ଦୁଇ ପାଦ ବାହାରକୁ ବଢ଼ାଇଲେ ହିଁ ଗଲେ ତାର ମଥା ଉପରେ ଯେମିତି ଆକାଶ ଭାଙ୍ଗି ପଡ଼େ—ସେ ଯେମିତି ସିସିଲିର ମଫସଲରୁ ଏହି ଭଲ ସହରକୁ ଆସିଛି । ଘରେ ବସି ବସି ତାର ଏକମାତ୍ର କାମ ବନ୍ଧୁମାନଙ୍କୁ ଗାଳିଦେବା । ସକାଳୁ ଆରମ୍ଭ ହୁଏ ଯେ

ଶୋଇବାକୁ ଯିବା ଯାଏ ତାହା ଚାଲେ । ଏକବାଗିଆ ବିନିଭିଣିଆ ସ୍ୱରରେ ଗାଳି ଦେଉଛନ୍ତି ତ ଦେଉଛନ୍ତି । ତାର ଗାଳି ଗୁଡ଼ିକ ମଧ୍ୟରେ କୌଣସି ଅର୍ଥ ନାହିଁ, ଯୁକ୍ତି ନାହିଁ । ଏହାହିଁ ମୋର ନିକଟରେ ସବୁ ଠାରୁ କ୍ଳାନ୍ତିକର । ତାର ଝଗଡ଼ାର ଆଉ ଗୋଟାଏ କାରଣ ହେଲା ଏରପିଲ୍ୟାର ଈର୍ଷା, ଏ ତାର ପ୍ରେମର ଈର୍ଷା ନୁହେଁ, ଖାଲି ବଦ୍‌ମିଜାଜ ।

ମୋର ବସି ବସି ଭାବୁଛି, 'ସେ ମନେ କରେ ମୁଁ ତାକୁ ଭଲ ପାଏ ନା । କେଉଁଥି ପାଇଁ ଭଲ ପାଇବି ? ଇଚ୍ଛା କରି ଦୁଃଖ ଗୋଟାଇବା ଯେମିତି ତାର ସ୍ୱଭାବ—ସେଥିରେହିଁ ସେ ଆନନ୍ଦ ପାଏ । ପଦେ ମିଠା କଥା ନାହିଁ, ଟିକିଏ ଆଦର ନାହିଁ··· ସବୁବେଳେ ସନ୍ଦେହ ! ଭଳାହୁଣ୍ଡ, ବଦମୁହାଁ ! କଣ ଦେଖି ଯେ ତାକୁ ବାହା ହୋଇଥିଲି, ଏବେ ତାହା ଭାବୁଛି । ଯା-ଇଚ୍ଛା-ତା ବ୍ୟାପାର !'

ନାକର ଦଣ୍ଡା ଉପରେ ଚଶମାଟା ବସାଇ ପକେଟରୁ ଖଣ୍ଡିଏ ଖବର କାଗଜ ବାହାର କରି ସେ ପଢ଼ିବାକୁ ଲାଗିଲା ।

ଏଣିକି ମୋର ସବୁଥିରେ ବିରକ୍ତି । ସ୍ତ୍ରୀ ସହିତ ପଡ଼େ ନାହିଁ— କାଗଜ ପଢ଼ିଲେ ବି ସ୍ୱସ୍ତି ନାହିଁ । ଗୋଟିଏ ଗୋଟିଏ ଖବର ପଢ଼ୁଛି ଆଉ କ୍ରମାଗତ ଓଲଟାଇ ଯାଉଛି, 'ଯା-ଇଚ୍ଛା-ତା ବ୍ୟାପାର ।' ତଥାପି ପଢ଼ିବା ଛାଡ଼େ ନାହିଁ । ରୋମ, ମିଲାନ, ନେପଲ୍‌ସ, ଟୁରିନ, ଫ୍ଲୋରେନ୍‌ସ— ଏହିସବୁ ସହରର ନାମଜାଦା ଖବର କାଗଜ ଗୁଡ଼ାକ ସଦାବେଳେ ତାର ପକେଟରେ । ପ୍ରତ୍ୟେକ କାଗଜ ଆମୂଳଚୂଳ ନ ପଢ଼ିବା ଯାଏ ତାର ଭାତ ହଜମ ହୁଏ ନାହିଁ । ସେ କହେ 'କାଗଜ ପଢ଼ିବା ମୋ ଯକୃତର ଔଷଧ ।' ଡାକ୍ତର ଠିକ୍ ତାର ବିପରୀତ କଥା କହେ । ବସି ବସି ପଢ଼ାଶୁଣା କରି ତାର ଯକୃତର ଦୋଷ ହୋଇଛି । ଔଷଧ ଖାଇବ, ଚଲାବୁଲା ଛାଡ଼ିଦେଲ ସେ ଯେଉଁ ଦାମ୍ପତ୍ୟ ଜୀବନର

ମାଧୁରୀ ମଧ୍ୟରେ ବୁଦ୍ଧି ରହିଥାନ୍ତା, ତାହାହେଲେ ତାହା ତାର ସ୍ୱ ପକ୍ଷରେ ଖୁବ୍ ବେଶି ଭଲ ହୋଇ ନ ଥାନ୍ତା । ଏଭଳି ଲୋକ ସହିତ ସମୟ କଟାଇବା ଅପେକ୍ଷା ଖବର କାଗଜ ପଢ଼ିବା ଢେର୍ ଭଲ ।

'ହତଭାଗା ଗାଡ଼ିଟା କେବଲ୍‌ସବୁ ଆସିବ ନାହିଁ ନା କଣ ? ଘଣ୍ଟା ଆଡ଼କୁ ଅନାଇ ଧଡ଼୍ କରି ସେ ଉଠି ପଡ଼ିଲା : ସର୍ବନାଶ, ସନ୍ଧ୍ୟା ହୋଇ ଗଲାଣି ! ସେ ହଠାତ୍ ଯାତ୍ରୀମାନଙ୍କର ପ୍ରସ୍ଥାନ-ଫାଟକ ନିକଟକୁ ଚାଲି ଠିଆ ହେଲା । ସ୍ତ୍ରୀ-ଲୋକଟି କାହିଁ ? କିଛିକ୍ଷଣ ପୂର୍ବରୁ ନିଶ୍ଚୟ ପହଞ୍ଚି ଯାଇଛି— କୁଆଡ଼େ ଗଲା ? ଘରର ଠିକଣା ବି ତ ସେ ଜାଣେ ନାହିଁ ।

ବଡ଼ ଭାଗ୍ୟ ବୋଲିବାକୁ ହେବ, ସେ ତାକୁ ଜଲ୍‌ଦି ଖୋଜି ପାଇଗଲା । ଲଗେଜ ଘରେ ଉଙ୍କି ମାରିବା ମାତ୍ରେ ସେ ଦେଖିଲା, ଅଲିଭିୟା ତା ବାକ୍ସଟି ଉପରେ ବସି ସରସ-ନୟନରେ କାନ୍ଦୁଛି । ଲଗେଜ-ବାବୁମାନେ ତାକୁ ଆଶ୍ୱାସନା ଦେଇ କହୁଛନ୍ତି, ଥାନାକୁ ଯାଇ ପୋଲିସକୁ ଖବର ଦେଲେ ସବୁ ଠିକ୍ ହୋଇଯିବ ।

'ଅଲିଭିୟା ।'

ମୋହନର ଗଳାର ସ୍ୱର ଶୁଣି ଅଲିଭିୟାର ପିଣ୍ଡରେ ଯେମିତି ପ୍ରାଣ ପଶିଲା । ଆନନ୍ଦରେ ଅଧୀର ହୋଇ ସେ କହିବାକୁ ଲାଗିଲା— ମୋର ଉପରେ ପଡ଼ିଯିବ କି ଆଜ ! 'ଆଜ ଟିକିଏ ଯାଇଥିଲେ ଏକବାରେ ହଜି ଯାଇଥାନ୍ତି । ଭାଗ୍ୟକୁ ଜୋରିବାକୁ ଅସିଗଲେ !'

'ଶଶୁର କଣ ଆମ ଘର ଠିକଣାଟା ତୁମକୁ କହି ନାହାନ୍ତି କି ? ଖଣ୍ଡିଏ କାଗଜରେ ଲେଖିଦେଇ ପାରିଥାନ୍ତେ ତ ।'

ମୋହନର ଧକ୍କାଟା ସମ୍ଭାଳି ନେଇ, ଲୁହର ଜଳ ପୋଛି ପୋଛି ଅଲିଭିୟା କହିଲା, 'ମୁଁ ତ ପଢ଼ି ଜାଣେ ନାହିଁ, ସେଥିପାଇଁ ଲେଖିଦେଇ ନାହାନ୍ତି ।'

'ଯା-ଇଚ୍ଛା-ତା ବ୍ୟାପାର । ଠିକଣାଟା ହାତରେ ଥିଲେ ଯେ କୌଣସି ଗାଡ଼ିବାଲା ତୁମକୁ ଘରେ ପହଞ୍ଚାଇ ଦେଇ ପାରିଥାନ୍ତା । ମୋତେ କଷ୍ଟ କରି ଏତେ ଦୂରର ଆସିବାକୁ ପଡ଼ି ନ ଥାନ୍ତା । କପାଳରେ ଦୁଃଖ ଥିଲେ, ତା ନ ହେଲେ କଣ ଆଉ ଆସିଥାନ୍ତି ? ପ୍ଲାଟଫର୍ମରେ ବସିଥିଲି, ତେଣୁ ନେପଲ୍‌ସର ଗାଡ଼ି କେତେବେଳେ ଆସିଲା ଜାଣି ବି ପାରିଲି ନାହିଁ ।'

ଘୋଡ଼ାଗାଡ଼ିରେ ବସୁଁ ବସୁଁ ସେ ତାକୁ ସାବଧାନ କରି ଦେଲା, 'ଖବରଦାର, ତୁମର ଏହି କଥା କାହାର ଗୋଚରହୋ ଏରଣିଲ ଯେମିତି ଟେର ନ ପାଏ । ଜାଣି ପାରିଲେ, ସାମାନ୍ୟ ବ୍ୟାପାର ପାଇଁ ସେ କୁରୁକ୍ଷେତ୍ର ଯୁଦ୍ଧ ସୃଷ୍ଟି କରିବ ।'

ଏଲିନୋରା ଆଉ ଖଣ୍ଡିଏ ଖବର କାଗଜ ବାହାର କରି ପଢ଼ିବାକୁ ଆରମ୍ଭ କଲା । ଆଲିଭିଆ ବିଚାରୀ ତା ଶରୀରଟା ତଥା ସମସ୍ତ ସଙ୍କୁଚିତ କରି କୋଣରେ ପଶି ହୋଇ ବସିଲା । ମୁନିବଙ୍କ ସାଙ୍ଗରେ ଏକା ଗୋଟିଏ ଗାଡ଼ିରେ ଲଟାଲଗି ହୋଇ ବସି ଯିବାଟା ତାହା ନିକଟରେ ଅଭାବନୀୟ ବ୍ୟାପାର । ବିଚାରୀ ଲଜ୍ଜା ଓ ଭୟରେ ଜଡ଼ସଡ଼ । ଅବଶ୍ୟ ଏହି ଭାବଟା ଶୀଘ୍ର କଟିଗଲା । ନିତାନ୍ତ ମଫସଲି ଝିଅ, ଦୈନନ୍ଦିନ ଜୀବନର ସଙ୍କୀର୍ଣ୍ଣ ଗଣ୍ଡି ମଧ୍ୟରୁ ସେ କେବେ ହେଲେ ବାହାରି ନାହିଁ । ରେଲରେ ଓ ଷ୍ଟିମାରରେ ଦୀର୍ଘ ପଥ ଅତିକ୍ରମ କରି ନାନା ନୂତନ ବ୍ୟାପାର ଦେଖି ତାହୃଦ ଏକବାରେ ହଡ଼ବଡ଼େଇ ଯାଉଛି । ତା'ର ଭାବନା ଚିନ୍ତା ସବୁ ଓଲଟେଇ ଯାଉଛି । ଶେଷ ଅବଧି ଷ୍ଟେସନରେ ପହଞ୍ଚି ସେ ଯେମିତି ନିଶ୍ୱାସ ନେଇ ବଞ୍ଚିଲା । କେବେ ବି ରହିଁ ରହି ତାର ମନେ ପଡ଼ୁଛି—ସମୁଦ୍ରରେ କି ଢେଉ ଆଉ ରେଳଗାଡ଼ି କେମିତି ଜୋରରେ ନ ଦୌଡ଼ିଲା ! ପ୍ରାଣ ଧରି ସେ ଯେ ବଞ୍ଚିକରି ଆସିଲା, ଏହା ତାର କୌଣସି ପୁଣ୍ୟବଳ, ଭାଗ୍ୟ ବଳରୁ ।

ଏବେ ଏଇ ନୂଆ ରାଜ୍ୟକୁ ସେ ଆସିଛି । ଇଚ୍ଛା ହେଲେ ଏଣେ ତେଣେ ଅନାଇ ଦେଖନ୍ତା, କିନ୍ତୁ ସେ ଏତେ କ୍ଳାନ୍ତ ଯେ ସେ ଭଲ କରି ଚିକିଏ ଚାହିଁ ପାରୁ ନାହିଁ । ସେମ ହେଲା ତୀର୍ଥସ୍ଥାନ, କେତେ ଲୋକ ଏଠାକୁ ପୁଣ୍ୟ କରିବାକୁ ଆସନ୍ତି । ସ୍ଥାନଟା ଭଲ ଭାବରେ ଦେଖିବାକୁ ହେବ । ସେ ତ ଏଠାରେ ଅନେକ ଦିନ ରହିବ । ତାକୁ ବହୁତ ସମୟ ବି ମିଳିବ । ବର୍ତ୍ତମାନ ତାର ଆଉ ଭାବନା ନାହିଁ ।' ସାଙ୍ଗରେ ଚିହ୍ନା ଲୋକ ରହିଛନ୍ତି, ଆଉ ଏମିତି ତ ସିଁନୋରିନାଙ୍କ ସହିତ ସାକ୍ଷାତ ହେବ ! ତା ଆଖି ଆଗରେ ଗାଆଁର ଛବି ଭାସିଗଲା—ତାର ଚିକି ପୁଅ, ତାର ବୁଢ଼ା ଶାଶୁ ମନେ ପଡ଼ିଲା । ସେ ଚିନ୍ତାଗୁଡ଼ିକୁ ଜୋରରେ ହଟାଇ ଦେବାକୁ ଚାହିଁଲା । ପ୍ରଥମ ପ୍ରାପ୍ତିର ମୁହୂର୍ତ୍ତଟା ସେ ଦୁର୍ଭାବନାରେ ଭାରାକ୍ରାନ୍ତ କରିବାକୁ ଚାହେଁ ନାହିଁ ।

ମୋର ହଠାତ୍ ତାକୁ ପଚାରିଲି, ଜାହାଜ ଯେତେବେଳେ ନେପଲ୍‌ସ ବନ୍ଦରରେ ପହଞ୍ଚିଲା, ତୁମକୁ କେହି ନେବାକୁ ଆସିଥିଲେ ?'

'ଆଜ୍ଞା ହଁ, ଜଣେ ବାବୁ ଆସିଥିଲେ । ଚମତ୍କାର ଭଦ୍ରଲୋକ ! ଆପଣଙ୍କୁ ତାଙ୍କର ନମସ୍କାର ଜଣାଇବାକୁ ଆଜ୍ଞା କରିଛନ୍ତି ।'

'ଆଜ୍ଞା କରିଛନ୍ତି ?'

'ଆଜ୍ଞା ହଁ ।'

'ଅନୁରୋଧ କରିଛନ୍ତି, କୁହ ।'

'ଆଜ୍ଞା, ମୁଁ ସାମାନ୍ୟ ଲୋକ—ମୋତେ କଣ ଅନୁରୋଧ କରି ପାରନ୍ତି ?'

ଏଲିପ୍ସୋ ଅଧୀର ହୋଇ ଖବର କାଗଜର ପୃଷ୍ଠା ଓଲଟାଇବାକୁ ଲାଗିଲି । ଉପାୟ, ପୃଷ୍ଠା ଭର୍ତ୍ତି ଯାତଜାତ୍ର ଉତ୍ସବର ବର୍ଣ୍ଣନା ।

'ଆଜ୍ଞା, ମୋତେ କିଛି କହିଲେ ?'

'ନା, ସେଠା କିଛି ନୁହେଁ ।'

ଅର୍କିଡିଯ୍ନା ଟିକିଏ ଅବାକ ହୋଇଗଲା । 'ପୋର୍ଟବ୍ଲେୟାରରେ ଜଣେ ଭଦ୍ରଲୋକ ମୋତେ ଷ୍ଟିମାର ଯାଏ ପହଞ୍ଚାଇ ଦେବା ପାଇଁ ଷ୍ଟେସନକୁ ଆସିଥିଲେ । ଚମତ୍କାର ମଣିଷ !'

'ସେ ବି ମୋତେ ନମସ୍କାର ଜଣାଇବାକୁ ଅନୁରୋଧ କରିଛନ୍ତି ନା କଣ ?'

'ଆଜ୍ଞା ହଁ ।'

ମୋର ଖବରକାଗଜଟା ନୁଆଁଇ ଆଣି ଚଷମାଟା ନାକ ଉପରେ ବସାଇ ପଚାରିଲି, 'ତୁମର ସ୍ୱାମୀ ? ତାର ଖବର କଣ ?'

ଅର୍କିଡିଯ୍ନା ଦୀର୍ଘ ନିଶ୍ୱାସ ତ୍ୟାଗକରି କହିଲା, 'ଏବେ ବି ସେ ଖଲାସ ହୋଇ ନାହିଁ । ସେହି କଳାପାଣିରେ ଅଛି । ଆପଣ ତ ବୋର୍ଡରେ ଥାଆନ୍ତି—ଆପଣ ଯଦି ସରକାରଙ୍କୁ......।'

ମୋର ବାଧା ଦେଇ କହିଲି, 'ସେ ସବୁ ରାଜା-ମହାରାଜାଙ୍କ କଥା ମୋ ପାଖରେ କୁହ ନାହିଁ ।'

ଅର୍କିଡିଯ୍ନା ଅନୁନୟସୂଚକ ସ୍ୱରରେ କହିଲା, 'ଆପଣ ସରକାରଙ୍କୁ ଦି ସ୍ତବ ପଦ କଥା କହିଦେଲେ ସବୁ ଠିକ୍ ହୋଇଯିବ ।'

ମୋର ତେଲରେ ବାଇଗଣ ପଡିଲା ପରି କିଛି ଉଠିଲା, ଏବଂ ଖବରକାଗଜଟା ମୋଡ଼ିମାଡ଼ି ଝରକା ବାଟେ ବାହାରକୁ ଫୋପାଡ଼ି ଦେଲି, 'ଯା-ଇଚ୍ଛା-ତା ବ୍ୟାପାର ! ତୁମେ ସ୍ୱତନ୍ତ୍ର, ତୁମର ପ୍ରିୟ ସ୍ୱାମୀଙ୍କୁ କେବଳ ଦ୍ୱୀପାନ୍ତରକୁ ପଠା ହୋଇଛି ! କାହାକୁ ଯେ କେତେବେଳେ ପଠାଯାଏ, ତାର କିଛି ଠିକ୍ ନାହିଁ । ହୁଏତ ଦିନେ ମୋତେ ବି ପଠାଇ ଦେବେ ।'

ଅର୍କିଡିଯ୍ନା ଅବାକ ହୋଇଗଲା । କଥାଟା ତାର ବିଶ୍ୱାସ ହେଲା ନାହିଁ । 'ସେଠାକୁ ଭଦ୍ରଲୋକମାନଙ୍କୁ ବି ପଠାଯାଏ ନା କଣ ?'

ତାର ଅଙ୍କିତା ମୋହନଙ୍କୁ ଅସହ୍ୟ ମନେ ହେଲା । ସେ ଚିତ୍କାର କଲା, 'ତୁମେ ଚୁପ୍ କର ତ !' ସେ ମନେ ମନେ ଭାବିଲା, ସିମିଲରେ ଦାସ-ମନୋଭାବ ଏପରି ମଜ୍ଜାଗତ ଯେ ଛୋଟୋଟିଆ ଦେଶୀ ଲୋକମାନଙ୍କ ମଧ୍ୟରେ ଆତ୍ମସମ୍ମାନ ଜଗାଇବା ଅସାଧ୍ୟ ବ୍ୟାପାର । ତାର ମନଟା ଦବିଗଲା ।

ଗାଡ଼ି ଭଦ୍ରା ସିଷ୍ଟିନାରେ ମୋହନ ଘରର ଦୁଆର ମୁହଁରେ ଅଟକି ରହିଲା ।

ଟେକାଣ୍ଡ୍ର ଖଟ, ଉପରେ ଲାଲ ରଙ୍ଗର ଗୁଦୁଆ ବଳା । ଲେସ୍-ଦିଆ ତକିଆ ଉପରେ ଦେବକୀ ଅଙ୍କିତା—ଏଲିଅସ୍ମିଲ ଶୋଇଅଛି । ତାର ଚର୍ମ ଯେମିତି କଳା ହୋଇ ଯାଇଛି—ପ୍ରସବ ପରେ କ୍ଳାନ୍ତ ଶୀର୍ଣ୍ଣ ଚେହେରା ।

ଅନ୍ଧିଭିମ୍ବା ଦୌଡ଼ିଯାଇ ତାକୁ ଜାବୁଡ଼ି ଧରିଲା ।

'ଦିବୋଜିନା, ସିବୋଜିନା, ଏଇ ତ ମୁଁ ଆସିଗଲି । ଏତେ ଶୀଘ୍ର ତୁମ ନିକଟକୁ ଫେରିଆସି ପାରିବି, ସ୍ୱପ୍ନରେ ବି ଭାବି ନ ଥିଲି । ବର୍ତ୍ତମାନ କେମିତି ଅଛ ? ଖୁବ୍ କଷ୍ଟ ହୋଇଛି ନା ? କି ଦୁର୍ବଳା ହୋଇ ଯାଇଛ ! ଚିନ୍ତା କର ନାହିଁ । ଭଲ କରିବ କହୁଛି, ସବୁ ଭ ଭଗବାନଙ୍କ ଇଚ୍ଛା । ନାରୀର କପାଳରେ ଦୁଃଖ ଲେଖିଛନ୍ତି, ମୁକ୍ତି ପାଇବ କିପରି ?'

'ଜାଣି ପାରୁଛ ବରବନ୍ଧୁ ଦୁଆନା । ସବୁ ଶିଅଜାଙ୍କର ଏକ ସ୍ୱର । ନାରୀ ହୋଇ ଜନ୍ମିଛି, ତେଣୁ ଦୁଃଖ ପାଇବାକୁ ହେବ । ଅନ୍ଧକାର ଦ୍ୱାହି ଦେଇ ଦେଇ କି ଦଶା ହୋଇଛି, ଦେଖିପାରୁ ନାହିଁ ।

ମନୁଷ୍ୟମାନେ ସ୍ୱତନ୍ତ୍ର, ସେମାନେ ହେଲେ ପ୍ରଭୁ ଆଉ ଆମ୍ଭେମାନେ କେବଳ ସେମାନଙ୍କର ଦାସୀ। ଆମେ ଅଛୁଁ ସେମାନଙ୍କର ହୁକୁମ ତାମିଲ କରିବାକୁ। ମନକୁ ବୁଝ ଖେଳିବାର ସୁ ନାହିଁ। ସବଦା ଖୁସିବାକୁ ହେବ ଦେଖିଥିବେ ସେମାନେ ଖୁସି ହୁଅନ୍ତି, ଦେଖିଥିଲେ ସେମାନଙ୍କର ଆରାମ ହେବ। ସେମାନେ ପରା ଦେବତେ କଣ୍ଠୋ। ଶାନ୍ତୁ ମାର୍!'

କହିବା ବାହୁଲ୍ୟ, ଏଲିଗ୍ନୋକୁ ଲକ୍ଷ୍ୟ କରି ଏହିସବୁ ବାକ୍ୟ ବାଣ। ସେ ରାଗି ମାଗି ତାର ଖବରକାଗଜଟା ମୋଡ଼ିମାଡ଼ି ପରେ ଘରୁ ପଳାଇଲା।

ଆର୍କିଲିସ୍ୱା ବିସ୍ମୟ ଅପ୍ରସ୍ତୁତ ହୋଇ କହିଲା, 'ଆଜ୍ଞା, ମନୁଷ୍ୟ-ମାନଙ୍କର ତ ଦୁଃଖ କଷ୍ଟ ଅଛି।'

'ଅଜ୍ଞା, କି ସେମାନ ଦୁଃଖରେ— ଖାଅ ପିଅ ଆଉ ଫୁର୍ତ୍ତି କର। ସେମାନଙ୍କୁ ଟିକିଏ ଉଚିତ ଶିକ୍ଷା ଦେବା ଦରକାର। ସେଗତ ସବୁ ଏକ-ଅକ୍ଷିଅ— ।'

'ତାହା ଯାହା କହୁଲ। ସେମାନଙ୍କୁ ତ ଆଉ ପେଟରେ ଧରିବାକୁ ପଡ଼େ ନାହିଁ।'

'ଖାଲି କଣ ସେତିକି? ସାରା ଜୀବନ ଆମର ହାଡ଼ ଭଙ୍ଗାଇ ମାରନ୍ତି। ସମସ୍ତ ଜୀବନଟା ଉପରେ ସେମାର ସୁଣା ଜାତ ଓହ୍ଲାନ୍ତି।'

ଡାଗ ସବେ ଏଲିଗ୍ନୋ ମୋଟର ଗଳା ଶୁଣାଗଲା, 'ମନୁ ଦେଖ୍ କର୍ମକୁ ଯାଉ।'

ପର ମୁହୂର୍ତ୍ତରେ ଶୁଣାଗଲା ଅଉ ଜଣେ କିଏ କହୁଛି, 'ଆଜ୍ଞା, ଏହି ଯେ ମୁଁ, କଣ କହିବାକୁ ହେବ କହନ୍ତୁ।'

ଏବଏଲିସ୍ୱା ଟିକେ ଟେକା କରି ହସି ପକାଇଲା। ଆର୍କିଲିସ୍ୱାକୁ କହିଲା, 'ଆମର ଏଲିଙ୍ଗୁବର୍ଟୀ ଅଛି। ସେ ଟିକିଏ ବଦଳୁ, ଭଲ ଶୁଣିବାକୁ ପାଏ ନାହିଁ। ତାହାର ଗଳାର ଆବାଜ ମିଳଲେହିଁ ସେ ମନେ କରେ ସେ ତାଙ୍କୁ ଡାକୁଛନ୍ତି।' ଏବଥିଲିସ୍ୱା ପାଟି କରି ଡାକିଲା, । 'ମାର୍ଗେରିଟା।'

ବର୍ଷକ ବୁଢ଼ୀ ରୁକ୍ମଣୀଙ୍କ ମୁହଁ କଳା କରି ଦୁଆର ମୁହଁରେ ଆସି ଠିଆ ହେଲୁ । ମୁଖରେ ଅପ୍ରତିଭ ଭାବ, କାରଣ ସାଙ୍ଗ ସବୁ ମୋତେ ଅଣ୍ଡି ଲୁଲୁ କରି ତାକୁ ପ୍ରାୟ ପକଡ଼ାଇ ଆଣିଥିଲେ ।

ଏରସିଲ୍ଭ୍ୟା କହିଲା, 'ମାରଗେରିଟା, ଏଇ ଆମର ନୂଆ ଧାଙ୍ଗ, ବର୍ତ୍ତମାନ ଆସି ପହଞ୍ଚିଛି । ତାକୁ ତାର ଘର ଦେଖାଇ ଦିଅ ତ !'
ଆଲିଭିୟାକୁ କହିଲା, 'ଯା, ଗାଧୁଆ ପାଧୁଆ କରି ଆ । ଧୂଆଁ କଳା ମାଖି ତ ଗୋଟାଏ ଭୂତ ସାଜିଛୁ !'

ଆଲିଭିୟା ମଥା ବଢ଼ାଇ ଦର୍ପଣରେ ମୁହଁ ଦେଖି ଚିତ୍କାର କଲା, 'ବାପ୍‌ରେ, କି ଚେହେରା ହୋଇଛି !'

ରେଲର ଧୂଆଁରେ ତାର ମୁହଁ ତ କଳା ହୋଇ ଯାଇଥିଲା, ତା ଉପରେ ସେଇ ଯେ ଷ୍ଟେସନରେ ବସି କାନ୍ଦିଥିଲା ସେତେବେଳେ ଆଖିର ଜଳ ଓ କାଳି ମିଶି ମୁହଁରେ ପ୍ରାୟ ଗୋଟାଏ ବଢ଼ିଆ ରଙ୍ଗ ହୋଇ ଯାଇଛି । କିନ୍ତୁ ଟା ଧୋଇବାକୁ ଯିବ କିଏ ! ସେତେବେଳେ ଯେ ସିନୋରିନାକୁ ସମ୍ଭାର କାହାଣୀ କହୁ କୁହାଯାଉ ନାହିଁ । ତାର ଆଉ ତର ସହୁ ନାହିଁ, ସେତକବେଳେ କହିବାକୁ ହେବ । ରେଲରେ, ଷ୍ଟିମାରରେ କେଉଁଠି କଣ ଘଟିଥିଲା, ହାତଗୋଡ଼ ହଲାଇ ଚିତ୍କାର କରି ମୂଳରୁ ଶେଷ ଯାଏ ସବୁ କହିବାକୁ ଲାଗିଲା । ବର୍ଷକ ରୁକ୍ମଣୀଙ୍କ ଆଁ କରି ତାର କାଣ୍ଡ ଦେଖୁଛି । 'କଣ କହୁଛ ଭାଇ, ସମ୍ଭୀରେ ଛାତିରେ ଦୁଧ ଜମିଯାଇ ସ୍ତନ ଦୁଇଟା ଟଣଟଣ ହେବାକୁ ଲାଗିଲା । ଫାଟି ପଡ଼ିବ କି ଆଉ ! ଯନ୍ତ୍ରଣାରେ ମୁଁ ଚାନ୍ଦ ପକାଇଲି । ଗାଡ଼ିର ସବୁ ଲୋକ ପଚାରିବାକୁ ଲାଗିଲେ, ବ୍ୟାପାର କଣ, କଣ ହୋଇଛି ? ମୁଁ କଣ ମହିଁ ଖୋଲି କହୁ କହୁ ପାରୁଛି ? ଶେଷକୁ ସେମାନେ ସମସ୍ତେ ବୁଝି ପାରିଲେ । ତାର କଣ ହେଲା ଜାଣ ? ଗୋଟିଏ ବଦମାସ ପିଲା ତୁରନ୍ତ କହି ପକାଇଲା, ସେଥିରେ ଭାବନା

ଭଣ, ମୁଁ ଠଁ ଠଁ କରି ଏମିତି ଖାଇ ଦେବି । ପିଲାଟାକୁ ଯେମିତି ଏହା ମଜା ଲାଗିଲା, ସେ ମୋ ମୁଣ୍ଡ ଆଡ଼କୁ ହାତ ବଢ଼ାଇ ଦେଲା । ମୁଁ ତ ଭୟରେ ଖଟି କରି କାନ୍ଦୁ ପକାଇଲି, ତା ହେଲେ ମୁଁ ଗାଡ଼ିରୁ ଡେଇଁ ପଡ଼ିବି । ଭାଗ୍ୟକୁ ମୋ କଡ଼ରେ ଜଣେ ବୁଢ଼ା ବସିଥିଲା । ପରବର୍ତ୍ତୀ ଷ୍ଟେସନରେ ଗାଡ଼ି ଅଟକିବାରୁ ବୁଢ଼ା ମୋତେ ଆଉ ଗୋଟାଏ କାମରାକୁ ନେଇଗଲା । ସେଠାରେ ଗୋଟିଏ ସ୍ତ୍ରୀ-ଲୋକ ତାର ମାସର ଗୋଟିଏ ଛୁଆକୁ ଧରି ବସିଥିଲା— ରୋଗା ଝଣଝଣିକା ଦେଖେଇ । ବସି ବସି ସେହି ଛୁଆଟିକୁ ଦୁଧ ଦେଲି; ବ୍ୟଥାଟା ଧୀରେ ଧୀରେ କମିଗଲା ।'

ଏରସିଲ୍ଡ୍ସା ବର୍ତ୍ତମାନ ପୁଷ୍ପପୁର ସହରରେ ହୋଇ ଯାଇଛି । ଆନ୍ନିଜି ସ୍ୱାର ଗାଉଁଲି କଥାବାର୍ତ୍ତା ଓ ବ୍ୟବହାର ତାକୁ ଭଲ ଲାଗୁ ନ ଥିଲା । ସେ କହିଲା, 'ହୋଇଛି, ହୋଇଛି । ଏମିତି ଦୌଡ଼ିଯା, ଗାଧୋଇ ସାରି ଆ । ପରେ ବାବା-ମାଆଙ୍କର ଖବର ଶୁଣିବି । ଯା, ଆଁ କରି ଠିଆ ହୋଇ ରହିଲୁ କାହିଁକି ?'

'କିନ୍ତୁ ଆମ ଲୁନା ସୁନା ପୁଅ ? ତାକୁ ଥରେ ଦେଖିନିଏଁ, ତା ପରେ ଯିବି ।'

ଫୁଲଶେଯା ଦେଖାଇ ଦେଇ ଏରସିଲ୍ଡ୍ସା କହିଲା, 'ସେଇଠି ଅଛି । କିନ୍ତୁ ତୋର ସେହି କୁଳୁଟି ହାତରେ ମଶାରୀଟା ଛୁଇଁନା । ମାରିଦେବିଟା, ଏଣେ ଆ ନ, ପୁଅକୁ ଦେଖାଇ ଦେ ।'

ସୁନ୍ଦରପଟେ ରଙ୍ଗ-ବେରଙ୍ଗର ଫିତା, ଲେସ୍‌ର ବାହାର । ମଝିରେ ପିଲାଟି ଶୋଇଛି, ମୁହଁଟି ଲାଲ୍, କଦଳୀ ଦେଖେଇ । କି ଗସ୍ତ ଦେଖିବାକୁ । ଗାଡ଼ିରେ ଯେଉଁ ପିଲାଟିକୁ ଦୁଧ ଦେଇଥିଲା ତାଙ୍କୁ କ ପବିତ୍ର କରିଦେବ । ସେ ମୁହଁରେ କହିଲା, 'ବାଃ, କି ସୁନ୍ଦର ଦେଖିବାକୁ । କେମିତି ଶାନ୍ତ ଶିଷ୍ଟ ପିଲାଟି ପରି ଶୋଇଛି । ତୁମେ

ଦେଖିବ ଲୁହ, ପିଲାଟିକୁ କେମିତକା ଜବାନ କରିଦେବ । ମୋ ପୁଅଟି ବି ଠିକ୍ ଏମିତ ଥିଲା— ଠିକ୍ ଏହିକଳିଟିଏ ଦେଖିବାକୁ, ଯଦି ଏଖଣି ତାକୁ ଦେଖନ୍ତ'— ଆର୍ଲିଂଗିସ୍ନା ହଠାତ୍ ରହିଗଲା । ପୁଅର କଥା କହିବାକୁ ଯାଇ ତା ଚକ୍ଷୁରେ ଜଳ ଭରିଗଲା, ଗଳା ଘଡ଼ିଗଲା । 'ଯାଉନ୍ତୁ ଏବେ, ଏଥି ଆସିଲ ପରି ।' ରୁକ୍ମିଣୀ ସାଙ୍ଗରେ ସେ ପାଖ ଘରକୁ ଚାଲିଗଲା ।

ତାର ଇଚ୍ଛା ଥିଲା, ତତ୍କ୍ଷଣାତ୍ ଆସି ପିଲାଟିକୁ ଦୁଧ ଦିଅନ୍ତା । ଘରର ଲୋକଙ୍କର ବି ସେହି ମତ । କିନ୍ତୁ ଏରଫିଲଡ୍‌ଙ୍କର ତ ସବୁ ବିଷୟରେ ସ୍ୱାମୀଙ୍କ ସାଇରେ ତାଳ କରିବା ଦରକାର । ତେଣୁ ସେ କହିଲା, 'ଉହୁଁ, ତା ହେବ ନାହିଁ । ଆଗେ ତାର ସ୍ତନର ଦୁଧ ଡାକ୍ତରଙ୍କ ଦ୍ୱାରା ପରୀକ୍ଷା କରାଇ ନେବାକୁ ହେବ ।'

ଆର୍ଲିଂଗିସ୍ନା ହସି ହସି କହିଲା, 'ବାହାଃକି, ଡାକ୍ତରର କି ଦରକାର ? ଦେଖୁନ୍ତି ନା ମୋ ଶରୀର ? କେଉଁ ଦିନ ରୋଗ ବୈରାଗ ହୋଇ ନାହିଁ ।'

ବାସ୍ତବିକ ଦେଖିବା ଭଳି ତାର ସ୍ୱାସ୍ଥ୍ୟ । ମୁଖରେ ଗୋଲାପୀ ଆଭା । ସ୍ୱାସ୍ଥ୍ୟର ପ୍ରତିମୂର୍ତ୍ତି ।

ଏରଫିଲଡ୍‌ଙ୍କା କଟମଟ କରି ତା ଆଡ଼କୁ ଅନାଇଲେ । ସେ ଭାବିଲେ, ଆର୍ଲିଂଗିସ୍ନା ଇଚ୍ଛା କରି ସ୍ୱାସ୍ଥ୍ୟର କଥା ଉଠାଉଛି କେବଳ ନିଜକୁ ତାର ସ୍ୱାମୀର ଅର୍ଥ ଆଗରେ ଜାହିର କରିବା ପାଇଁ । କହିଲେ, 'ଡାକ୍ତର ଲୋକ୍‌ହା, ଏଖଣି—ଡାକ୍ତର ନେଇଆସ ।'

ମୋର ନିଜ ମନେ ମନେ ବଡ଼ର-ବଡ଼ର ହୋଇ ଡାକ୍ତରଙ୍କୁ ଡାକିବା ପାଇଁ ବାହାରିଗଲେ ।

ଡାକ୍ତର ଅସୁ ଅସୁ ସନ୍ଧ୍ୟା ହୋଇଗଲା । ଏଣେ ଆନ୍ନି ଭିସ୍ତାର ସ୍ତନ ଫୁଲିଯାଇ ପୁଣି ସେହି ଆଗ ପରି ବ୍ୟଥା ହେଲା । ତେଣେ ପିଲାଟା କୋଳରେ କାନ୍ଦୁଛି, କିନ୍ତୁ କୌଣସି ମତେ ଖାଇବ ନାହିଁ, ମା'ଆର ବକ୍ଷରେ ଦୁଧ ନାହିଁ ବୋଲି ।

ଏନି ଭିସ୍ତାର ଇଚ୍ଛା ଥିଲା, ଡାକ୍ତରଙ୍କ ପରୀକ୍ଷା ସମୟରେ ପାଖରେ ଥାଆନ୍ତା, କିନ୍ତୁ ସ୍ୱାମୀ ତାକୁ ଦୂର କରିଦେଲା, ଆଉ କହିଲା, 'ଅଁ କର କଣ ଦେଖିବୁ ? ଦେଖିବାର କିଛି ନାହିଁ । ଯାଅ, ମାରଗେରିଟାକୁ କୁହ ଗିଲାସେ ପାଣି ଆଉ ଗୋଟାଏ ରୁମାଲ ନେଇ ଆସିବାକୁ ।'

'କେଶ କଟା ହୋଇଛି, ଦେଖୁଛି— ହଁ, କଟା କେଶ ।' ଡାକ୍ତରର ସେହି ଏକ ସ୍ୱଭାବ । ଗୋଟିଏ କଥାକୁ ତିନି ଚାରି ଥର ଅଉଡ଼ାଇବ । ଭାରି ଭୁଲା ମନ । କୌଣସି ବିଷୟରେ ମନ ସଂଯୋଗ କରିବା ତା ପକ୍ଷରେ କଷ୍ଟକର ବ୍ୟାପାର । ନାଲନାଲ ଚାହିଁ ଅନାଇ ରହୁଛି ତ ଅନାଇ ରହୁଛି । ଆର୍ନି ଭିସ୍ତା ଲଜ୍ଜାରେ ଲାଲ ପଡ଼ିଗଲା ।

'ସର୍ପା ରଙ୍ଗ, କଟା କେଶ, କେମିତିକା? କଣ କହୁଛନ୍ତି ସିନୋର୍, କଟା କେଶ ତ ? ଖୁବ୍ ବଢ଼ିଲା ବଳିଷ୍ଠ ଗଢ଼ଣ, ସୁନ୍ଦରୀ… ସୁବେଶ । ସ୍ୱାସ୍ଥ୍ୟଟା ଖୁବ୍ ଭଲ… ବଳିଷ୍ଠ— କେମିତିକା । କିନ୍ତୁ ଶ୍ୟାମଳୀ ହୋଇଥିଲେ ସେମିତି ଭଲ ହୋଇଥାନ୍ତା । କାଳି ଗାଈର ଦୁଧ ଭଲ । ଦେଖେଁ, ଥରେ ଭଲକରି ଦେଖାଯାଉ ।' ଆନ୍ନି ଭିସ୍ତାର ବ୍ଲାଉଜଟା ଉପରକୁ ଟେକିଦେଇ ଗଳାର ଗ୍ରନ୍ଥସୁତାକୁ ସେ ଟିପି ଟିପି ଦେଖିବାକୁ ଲାଗିଲା । ତା ପରେ ଅନ୍ୟମନସ୍କ ଭାବରେ ତାର ସୁତା ବୋତାମ ଗୁଡ଼ାକ ଫେର ଖୋଲିବାକୁ ଲାଗିଲା । ଆର୍ନି ଭିସ୍ତା ତ ହତବମ୍ବ, ଲଜ୍ଜାରେ ତାର ସମସ୍ତ ଶରୀରରେ କଣ୍ଟା ଫୋଡ଼ି ହୋଇଯାଉଛି । ସେ

ତା ହାତରେ ସ୍ତନ ଦୁଇଟା ଢାଙ୍କିବାକୁ ଯାଉଛି, ଡାକ୍ତର ଚିହ୍ନ ପକାଇଲା, 'ଘୁଞ୍ଚାଅ ନାହିଁ— ହାତ ଘୁଞ୍ଚାଅ ନାହିଁ !'

ଏହା ଦେଖି ଏରସିଲ୍ୟା ଖିଲ୍ ଖିଲ୍ କରି ହସି ପକାଇଲା ।

'ହସି ପକାଇଲେ ଯେ, ସିନୋରା, ହସୁଛନ୍ତି କାହିଁକି ?'

'ମଫସଲ୍ ଲୁଚଟାକୁ ଦେଖନ୍ତୁ ! ଲଜ୍ଜା ଓ ଭୟରେ କୁଞ୍ଚୁକୁଞ୍ଚ ହୋଇ ଗଲାଣି ।'

'ଲଜ୍ଜା ? ଲାଜ କଣ ? ମୁଁ ଯେ ଡାକ୍ତର !'

'ଲାଜ— ଅଚିହ୍ନା ପୁରୁଷ ଆଗରେ ! ଆଉ ଜାଣନ୍ତି ତ ଆମ ସିସିଲିର ମହିଳାମାନେ ଏଠାକାର ସହର ମହିଳାଙ୍କ ପରି ଏତେ ସଭ୍ୟ ନୁହନ୍ତି ।'

'ଓ, ବୁଝିଲି, ବୁଝି ପାରୁଛି । ଲାଜ ସରମ ଟିକିଏ ବେଶୀ, ଏମ୍ବା ନା ! କିନ୍ତୁ ଡାକ୍ତର ନିକଟରେ ଲାଜ କଣ ? ସ୍ତନଟା ଟିକିଏ ଟିପି ଦିଅ ଏ କି ଦୁଇ ଟୋପା ଦୁଧ ପକାଅ ତ ଏହି ଟ୍ୟୁବଟା ମଧ୍ୟରେ । ତୁମ ପୁଅର ବୟସ କେତେ ?'

ଅନ୍ଣଡିସ୍ୟା ଅତି କଷ୍ଟରେ ଆଖି ଟେକି ଡାକ୍ତରଙ୍କ ମୁହଁ ଆଡ଼କୁ ଅନାଇଲା । 'ଏହି ଦୁଇ ମାସ ହେଲା କୋଳକୁ ଆସିଛି ।'

'କୋଳକୁ ଆସିଛି ? ତାର ମାନେ ? ଜନ୍ମ କରିଛ କୁହ ! ପିଲା ନିଜେ ନିଜେ କୋଳକୁ ଆସେ ନା କଣ ? ଜନ୍ମ କରିବାକୁ ହୁଏ । ପ୍ରସବ କରିବାକୁ ହୁଏ, ସେଥିରେ ଦୋଷଟା କଣ ?'

ଦୁଧ ପରୀକ୍ଷା କରି ଡାକ୍ତର ଚାଲିଯିବା ପରେ ଅନ୍ଣଡିସ୍ୟା ଧଡ଼୍ କରି ଚୌକି ଉପରେ ବସି ପଡ଼ିଲା, ଯେମିତିକି ଅତ୍ୟଧିକ ପରିଶ୍ରମ ଫଳରେ ତା'ର ସମସ୍ତ ଶରୀରରେ ଅବସାଦ ଆସିଛି ।

ଛି, ଛି, ଛି, ଛି, ଲଜ୍ଜାରେ ମରିଗଲି ! କି ଜଘନ୍ୟ କଥା !

ପର ମୁହୂର୍ତ୍ତରେ କାନ୍ଦଣା ଶୁଣି ଏରସିଲସ୍ୱାର ପୁଅଟିକୁ କୋଳକୁ ନେଇ ସେ ଦୁଧ ଦେବାକୁ ଲାଗିଲା । 'ଅ, ଟୋଂଳକି ଆରେ ଧନମଣି, ପେଟ ଭରି ଦୁଧ ଖା ।'

ବିଛଣାରେ ଶୋଇ ରହି ଏରସିଲସ୍ୱା ପୁଣି କଟମଟ କରି ଅନାଇଲା । ସୁନେଲି କେଶ ମଝିରେ ସିନ୍ଥି, ଦୁଇ କାନର ଦୁଇ ପାଖରେ ଗୋଲ କରି ଖୋସା ବନ୍ଧା ଯାଇଛି । ସେହି ସୁନେଲି କେଶର ବେଷ୍ଟନୀ ମଧ୍ୟରେ ତାର ଲମ୍ବଟୋଲ ମୁହଁଟି ଯେପିତ ଅଦ୍ଭୁତ ସୁନ୍ଦର ଦେଖା ଯାଉଛି । ଜାମାର ଫାଙ୍କ ଭିତରେ ତାର ସୁଗଠିତ ସ୍ତନ ଦ୍ୱୟର ଦେଖା ଯାଉଛି— ସଫା ଧଳା । ଏରସିଲସ୍ୱା ବିରକ୍ତିପୂର୍ଣ୍ଣ ସ୍ୱରରେ କହିଲା, 'ରାତି-ପୋଷାକଟା ପିନ୍ଧାଇ ଦେଲ ନାହିଁ ? କି ବୁଦ୍ଧି ! ଖାଉଁ ଖାଉଁ ଶୋଇ ପଡ଼ିବ ସେ ।'

'ଆହା ଭୋକ ଲାଗୁଛି, ଆଗେ ଖାଇ ସାରୁ । କେମିତ ସୁନ୍ଦର ଚୁଁ ଚୁଁ କରି ଖାଉଛି '

ପୁଅକୁ ଶୁଆଇ ସେ ପାଖ ଘରକୁ ନେଇଗଲା । ସେହି ଘରେ ସେମାନଙ୍କର ଦୁଇ ଜଣଙ୍କର ଶୋଇବା ବ୍ୟବସ୍ଥା ହୋଇଛି । ଚମତ୍କାର ବିଛଣା, ସୁନ୍ଦର ଆସବାବ । ସବୁ ଦେଖି ତାର ବିସ୍ମୟର ସୀମା ରହିଲା ନାହିଁ । ତାହା ହେବ ନାହିଁ ! ପ୍ରେମ ତ । ଏଠ କାର ବ୍ୟାପାରହି ଅଲଗା । ସୁନ୍ଦର ଧୋବ ଫରଫର ପରିଷ୍କାର ବିଛଣା ତାର ପାଇଁ ପଡ଼ି ଯାଇଛି । ଆଲ୍‌ଭିସ୍ୱା ହଠାତ୍ ଠିଆ ହୋଇଗଲା । ଦୁଇ ବର୍ଷ ପୂର୍ବେ ତାର ସେହି ବାସର ଶଯ୍ୟା କଥା ମନେ ପଡ଼ିଲା । ସେହି ପ୍ରଥମ ଥର ଅନ୍ୟ କାହାର ସହିତ ଏକା ବିଛଣାରେ ଶୋଇବା । ସ୍କୁଲର ସିପିଲ୍‌ର ସେହି ଛୋଟ ଘରଟିର ଛବି ତା ଆଖି ଆଗରେ ଭାସିଗଲା । ତାଙ୍କୁ ଯେତେବେଳେ ପାଗଳାମି ଛୁଇଁ ନ ଥିଲା । କେତେ ଆଶା କରି ସେ ନୂତନ ଘର ବାନ୍ଧିଥିଲା । ଆଜି ସେହି

ଘରଟିର କି ଦୁଦ୍ଦଶା ରୂପ । ଆସବାବ ଓହ୍ଲାଇଲେ ଦୁଇଟି ମାତ୍ର ଚୌକି । ଶାଶୁ ଓ ଶିଶୁଟିକୁ ଧରି ସେ ବାରଣ୍ଡାରେ ଗୁଞ୍ଜିଗାଞ୍ଜି ହୋଇ ଶୋଇବା । ··· ବୁଢ଼ୀର ସମଗ୍ର ଖଟିଆ ଏଣିକି ଏକା ଦଖଲ କରିବ ! ଲକ୍ଷ୍ମୀ ହୁଏ ତ ପଡ଼ୋଶୀମାନଙ୍କ ଘରରେ ଥିବ । ଆହା ଛୁଆଟା, ଅଳ୍ପ ବୟସରେ ମାଆ-ଛଡ଼ା, ଘର-ଛଡ଼ା ! ସେହି ପଡ଼ୋଶୀ ସ୍ତ୍ରୀଲୋକଟି କଣ ଲକ୍ଷ୍ମୀ ପ୍ରତି ସେମିତି ନଜର ଦେବ ? ହୁଏ ତ ଓଗାଡ଼ାଏ ପାଖରେ ପକାଇ ରଖିବ— ନିଜ ଛୁଆଙ୍କୁ ଖୁଆଇ ପିଆଇ ଯାହା କିଛି ସାମାନ୍ୟ ବାକି ରହିବ, ସେତିକି ମାତ୍ର ଦେବ । ଏକା ମାଆର କୋଳ ଦଖଲ କରିଥିଲା, ଏଣିକି ପର ଛୁଆର ଅଇଁଠା ଖାଇ ସେ ବଞ୍ଚିବ । ଆନନ୍ଦିନୀର ଛାତି ଫୁଲି ଉଠିବାକୁ ଲାଗିଲା । ବାଳେ କେହି ଜାଣି ପାରିବେ, ସେଥିପାଇଁ ସେ ଜୋର କରି ଆଖିରୁ ଜଳ ପୋଛି ପକାଇଲା । ନିଜର ମନକୁ ବୁଝାଇବାକୁ ଚାହେ । ଲକ୍ଷ୍ମୀର ବୁଢ଼ୀ ମା ତ ଘରରେ ଥିବ । ନାତିର ଅନାଦର ହେଲେ ସେ କଣ ଛାଡ଼ି ଦେବ— ଖୋଲାଖୋଲି ପଡ଼ୋଶୀର ମୁହଁ ଉପରେ ଦୁଇ କଥା ନିଶ୍ଚୟ ଶୁଣାଇ ଦେବ । କିଛି ଦିନ ପରେ ବୋହୂ ଉପରୁ ଭାବ ରାଗ ନିଶ୍ଚୟ ଭୁଲିଯିବ— ସେ ବୁଝି ପାରିବ ଆନନ୍ଦିନୀ ଯାହା କରୁଛି ପାଞ୍ଚ-ପଚାଶ ଭାବି କରୁଛି, ସେ ତ ଅନ୍ୟ ଇଚ୍ଛା କରି ଶାଶୁର କଥା ଅଗ୍ରାହ୍ୟ କରି ନାହିଁ । ଘରେ ବସି ରହିଥିଲେ, କ ଖାଇ ମରିବାକୁ ହୋଇଥାନ୍ତା ।

ସେ ଯେ ଶାଶୁ ଓ ପୁଅଟିର ମୁହଁକୁ ନିରେଖି ଓବେମକୁ ଆସିଛି— ନାତିଟି ସୁଖରେ ରହିବ ବୋଲି ନୁହେଁ— ଏ କଥାଟା ନିଜ ନିକଟରେ ପ୍ରମାଣ କରି ପାରିଲେ ସେ ଯେମିତି ବଞ୍ଚି ଯାଆନ୍ତା । ଯଦି ସମ୍ଭବ ହୁଅନ୍ତା, ତାହାହେଲେ ଆରାମପ୍ରଦ ଶଯ୍ୟା ଛାଡ଼ି ଚଟାଣ ଉପରେ ଶୋଇ ପାରିଲେହିଁ ସେ ଯେମିତି ଖୁବ୍ ତୃପ୍ତି ହୁଅନ୍ତା । ସେ ଯଦି ଏ ଘରର

ସାଧାରଣ କୁକୁର ପରି ଚଟାଣ ଉପରେ ଶୋଇବାକୁ ଯାଏ, ତାହାହେଲେ ତାହାହିଁ ଯଥେଷ୍ଟ । ଲଡ୍‌ପି ଶଚଗ୍ର ଓ ଛଗ୍ରର ବୁଢ଼ୀମା ଛୁଣ୍ଡା କନ୍ଥାରେ ଶ୍ୱାଇ ପୁନ୍ଥାଇବେ, ଆଉ ସେ କବଚ ବାବୁଗିରି, ତାହା କଣ ଓଳଟେ ହୁଏ !

ଦୁଇ ଦିନ ପରେ ଦର୍ଜି ଯେତେବେଳେ ଧାଇଁର ପୋଷାକ ନେଇ ଆସିଲା, ସେତେବେଳେ ତାର ମନ ଅତ୍ୟନ୍ତ ଖରାପ ହୋଇଗଲା । ଏତେ ସୁନ୍ଦର ପୋଷାକ ସେ ପିନ୍ଧିବ କେଉଁ ଲଜ୍ଜାରେ—ରଙ୍ଗିନ ସିଲ୍କର ବନିଆନ୍, ତାପା ଉପରେ ସୁନ୍ଦର ଛୁଇଁ କାର୍ଯ୍ୟ, ରୁପାର ଚଉଁରୀ—ଏହା ଯେମିତି ନାଚର ସାଜ ! ଏହା ପିନ୍ଧି ତାକୁ ସମସ୍ତଙ୍କୁ ବାହାରିବାକୁ ହେବ ?

ଏରସିଲ୍‌ସ୍ମା ଇତି ମଧ୍ୟରେ ବିଛଣାରୁ ଉଠି ପଡ଼ିଲାଣି । ଆଲ୍‌ଫିନ୍ସୋର ହାବଭାବ ଦେଖି ସେ ସବୁ ବୁଝି ହୋଇ ଗଲାଣି ।

'ଅହା ପ ଢଳମି ଦେଖ ! ଠିକ୍ ଯାହା ଭାବିଥିଲି । ଶ୍ୱେମର ଦାସୀମାନେ ଯେଉଁପରି ଭାବରେ ପୋଷାକ ପିନ୍ଧନ୍ତି ତୋତେ ବି ତାହା ପରିଧାନ କରିବାକୁ ହେବ ! ଭଲ-ଲାଗିବା ମନ୍ଦ-ଲାଗିବା କଥା ମୁଁ ଶୁଣିବାକୁ ଚାହେଁ ନା—ଯେଉଁଠିକାର ଯାହା ନିୟମ ତାହା ମାନି ଚଳିବାକୁ ହୁଏ ।'

ଆଲ୍‌ଫିନ୍ସୋ ମୁନିବାଣୀଙ୍କୁ ଖୁସି କରିବା ଲାଗି ତତ୍‌କ୍ଷଣାତ୍ କହି ପକାଇଲା—'ମୁଁ କଣ ତାହା କହୁଛି, ଭଉଣୀ । ତୁମ ଆଜ୍ଞା କଣ ଅବଜ୍ଞା କରି ପାରେଁ ! ମୁଁ ଖାଲି କହୁଥିଲି, ମୋ ପାଇଁ ଏତେ ବାଜେ ଖରଚ କରିବା କି ଦରକାର ଥିଲା । ତା ଛଡ଼ା, ତୁମେ ତ ଜାଣ ଦେଶରେ ଆମ୍ଭେମାନେ— ।'

'ମନେ ରଖ, ଏ ତୋର ସିସିଲ୍ ନୁହେଁ—ଏ ହେଲା ଶ୍ୱେମ । ତା ଛଡ଼ା ପୋଷାକଟା ତ ତୋତେ ଖୁବ୍ ଭଲ ମାନୁଛି ।'

ତାହା ସତ୍ୟ ! ଲାଲ୍ ଟକଟକ ସିଲ୍କ ଜାମା ପିନ୍ଧି କେଶରେ ଘୂରାଲେ ଆଖି, ତାର ଭସାଣିଆ ଚକ୍ଷୁର ନୀଳ ମାଧୁରୀ ଯେମିତି ଅଦ୍ଭୁତ ଖୋଲି ଯାଇଛି । ଏରସିଲ୍ଡ୍ସା ଭାବେ, ତାକୁ ଧରି ଯଦି ସେ ରାସ୍ତାକୁ ବାହାରେ ତା ହେଲେ ମୁନିବାଣୀ ଅପେକ୍ଷା ଦାସୀ ଅଡ଼କୁ ରାସ୍ତାର ଲୋକେ ବେଶି ନଜର ଦେବେ । ତାହା ହଉନୁ— ଯେତେ ହେଲେ ଦାସୀ ତ ! ତାର ଈର୍ଷା ଅପେକ୍ଷା ଅହଙ୍କାରଟା ପ୍ରବଳ ହୋଇଯାଏ— ସୁନ୍ଦରୀ ଦାସୀ ତ ସମସ୍ତଙ୍କ ଭାଗ୍ୟରେ ଯୁଟେ ନାହିଁ !

ଏରସିଲ୍ଡ୍ସା ଦିନେ ଘୋଡ଼ା ଗାଡ଼ି ଚଢ଼ି ବୁଲି ବାହାରିଲେ । ସାଙ୍ଗରେ ତାର ଦାସୀ, ଏବଂ ତା କୋଳରେ ପୁଅ । ବର୍ଷକର ଅନ୍ନିଇସ୍ସା ନୂଆ ପୋଷାକ ପିନ୍ଧି ଏହି ପ୍ରଥମ ଥର ବାହାରକୁ ବାହାରିଲା । ଲଜ୍ଜାରେ ସେ ଲାଲ ପଡ଼ି ଯାଇଛି, ଆଖି ଟେକି ଚାହିଁ ପାରୁ ନାହିଁ । କୋଳର ପୁଅଟି ଅଡ଼କୁ ଏକ ଦୃଷ୍ଟିରେ ଅନାଇ ସେ କାଠ ହୋଇ ବସିଛି । ଏରସିଲ୍ଡ୍ସା ଦେଖିଲା ଯେ ରାସ୍ତାରେ ସମସ୍ତେ ଆଖି ବୁଲାଇ ଧାଈ ଅଡ଼କୁ ଚାହିଁଛନ୍ତି ।

'ମୁହଁ ତଳକୁ କରିଛୁ କାହିଁକି ? କେହି ତୋତେ ଧରି ମାରିଛନ୍ତି ନା କଣ ? ବୋକା କେଉଁଠିକାର !'

ଅନ୍ନିଇସ୍ସା ଆଖି ଟେକି ଚାହିଁବାକୁ ଚେଷ୍ଟା କରେ । କେବେ ନୂଆ ସହର ଦେଖିବା ଇଚ୍ଛା ତା ଭିତରେ ଜାତ ହୁଏ, ତାର ଲଜ୍ଜା କଟି ଯାଏ । ଏରସିଲ୍ଡ୍ସା ଯେଉଁ ଅଡ଼କୁ ଅଙ୍ଗୁଳି ଦେଖାଏ, ସେ ସେହି ଦିଗକୁ ଦିଲ୍ଲଙ୍କ ପରି ଗୋଲ ଗୋଲ ଚକ୍ଷୁରେ ଚାହିଁ ରହେ । 'କି ଚମତ୍କାର, ଏପରି ସୁନ୍ଦର ସହର ତ ସେ କେବେ ହେଲେ ଦେଖି ନାହିଁ !'

ଘରକୁ ଫେରି ଆସିବାର ଅନେକ ସମୟ ପରେ ବି ତାର ସେହି ଅଚ୍ଛନ୍ନ ଅବସ୍ଥା ଦୂରୀଭୂତ ହେଲା ନାହିଁ । ପାଦ ଦୁଇଟି କମ୍ପୁଛି, ମଥା ଝିମ୍‌ଝିମ୍ ହେଉଛି, ଏବଂ କାନରେ ଯେମିତି ତାଳି ପଡ଼ୁଛି । ଗୋଟାଏ

ସ୍ଲେଟ୍ ସ୍ପଞ୍ଜ ଚେଷ୍ଟରୁ ସେ ଯେମିତି କୌଣସି ପ୍ରକାରେ ପ୍ରାଣ ବଞ୍ଚାଇ ଚାଲି ଆସିଛନ୍ତି । ଏ ଯେମିତି ଅନ୍ୟ ଏକ ଜଗତ୍— ସେମାନଙ୍କର ସେହି ସିସିଲିର ମଫସଲ ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସେ ଯେମିତି ବାଟ ଭୁଲି ସୁଦୂର ଏକ ମାୟାପୁରୀରେ ପହଞ୍ଚି ଯାଇଛନ୍ତି ।

'— ମାଆ ଲୋ ମାଆ— କି ଚମତ୍କାର— କି ସୁନ୍ଦର !'

ଠିକ୍ ସେହି ମୁହୂର୍ତ୍ତରେ ମୋର ଭା ସ୍ତ୍ରୀ ହାତରେ ଖଣ୍ଡିଏ ଚିଠି ଆଣି ଦେଲା—ସିସିଲିରୁ ଆସିଛି । ସିନୋର ମାନଫ୍ରେନ ଲେଖିଛନ୍ତି । ଅନ୍ନିଭିସ୍ତାର ପ୍ରଥମ ମାସର ଦରମା ବାବଦକୁ ଏରସିଲିଆ ଯେଉଁ ଅଗ୍ରୀମ ଟଙ୍କା ପଠାଇଥିଲା, ମାନ୍ଲୁଙ୍କୋର ବୁଢ଼ୀମା ତାହା ଫେରନ୍ତି ଦେଇଛନ୍ତି । ସେ କହୁଛନ୍ତି— ଦୁଆରେ ଦୁଆରେ ଭିକ ମାଗି ଖାଇବି, ନ ଖାଇ ମରିବି ପଛକେ, ତାହା ବରଂ ଭଲ, ତଥାପି ସେଣ୍ଟ ପାପ-ଟଙ୍କା ମୁଁ ଆଖିରେ ବି ଦେଖିବାକୁ ଚାହେଁ ନାହିଁ । ଇତି ମଧ୍ୟରେ ଯେଉଁ ପଡ଼ୋଶୀ ହାତରେ ଅନ୍ନିଭିସ୍ତା ତା ପୁଅଟିକୁ ଦେଇ ଯାଇଥିଲା, ସେ ଅପି ନାଲିସ୍ କରି ଯାଇଛି ଯେ ହତଭାଗିନୀ ବୁଢ଼ୀ ତାକୁ ଗୋଟିଏ ହେଲେ ପଇସା ବି ଦେଇ ନାହିଁ, ଏପରିକି ଲତ୍ରସିର ଜାମାପଟା କିଣିବା ଲାଗି ବି ନୁହେଁ । ସିନୋର ଅଦ୍ଭୁତ ଲେଖିଛନ୍ତି— ଏରସିଲିଆ ପଠାଇଥିବା ଟଙ୍କାରୁ ଅଧେ ସେ ପଡ଼ୋଶୀ ହାତରେ ଦେଇଛନ୍ତି, ଆଉ ତାକୁ କହି ଦେଇଛନ୍ତି ସେ ଯେମିତି ବୁଢ଼ୀକୁ ନିତ ବସି ଖାଇବାକୁ ଦିଏ— ନ ହେଲେ ସେ ତ ନ ଖାଇ ମରି ଯିବ । ପଡ଼ୋଶୀ ଯେମିତି ଏଣିକି ଅଧେ ଟଙ୍କା ପଠାଏ—ଏପରି ଭାବ ଦେଖାଇବ ଯେ ସେ ନିଜେ ଦୟା କରି ବୁଢ଼ୀକୁ ଦଣ୍ଠା ଖାଇବାକୁ ଦେଉଛନ୍ତି । ବୁଢ଼ୀର ଯାହା ଦମାକ ! ଏରସିଲିଆ ଯେମିତି ବୁଢ଼ୀଟା ତ ଟଙ୍କା ନେବ ନାହିଁ । ଶେଷରେ ସେ ଲେଖିଛନ୍ତି ଯେ ଏରସିଲିଆର ସ୍ୱାମୀର କଥା ଅନୁଯାୟୀ କାମ କରିବାକୁ ଯାଇ ଏହି ଗୋଳମାଳଟା ହେଲା । ଚିଠି ଖଣ୍ଡିକ ଭାଙ୍ଗ କରୁଁ କରୁଁ ଏରସିଲିଆ କହିଲା—

'ତୁମର କଣ କେବେ ବୁଦ୍ଧି ହେବ ନାହିଁ ? କାହିଁକି ତୁମେ ମାଆଙ୍କୁ ଲେଖିବାକୁ ଗଲ ?'

'ମୁଁ କଣ ସେହି ଝଗଡ଼ୀ ବୁଢ଼ୀଟାର ପୁଅବୋହୂଙ୍କୁ ପଠାଇବା ପାଇଁ ଖଣ ପକାଇ ଲେଖିଥିଲି ? ତୁମର ମାଆ ଦେଖୁଛ, ମୋ ଉପରେ ସବୁ ଦୋଷ ଲଦି ଦେଉଛନ୍ତି ।'

'ଲଦିବେ ନାହିଁ ତ କଣ— ଶହେ ବାର ଲଦିବେ । ପିଲାଙ୍କୁ ଧାଇଁ ପଠାଇବା କଥା ତୁମେ ଲେଖି ନାହିଁ ? ଆଉ ତୁମରି ପାଇଁ ଏହି କାଣ୍ଡଟା ଘଟିଲା । ତୁମର ତ ଖୁବ ଖୁସିଗଲା ! ଆଁ କରି ତୁମେ ଦାସୀର ରୂପ ଗିଳୁଛ । ମୋ ଆଖିକୁ ଫାଙ୍କି ଦେବ ?'

ମୋର ଅବାକ ହୋଇ ପଚାରିଲି— 'କଣ କହୁଛ ତୁମେ ! ମୋ ପୁଅର ଦାସୀକୁ ନେଇ··· ।'

'ହିଁ ଗୋ ହିଁ, ସେହି ଦାସୀଟା । କର ନା, ପ୍ରୀତି କର ଘର ଦୁଆର ଫଟାଇ ଦିଅ ।'

'ଅଲବତ୍ ପ୍ରୀତି କରିବି । କିଏ ଚୁପ୍ କରି ସହିବ ତୁମର ସେହି ବାଜେ କଥା ? ପୁଅର ଦାସୀ ପ୍ରତି ତୁମର ହିଂସା··· ତୁମର ମଥା ଖରାପ ହେବାକୁ ବୋଧହୁଏ ଆଉ ବାକି ନାହିଁ ।'

'ଆଉ ତୁମର ମଥାଟି ଖୁବ୍ ଥଣ୍ଡା ନା ? ମଥା ନାହିଁ, ତାର ପୁଣି ମଥା ଗରମ ! ବର୍ତ୍ତମାନ କଣ କରିବ କର ତାହାଙ୍କ ଭୁଲ ! ଟଙ୍କାଟା ଯେ ଫେରସ୍ତ ହେଲା— !'

'ତାର ଶାଶୁ ଯେ ଟଙ୍କାଟା ନେବାକୁ ରାଜି ନାହିଁ, ତାହା ତାଙ୍କୁ ବୁଝାଇ କହିବ ନାହିଁ ?'

'ସତିକି ? ମୁଁ ତାଙ୍କୁ ସେହି କଥା କହିବାକୁ ଯାଉଛି ତ ଆଉ କଣ । ତା ହେଲେ ସେ ଏକବାରେ ଧାଇଁର ଯିବ ।'

ରାଗ ଓ ବିରକ୍ତିରେ ଅଧୀର ହୋଇ ମୋର ପତ୍ନୀ ବାହାରି ଗଲା ।

କେଶଙ୍କୁ ତାହାହେଲେ କଥା ଏତେ ଦୂରକୁ ଗଡ଼ିଗଲା ! ମୋର ତା ପୁଅ କଡ଼କୁ ଯାଇ ପାରିବ ନାହିଁ— ଆଦର-ସ୍ନେହ କରିବା ତ ଦୂରର କଥା । ଏପରି ଅଦ୍ଭୁତ ସନ୍ଦେହ କେହି କେବେ ତ ଦେଖି ନାହିଁ ! ପୁଅକୁ ଗେହ୍ଲା କଲେ ଏରସିଲ୍ୟା ଭାବିବ ଯେ ଦାସୀକୁ ସେ ଗୁଡ଼ା ଦିଆଯାଉଛି ! ବଡ଼ ଲୋକ ତ ସେ ଏହା ତାଙ୍କୁ ଖୋଲି କରି କହି ଦେଲା ।

'ପୁଅ ଯେତେବେଳେ ମୋ କୋଳରେ ଥାଏ, ସେତେବେଳେ ତ ଗୁଡ଼ ବି ମାଡ଼ ନାହିଁ । ଆଉ ଦାସୀର କୋଳରେ ଥିଲେ ସ୍ନେହ-ମମତାର ଅନ୍ତ ନାହିଁ—କି ଆଦର-ଯତ୍ନ !' ଏହି ପ୍ରକାର କଥାରେ ଏମାନଙ୍କର ସେପଟକୁ ଦୁଃଖ ହୁଏ, ରାଗ ବି ତାହା ଠାରୁ ବେଶୀ ହୋଇଯାଏ ।

'ପୁଅ ତ ତୁମ କଡ଼ରେ କେତେବେଳେ ନ ଥାଏ ।'

କେଶଙ୍କ କଥା ଅବଶ୍ୟ ସତ । ପୁଅ ତା ମାଆର କୋଳରେ ଟିକେ ଦଣ୍ଡ ରହିବାକୁ ଚାହେଁ ନାହିଁ, କେବଳ କାନ୍ଦୁଥାଏ ଆଉ ତାର ଦୁଇଟି ଛୋଟ ହାତ ବଢ଼ାଇ ଆଣ୍ଣିଙ୍ଗ୍ସ ପାଖକୁ ଯିବାକୁ ଚାହେଁ । ବୋଧହୁଏ ଏରସିଲ୍ୟା ତାକୁ ଠିକ୍ ଭାବରେ ସମ୍ଭାଳି ଧରି ପାରେ ନାହିଁ । ପିଲାକୁ କୋଳରେ ଧରିବାର ଅଭ୍ୟାସ ନାହିଁ ବୋଲି ସେ ଏମିତି ହୁଏ, ଏହା ଭାବିବା ଭୁଲ । ପ୍ରକୃତରେ ତାର ସର୍ବଦା ଭୟ ହୁଏ, ପିଲାଟା ତାର ମୂଲ୍ୟବାନ ଡ୍ରେସିଂ ଗାଉନଟା ନଷ୍ଟ କରି ଦେବ ।

ଏରସିଲ୍ୟା ପ୍ରାୟ ଘରୁ ବାହାରକୁ ଆସେନି ବାହାରେ କାହିଁ ? ଅଚାନକ ପଡ଼ାରେ କେହି କେବେ ତାହା ସହିତ ସାକ୍ଷାତ କରିବାକୁ ଆସନ୍ତି । ତାହା ହେଲେ ବି କଣ ହେବ । ପୋଷାକପତ୍ରରେ ସେ

ଅଜସ୍ର ଖର୍ଚ୍ଚ କରେ, ଆଜି ତାହା ବି ତାର ଅଦୌ ପସନ୍ଦ ହୁଏ ନାହିଁ । କୌଣସି କଥାରେ ସନ୍ତୁଷ୍ଟ ହେବା ତାର ଜାତକରେ ନାହିଁ । ସବୁଥିରେ ତାର ଅରୁଚି, ଏପରିକି ନିଜକୁ ବି ତାର ଭଲ ଲାଗେ ନାହିଁ । ତାର ବଦ୍ଧ ଧାରଣା, ସେ ଅସୁଖୀ । ହୁଏ ତ ତାହା ସତ୍ୟ । କିନ୍ତୁ ସେଥିପାଇଁ ଅନ୍ୟ ଲୋକଙ୍କୁ ଦୋଷୀ କଲେ କଣ ଚଳିବ ? ଏଥିପାଇଁ ଦାୟୀ ତାର ନୀରସ କଟୁ ସ୍ୱଭାବ—ତାର କଳହ-ପ୍ରବୃତ୍ତି । ଏଣେ ତାର କିନ୍ତୁ ଦୃଢ଼ ବିଶ୍ୱାସ ଯେ ତା ମନ ମୁତାବକ ମଣିଷ ସେ ଯଦି ପାଇଥାନ୍ତା—ଏପରି କେହି ଯଦି ତାକୁ ଭଲ ପାଇଥାନ୍ତା, ତାକୁ ବୁଝି ପାରିଥାନ୍ତା—ତା ହେଲେ ତାର ଛାତି ଭିତରଟା ଏପରି ଖାଁ ଖାଁ କରୁ ନ ଥାଆନ୍ତା । ପୁଅ ପ୍ରତି ବି ଏରସିଲ୍ୟାର ମନରେ ବିତୃଷ୍ଣା ଅଛି—ମାଆକୁ ଛାଡ଼ି ସେ ଦାସୀକୁ ସ୍ନେହ କରେ ବୋଲି । ଭାଇ ନାହିଁ, ଦାଇ ନାହିଁ, ଖାଲି ଦିନ ଏକା ପରି ଯାଏ—ଏପରି ଦିନ ନାହିଁ, ଯେଉଁ ଦିନ କି ସେ କନ୍ଦାକଟା ନ କରିଛି । ମୋର୍ ମଝିରେ ମଝିରେ ଲକ୍ଷ୍ୟ କରେ, ତାର ଚକ୍ଷୁ ଲାଲ । ସେ ଏହା ଦେଖି ବି ଦେଖେ ନାହିଁ । କହିବାକୁ ଗଲେ, ସେ ସ୍ତ୍ରୀ ସହିତ କଥାବାର୍ତ୍ତା ବି କରେ ନାହିଁ । କିନ୍ତୁ କହି ବୋଲି ସେ ଯେ ଏରସିଲ୍ୟାର ମନ ଚିହ୍ନି ପାରିବ, ଏପରି ଆଶା ସେ ବହୁ ଦିନରୁ ଛାଡ଼ି ଦେଇଛି । ଜୀବନକୁ ଉପଭୋଗ କରିବା କ୍ଷମତା ଏରସିଲ୍ୟା ହରାଇ ଦେଇଛି—ସେ ଜାଣେ ନାହିଁ ଯେ ଯଦି ମଣିଷ ନିଜେ ସୁଖୀ ନ ହୋଇପାରେ ତା ହେଲେ କେହି ତାକୁ ସୁଖୀ କରି ପାରିବ ନାହିଁ । ଆଜି ଏରସିଲ୍ୟା ତାକୁ ମୋଟ ନିଜେ ବା କେଉଁ ସୁଖରେ ଅଛି ! ତାହା ସହିତ ଘୋଡ଼ାଏ ଘରେ ରହିବା ତ ଏକ ଯନ୍ତ୍ରଣା ବିଶେଷ । ବି କଦଯୀ ଜୀବନ—ଦିନ ସାରା ନିଜ ଅଫିସ-ଘରେ ସେ ବନ୍ଦୀ । ଭାଗ୍ୟକୁ ମଝିରେ ମଝିରେ ତାର ସାମ୍ୟବାଦୀ ବନ୍ଧୁମାନେ ଆସନ୍ତି । ସେମାନଙ୍କ ସହିତ

କଥାବାର୍ତ୍ତା ହସଖୁସି ଆଲୋଚନା କରି ତାର ମନଟା ଟିକିଏ ହାଲୁକା ହୋଇଯାଏ ।

ସିନୋର ଫେଲିଚସିମୋ ସ୍ମିଚେଲ୍ଲି ମୋଟର କର୍ମଗୃହ । ଅଧା-ବୟସୀ ଲୋକ ଓକିଲର ମୋଟରସ୍ୱାର । ବନ୍ଧୁମାନଙ୍କ ସହିତ ଆଳାପ ଆଲୋଚନା ସମୟରେ ମୋର ତାଙ୍କୁ ବସିବା-ଘରକୁ ପଠାଇଦିଏ । ସମବେତ ଭଦ୍ରଲୋକମାନଙ୍କୁ ସସମ୍ମାନରେ ନମସ୍କାର କରି ମୋଟରସ୍ୱାର ବାହାରି ଆସେ, ଏବଂ ବାହାର ପଟୁ ଦୁଆର ଟାଣିଦିଏ । ଦୁଆର ବାହାରେ ତାର ଅନ୍ୟ ମୂର୍ତ୍ତି— ନାଚର ଭଙ୍ଗୀରେ ପାଦ ପକାଇ ପକାଇ ହାତ ଘଷି ଘଷି, ଜଲପ-କରା କେଶରେ ହାତ ମାରି ମାରି ସେ ବାହାର ଘରକୁ ଆସି ଗୋଟାଏ ବେଞ୍ଚ ଉପରେ ବସେ । ସିସିଲିର ସୁନ୍ଦରୀ ଦାସୀଟି ପ୍ରତି ତାର ଭାରି ଲୋଭ ! ଇତି ମଧ୍ୟରେ ସେ ତାହା ସହିତ ଭାବ ଜମାଇବା ପାଇଁ ଚେଷ୍ଟା କରୁଛି :

'ମୋ ନାମ ଜାଣ କି ତ ? ମୋ ନାମ ଫେଲିଚସିମୋ (ଭାଗ୍ୟବାନ) ।'

ଅଣ୍ଟିକିଆ ଝିଅଟା ଠିକ୍ ଯେମିତି ବୁଝି ପାରେ ନାହିଁ । ଖାଲି ମୁହଁ ଚୁଲାଇ ଦିଏ ।

ସିନୋର ସ୍ମିଚେଲ୍ଲି ନିଜ ମନେ ମନେ ଆକ୍ଷେପ କରେ :

'କି ନାମ ଦେଇଥିଲେ ବାପ ମାଆ— ଫେଲିଚସିମୋ ! ପୋଡ଼ା କପାଳ ମୋର !' ବାପ-ମାଆ ଯେତେବେଳେ ଏପରି ସୁନ୍ଦର ନାମଟା ଦେଇଥିଲେ, ସେତେବେଳେ ସେମାନଙ୍କର ଆଶା ଥିଲା ଯେ ପୁଅଟି ଦିନେ ଭାଗ୍ୟବାନ ହେବ । କି ଚମତ୍କାର କପାଳ— ଖୁଦ-କୁଣ୍ଡା ଗୋଟାଇ ବୁଲିବା କି ସୌଭାଗ୍ୟ କୁହ ତ । ସେ ଦିନରୁ ମକୁସ୍ତ ମାଙ୍କ ପାଠ ଲୁଚ୍ଛା ଯାଏ । କୌଣସି ପ୍ରକାରେ ସଂସାର ଚଳାଇବା ପକ୍ଷରେ ଏତିକି ଅର୍ଥ ନିତାନ୍ତ ଯତ୍‌ସାମାନ୍ୟ ନୁହେଁ । କିନ୍ତୁ

ସେଥିରେ ତାର ଭୁଲାଏ ନାହିଁ । କାରଣଟା ଖୁବ୍ ସାଧାରଣ— ସ୍ତ୍ରୀ ଲୋକଙ୍କ ପ୍ରତି ପେଲ୍‌ଟରିସିମୋର ଗୋଟାଏ ସହଜାତ ଦୁର୍ବଳତା ଅଛି । ଏଟା ତାର ଖିଆଲ ନୁହେଁ, ଅଭ୍ୟାସ; କୌଣସି ମତେ ଦୂରୀଭୂତ ହୋଇ ନାହିଁ । ସ୍ତ୍ରୀ ଲୋକ ଦେଖିଲେ ସେ ଆଉ ଠିକ୍ ରହିପାରେ ନାହିଁ ।

ଏହି ଅର୍ନିଭି ସ୍ତ୍ରୀର କଥାଟା ଧର ନା—ଉପରେ ଟୁଲୁ ଟୁଲୁ! ଦେଖିଲା ମାତ୍ରେ ପାଟିରୁ ଲାଳ ବହେ । ସ୍ତ୍ରୀ-ଲୋକଟା ଯେ ଖାଲି ସୁନ୍ଦରୀ ତାହା ନୁହେଁ— ଆଦବ କାଇଦା ବି ଜାଣେ । ବାହାରର ଥାଟଟା କିନ୍ତୁ ଠିକ୍ ରଖିଛି । ହଁ, ଥାଟ ନୁହେଁ ତ ଆଉ କଣ । ଯାହି ମାନେହିଁ ଯେ ନଷ୍ଟ-ଚରିତ୍ର ତାହା କିଏ ନ ଜାଣେ, ଟଙ୍କା ପଇସାର କାରବାର— ଅଦଳାଇ ନେଲେହିଁ ହେଲା ।

ମୋହିନୀର ବାବୁର ଚଞ୍ଚଳ ଗୃହିଣୀ ଓ ଲାମ୍ପଟ୍ୟ ବକ୍ଷିତ ଭଙ୍ଗୀ ଅର୍ନିଭି ସ୍ତ୍ରୀର ଦୃଷ୍ଟିରେ ଯେ ନ ପଡ଼ିଛି ତାହା ନୁହେଁ । ତାକୁ ହସ ମାଡ଼େ, ତାର ରାଗ ବି ହୁଏ । ଅଦ୍ଭୁତ ଲୋକଟିଏ— ବୟସ ଢାଙ୍କି ପାରେ ନାହିଁ, ଅଥଚ କଲପ ଲଗାଇ ଏବେ ବି ବେଶ ସତେଜ ରଖିବାକୁ ଚେଷ୍ଟା କରେ । ବୋଧହୁଏ ତାର ମଥା ଖରାପ— ଆଉ ତାହା ଯଦି ନ ହୋଇଥାଏ ତ ଖରାପ ହେବାକୁ ଅଉ ବେଶି ଡେରି ନାହିଁ ।

ଦିନେ ଅର୍ନିଭି ସ୍ତ୍ରୀ ମୋଟର ପୁଅଟିକୁ ଖେଳାଉଥିଲା । ପୁଅର ନାମ ଦିଆ ଯାଇଛି ଲଓନାଡ଼ା । ସେହି ନାମଟା ଅର୍ନିଭି ସ୍ତ୍ରୀର ତୁଣ୍ଡରେ କୌଣସି ମତେ ପଶୁ ନାହିଁ— ଏହି ଛଅ ମାସ ମଧ୍ୟରେ ବି ତାର ଦୁରସ୍ତ ହୋଇ ନାହିଁ । ତେଣୁ ସେ ନାମଟା ସହଜ କରି ପୁଅଟିକୁ ଡାକେ ନୋନାଦା ।

ସମ୍ପିରେଲ୍ଲି ତାକୁ ତାଗିଦ କରି କହେ : 'ଏ ଦାସ୍ୟ୍ ତୁମର କି ବୁଦ୍ଧି ! ନୋନାଡା ନୁହେଁ ଗୋ, ଲ୍-ଓ-ନ-ଡା !'

'ସେହି ନାମ ମୋ ତୁଣ୍ଡରେ ପଶୁ ନାହିଁ ।'

'ଆଛା, ଭୁଲିତ ଦେଖି ଟେଲଟେଇଗୋ, ସେହି ନାମଟା କିଏ ଦେଇଛନ୍ତି ଜାଣ ? ମୁଁ ।' ଅଳିଭିଆ ପୁଅକୁ କାଖେଇ ବାହାର ଯାଉଁ ଯାଉଁ କହିଲା : ସେହିପରି ନାମ ଟେଇ୍ ଅଛି ନା କଣ ?'

ମୋହନ୍ତିର ବାବୁ ଉଦାସ ଭାବରେ ନିଜ ମନେ ମନେ କହିଲା, 'ନ ଥିଲେ ବରଂ ଭଲ !'

ବେଞ୍ଚରେ ବସି ରହି ସେ ଦୀର୍ଘଶ୍ୱାସ ଛାଡ଼େ ଏବଂ ହତାଶ ଭାବରେ ମଥା ହଲାଏ । ସେତେବେଳେ ପାଖ ଘରେ ଜୋରରେ ଆଲୋଚନା ଚାଲିଥାଏ । ଟିକିଏ ଟିକିଏ କଥା କାନରେ ବାଜେ : ଶୋଷକ ସମ୍ପ୍ରଦାୟର ଅତ୍ୟାଚାର··· ସର୍ବହରାମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ··· ଆନ୍ଦୋଳନ··· ସଭା ସମିତି··· ପ୍ରୋଗ୍ରାମ· · ଇତ୍ୟାଦି । ଏହିସବୁ କଥା ସେ ଶୁଣି ବି ଶୁଣେ ନାହିଁ, ସେ ଶିକାରୀ ବିଲେଇ ଭଳି ଘର ଭିତରର ଦରଜା ଆଡ଼କୁ ଲୟ ଦୃଷ୍ଟିରେ ଅନାଇ ରହେ । ହଠାତ୍ ଭାସି ଆସେ କରୁଣ ସ୍ୱରରେ ଗାଉଥିବା ପିଲା-ଭୁଲାଣିଆ ଗୀତର ଧୂଳି ଗୁର ପଦ । ଅଳିଭିଆ ଏଲସିଲ୍ଭାର ପୁଅକୁ ଶୋଇ ପକାଉଥିଲା । ଇତ ମଧ୍ୟରେ ପିଲାଟି ବର୍ଷର ଦୁଧ ଖାଇ ମୋଟାସୋଟା ହୋଇ ଯାଇଛି । ତାକୁ ଦେଖି ଦେଖି ଅଳିଭିଆର ଲୁଚିସିର କଥା ମନେପଡ଼େ, ଗୀତ ଗାଉଁ ଗାଉଁ ତାର ଗଳା ପଡ଼ିଯାଏ । ଯଦି ଲୁଚିସି ଏହି ଛଅ ମାସ ମାଆର ବକ୍ଷର ଦୁଧ ପାଇ ଥାଆନ୍ତା, ତାହେଲେ ସେ କି ମୋଟାସୋଟା ହୋଇ ଯାଇ ନ ଥାନ୍ତା ! କିଏ ଜାଣେ, ଧନ ମୋର କେମିତ ଅଛି । ମଝିରେ ମଝିରେ ସେ ଲୁଚିସିକୁ ସ୍ୱପ୍ନରେ ଦେଖେ— ରୋଗା, ହାଡ ବାହାରି ପଡ଼ିଲାଣି, ଗଳାଟା ସରୁ, ପ୍ରକାଣ୍ଡ ମୁଣ୍ଡଟା ଟଳମଳ ହୋଇ ଥରେ ଏ କାନ୍ଧ ଉପରେ ତ ଥରେ ସେ କାନ୍ଧ ଉପରେ ଢଳି ପଡ଼ୁଛି । ଅଳିଭିଆ ଶିହରି ଉଠେ, ଭୟରେ ତାର ହାତ ଗୋଡ଼ ପଥର ପରି

ଛାଣି ହୋଇଯାଏ । ହାୟ ଭଗବାନ, ମୋ ଧନର ଏପରି ଦଶା କିଏ କଲା । ସ୍ୱପ୍ନରେ ସେ ତତ୍‌କ୍ଷଣାତ୍ ପିଲାଟିକୁ ଦୁଧ ଦେବାକୁ ଯାଏ, ଅଉ ଲବ୍‌ସି ତା ଅଡ଼କୁ ଝଟମଟ କରି ଅନାଇ ମୁହଁ ଫେରାଇ ନିଏ । କି ତୀବ୍ର ବିଦ୍ୱେଷର ଦୃଷ୍ଟି, ଠିକ୍ ତା ବୁଢ଼ୀ ଶାଶୁ ପରି । କଦର୍ଯ୍ୟ ସ୍ୱପ୍ନ— ଅନ୍ଲିଭିୟା ଭୟରେ ଚିତ୍କାରି ଉଠେ । ରାତି ସାରା ତାକୁ ନିଦ ହୁଏ ନାହିଁ । ଶୋଇ ରହି ସେ ଛଟପଟ ହେଉଥାଏ— ଲବ୍‌ସିର ସେହି ତିରସ୍କାରପୂର୍ଣ୍ଣ ଚାହାଣୀଟା ତା ଛାତିରେ ଯେମିତି କଣ୍ଟା ପରି ଫୁଟିଯାଏ ।

ଏରସିଲ୍ୟା ନିକଟରେ ତାର ଦୁର୍ଭାବନା ବିଷୟ ଜଣାଇବା ପାଇଁ ଅନ୍ଲିଭିୟାକୁ ଭୟ ଲାଗେ । ଘନ ଘନ ଦେଶର ଖବର, ଲବ୍‌ସିଙ୍କ ଖବର ଜାଣିବାକୁ ଚାହିଁଲେ ସେ ବିରକ୍ତ ହୁଏ, ରାଗିଯାଏ । ବୋଧହୁଏ ସେ ଭାବେ ଯେ ନିଜ ପିଲା ପ୍ରତି ଯାହାର ଏତେ ମମତା, ସେ କଣ ପର ପିଲାର ସେମିତି ଯତ୍ନ ନେବ ! ଏହା ଯେ ତାର ମିଥ୍ୟା ସନ୍ଦେହ, ଅନ୍ଲିଭିୟା ଛାତିରେ ହାତ ଦେଇ ତାହା କହିପାରେ । ଏମିତି କଥା ତାର ଅତି ବଡ଼ ଶତ୍ରୁ ବି କହି ପାରିବ ନାହିଁ— ନୋନିଦା ଅଡ଼କୁ ଅନାଇଲେ ବୁଝା ଜଣାଯାଏ ଧାଈର ଯତ୍ନରେ କେଉଁଠି କୌଣସି ତ୍ରୁଟି ନାହିଁ— କେମିତି ସୁନ୍ଦର ମୋଟାସୋଟା ଦେହଟା ତାର ହୋଇଛି ।

ଗାଆଁରେ ସେ ଯେଉଁ ସିନ୍‌ନାରିନାକୁ ଚିହ୍ନିଥିଲା ଆଜିର ଏରସିଲ୍ୟା ତାହା ଠାରୁ ସମ୍ପୂର୍ଣ୍ଣ ଭିନ୍ନ ଜୀବ । ଆଶ୍ଚର୍ଯ୍ୟ ଯେ ଦିନେ ତାର ଖେଳ-ସାଥୀ ଥିଲା, ସେହି କଥା ସେ ଯେମିତି ଏକାବେଳେ ଭୁଲି ଯାଇଛି— ଏପରି ବ୍ୟବହାର କରୁଛି, ଯେମିତି କି ସେ ଦାସୀ ଠାରୁ ବି ଅଧମ । ମୁନିବାଣୀକୁ ଖୁସି କରିବା ଲାଗି ସେ ତ କେବେ ତାର ଚେଷ୍ଟାର ତ୍ରୁଟି କରି ନାହିଁ । ମାରଗେରିଟା ନାମରେ ସେହି ଛୋଟ ରୁକ୍ମଣୀଟା ବିଦାୟ ନେବା ପର ଠାରୁ ସେ ଏହି ଘରର ସବୁ କାମ ଖୁସି ମନରେ କରେ । ପୁଅକୁ ମଣିଷ କରିବା କାମ ଛଡ଼ା ବି ସେଏ

ଗୁଡ଼ାଏ ଉପୁର କାମ, ଅଥଚ ସେ ଧନକ ପାଇଁ ହେଲେ ବି ଅନୁଯୋଗ କରି ନାହିଁ । ସେ ଜାଣେ, ଏରସିଲ୍ୟାର କୁହୁ କୁହୁ ସ୍ୱଭାବ— ଟିକଏ କଥାରେ ବିରକ୍ତ ହୋଇଯାଏ । ତେଣୁ ତାର ସର୍ବଦା ଚେଷ୍ଟା, ସିନୋରିନାର ମିଜାଜ ଯେମିତି ବିଗିଡ଼ି ନ ଯାଏ । ତା ତୁଣ୍ଡରେ ସାରା ଷଣ ସେହି ଏକା କଥା—

'ଏଇ ଯେ ସିନୋରିନା, ଏଇ ଯେ ମୁଁ । ସବୁ ଠିକ୍ ହୋଇଯିବ ।... କିଛି ଚିନ୍ତା କର ନାହିଁ ।' ଏତେ କାମ ସେ କରେ, ଅଥଚ ଏରସିଲ୍ୟାର ତାହା ପ୍ରତି ଭଲେ ମାନି ଦରଦ ନାହିଁ । ଦନକର ଘଣ୍ଟା କଟୁଛି । ସିସିଲିରୁ ଚିଠି ଆସିଛି । ପିଅନ ହାତରୁ ଚିଠି ଗୁଡ଼ାକ ନେଇ ଅନ୍ନୁଞ୍ଜିଆ ଦୌଡ଼ିଗଲା ମୁନିବାଣୀଙ୍କ ନିକଟକୁ:

'ସିନୋରିନା ! ସିନୋରିନା !'

'କଣ ହୋଇଛି ? ଏତେ ପାଟିଗୋଳ କାହିଁକି ? ଯେମିତି ଘରେ ଜୁଇ ଲାଗିଛି ।'

ଏରସିଲ୍ୟାର ଏମିତି ବକବା ଶୁଣି ତାର ହୃଦୟର ରକ୍ତ ହିମ ହୋଇଗଲା, ଆଉ ସେ ସ୍ତବ୍ଧ ଭାବରେ ଠିଆ ହୋଇ ରହିଲା । ଚିଠି ପଢ଼ିସାରି ଏରସିଲ୍ୟା ଯେତେବେଳେ ସେଗୁଡ଼ାକ ଲଫାପା ଭିତରେ ପୁରାଉଛି, ସେତେବେଳେ ଡର ଡର ଆନ୍ନୁଞ୍ଜିଆ ତାକୁ ପଚାରିଲା : 'ଲୁଇଗିର କିଛି ଖବର ଅଛି ଚିଠିରେ ?'

'ହଁ, ଲେଖିଛି, ତୋର ପୁଅ ଭଲ ଅଛି ।'

'ଆଉ ବୁଢ଼ୀ ? ମୋ ଶାଶୁ ?'

'ସେ ବି ଭଲ ଅଛି ।'

ଏହି ସାମାନ୍ୟ ଦୁଇଟି କଥାରେ ତାକୁ ସନ୍ତୁଷ୍ଟ ରହିବାକୁ ହୁଏ । ତାହା ସହିତ ଆଉ କୌଣସି ଖବର ନାହିଁ ତ ? ଆହା, ସେ ଯଦି ନିଜ ହାତରେ ଚିଠି ଲେଖି ପାରୁଥାନ୍ତା ! ନିଜ ଅଙ୍କାଟାକୁ ସେ ଧିକ୍କାର

କରେ । ଘର ଛାଡ଼ ଚାଲି ଆସିଲା ପରେ ତାର ମନ ଖରାପ ହେଲା, ତାହା ଅନୁରାଧା ଜାଣିଥିଲା । କିନ୍ତୁ ଏହା ତ କେବଳ ମନ ଖରାପ କରିବା নୁହେଁ— ଏହା ଯେମିତ ଜଳି ପୋଡ଼ି ମରିବା !

ସେ ନିଜ ମନକୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କରେ । କିଛି ଦିନ ପରେ ତ ନୋନାଦାର ସାତ ମାସ ପୂରିବ । ଡାକ୍ତର ଠିକ୍ କରିଛନ୍ତି, ନଅ ମାସରେ ଦୁଧ ଛଡ଼ାଇବାକୁ ହେବ । ସୁତରାଂ ଆଉ କେତୋଟା ଦିନ ମାତ୍ର ତାର ଧୈର୍ଯ୍ୟ ଧରି ଏଠାରେ ରହିବା । ଆଉ ଦୁଇଟି ମାସ ନରକ ଯନ୍ତ୍ରଣା ! କପାଳ କଥା— କିଏ ଏଡ଼ି ପାରିବ ? ଯାହାକୁ ଏଡ଼ି ହେବ ନାହିଁ, ତାକୁ ମାନି ନେବା ହିଁ ଭଲ ।

ଯେଉଁ ଦିନ ନୋନାଦାର ସାତ ମାସ ପୂରିଗଲା, ସେହି ଦିନ ଫେର୍ ତାର ପ୍ରଥମ ଦୁଧ-ଦାନ୍ତ ଦେଖାଗଲା । ପରିବାରରେ ଗୋଟାଏ ଉତ୍ସବର ଧୂମଧାମ ଲାଗିଲା । ଆସନ୍ନ ମୁକ୍ତିର ସମ୍ଭାବନାରେ ଅନୁରାଧାର ମନ ବି ଆନନ୍ଦରେ ଭରିଗଲା । ଅନ୍ତରାଳରେ ସେହି ଦିନ ଯେ ତାର ସର୍ବନାଶର ଆୟୋଜନ ହେଉଥାଏ, ଏପରି ଆଶଙ୍କା ଭୁଲ୍‌ରେ ବି ତା ମନକୁ ଛୁଇଁ ନାହିଁ ।

ବାହାର ଦରଜାରେ ଘଣ୍ଟି ବାଜିଲା । ଅନୁରାଧା ଭାବିଲା, ବୋଧହୁଏ ପିଅନ ଆସିଛି । ଏକା ଦୌଡ଼ାକେ ଯାଇ ସେ ଦୁଆର ଖୋଲିଦେଲା । ଆଜି ହୁଏତ ବା ସିବିଲରୁ ଡାକ ଆସିଛି । ଦରଜା ଖୋଲି ଦେବା ପରେ କଣ ଯେ ଘଟିଲା, ତାର କିଛି ମନେ ନାହିଁ । ମଥାରେ ଗୋଟାଏ ପ୍ରଚଣ୍ଡ ଆଘାତ ଲାଗି ସେ ବେହୋସ ହୋଇ ଚଟାଣ ଉପରେ ପଡ଼ିଗଲା । ଜ୍ଞାନ ଫେରି ଆସିବା ପରେ ସେ ଦେଖିଲା— ମାଲୁକୋ ଠିଆ ହୋଇଛି, ଏବଂ ଗୋଇଠା ମାରିବା ପାଇଁ ତା ମୁହଁ ଉପରେ ବୁଟ୍ ସହିତ ପାଦ ଟେକି ରଖିଛି । କ୍ରୋଧରେ ତାର ସମସ୍ତ ଶରୀର ଥର ଥର ହୋଇ କମ୍ପୁଛି, ଆଉ ମୁଖରୁ ସବୁ ରକ୍ତ ଯେମିତି ପୋଛି ହୋଇ ଯାଇଛି ।

'ହାରାମଜାଦୀ ! କାହିଁ ତୋ ମୁନିବ !'

ଆଣ୍ଡ୍ରିସ୍କାର କ୍ରନ୍ଦନ ଶୁଣି ସିକୋର ଓମାର, ଏରଫିଲ୍ୟା ଓ ରମିରେଜ୍କି ବାହାର ଘରକୁ ଦୌଡ଼ି ଆସିଲେ । ମୋର୍ବ୍ଦ କୋଟର କଲରଟା ଧରି ଝୁଙ୍କାଇ ଦେଇ ଦେଇ ସେ କହିଲା— 'ମୋ ପୁଅ ମରି ଯାଇଛି— ଜାଣି ତ ସେ କଥା ?'

ଆଣ୍ଡ୍ରିସ୍କା ଅଡ଼କୁ ଭୁଲି ପଡ଼ି ସେ ପାଗଳ ଭଳି ଚିତ୍କାର କଲା ।

'ଲୁଡ଼ମି ମରି ଯାଇଛି, ଆଉ ଫେରିବ ନାହିଁ । ନବାବ-ପୁତ୍ର ଏଥିଣି କଣ କରିବେ— କ୍ଷତି ପୂରଣ ଦେବେ, ନା ପୁଅ ବଦଳରେ ପୁଅ ଦେବେ ?'

ଉତ୍ତରରେ ଏରଫିଲ୍ୟାର ମୁଖ ବନ୍ଦ— କହିଲା, 'ଲୋକଟା ପାଗଳ ହେଲା ନା କଣ ?'

ମୋର୍ ଷୁଦ୍ର ମଣିଷଟିଏ— ସହସା ନିଜକୁ ତାହାର ହାତରୁ ମୁକ୍ତ କରି ତାର ଶରୀରର ସମସ୍ତ ଶକ୍ତି ପ୍ରୟୋଗ କରି ତାକୁ ଦରଜା ଆଡ଼କୁ ଠେଲି ଦେଲା । ବାହାର ଅଡ଼କୁ ଅଙ୍ଗୁଳି ଦେଖାଇ ସେ କହିଲା, 'ବାହାରି ଯା କହୁଛି । ବାହାର ମୋ ଘରୁ !'

'ମୁହଁ ସମ୍ଭାଳି କଥା କୁହ । ମୁଁ କାହାକୁ ପରବାଏ କରେ ନା । ଯାହା ଥିଲା ସବୁ ଯାଇଛି— ଜୀବନରେ ଆଉ ମୋର ମାୟା ନାହିଁ । ମାଆ ପଥର ଶଯ୍ୟାଶାୟୀ ହୋଇଛି, ପୁଅ ମରି ଯାଇଛି । ମୋର କଣ ? ମୁଁ ଶୀଘ୍ର ବାହାରି ଯାଉ ନାହିଁ । ଅଗେ ତୋ ଉପରେ ଚେପ ପକାଏ, ତା ପରେ ଏହି ହାରାମଜାଦୀକୁ ତା ମଥାର ବାଳ ଧରି ଟାଣି ନେଇଯିବି । ...... ଉଠ୍, କହୁଛି ଅଲକ୍ଷଣି !'

ପାଟିଗୋଳ ଯେତେବେଳେ ଖୁବ ମାତ୍ରାରେ ଚାଲିଛି, ସେତେବେଳେ ଟିକିଏ ଫାଙ୍କରେ ରମିରେଜ୍କି ବାହାରି ଯାଇଥିଲା ।

ଧଇଁସଇଁ ହୋଇ ସେ ଫେରି ଆସିଲା, ସାଙ୍ଗରେ ତାର ଦୁଇ ଜଣ ପୋଲିସ । ସେତେବେଳେ ଉତ୍ତେଜନାରେ ମୋର ଜମ୍ପ ଚୁକ୍ତି— ପୋଲିସକୁ କହିଲା, 'ନେଇଯାଅ ତାକୁ, ତା କାନ ଧରି ନେଇ ଯାଅ । ବଦମାସଟା ମୋ ଘରେ ମୋତେ ଅପମାନ ଦେବାକୁ ଆସିଥିଲା...... ଶୋଧିବାକୁ ଆସିଥିଲା ।'

ପୋଲିସ ଦୁଇ ଜଣ ମାରୁଛୋକୁ ଦୃଢ଼ କରି ଧରିଲେ । ସେ ପାଟି କରୁଛି, 'ମୋ ସ୍ତ୍ରୀକୁ ନେବି— ତାକୁ ମୁଁ ଛାଡ଼ିବି ନାହିଁ !'

ସେ ଚିତ୍କାର କରୁଛି ଆଉ ଝଣା ଓଟରା କରୁଛି । ଶେଷକୁ ପୋଲିସ ଦୁହେଁ ତାକୁ ଟୋଟାରି ଟାଣି ନେଇ ଚାଲିଗଲେ । ମୋର ସେମାନଙ୍କ ପଛେ ପଛେ ଥାନାକୁ ଯାଇ ତାର ନାମରେ ନାଲିସ କରି ଦେଇ ଆସିଲା ।

ତା ପର ଦିନ ସିନୋର ମାନଫ୍ରେଡଙ୍କ ଠାରୁ ଚିଠି ଆସିଲା— ଯଥା ସମୟରେ ବହୁ ପରେ । ଚିଠିରେ ଲକ୍ଷ୍ମଣିର ମୃତ୍ୟୁ ଓ ମାରୁଛୋର ବୁଢ଼ୀ ମାଆର ଅସୁସ୍ଥତା ଖବର ଅଛି, କିନ୍ତୁ ଉତ୍ତର କୌଣସି ଉଲ୍ଲେଖ ନାହିଁ ।

ମୋର ପ୍ରଥମେ ଭାବିଥିଲା, ଲୋକଟି ବୋଧହୁଏ ଦ୍ୱୀପାନ୍ତରରୁ ପଳାଇ ଆସିଛି । ପରେ ଶୁଣିଲା, ତାର ବୁଢ଼ୀ ମାଆ ଡାକ୍ତରଖାନାରୁ ଦରଖାସ୍ତ କରିବାରୁ ପୋଲିସ କର୍ତ୍ତୃପକ୍ଷ ତାର ଶାସ୍ତିର ଅବଶିଷ୍ଟ ବାତିଲ କରି ଦେଇଛନ୍ତି । ରୋମର ପୋଲିସ ତାକୁ ସିସିଲି ଚାଲାଣ କରି ଦେଲେ । ତାକୁ ସାବଧାନ କରି ଦେଇଥିଲେ— ତିନି ବର୍ଷ ସେ ନଜରବନ୍ଦୀରେ ରହିବ, କିଛି ଗୋଳମାଳ କଲେ ପୁଣି ତାକୁ ସେହି କଳାପାଣିକୁ ପଠାଇ ଦିଆଯିବ ।

ଉତ୍ତର ହାତରେ ନିଗ୍ରହ, ତା ଉପରେ ଲକ୍ଷ୍ମିପ୍ରିୟର ମୃତ୍ୟୁ ସମ୍ବାଦ— ଏହି ଦୁଇ ଘଟଣାର ସଂଯୋଗରେ ଅନ୍ନପୂର୍ଣ୍ଣାଙ୍କ ଅବସ୍ଥା ଶୋଚନୀୟ ହୋଇ ପଡ଼ିଲା । ତିନି ଦିନ ଭୀଷଣ ଜ୍ୱର, ଘୋର ବିକାର, ମନେ ହେଲା ପାଗଳ ହୋଇଯିବ । ଧୀରେ ଧୀରେ ଯେମିତି ସମୟ କଟିଗଲା, କ୍ରମେ କ୍ରମେ ସେ ପ୍ରକୃତିସ୍ଥ ହେବାକୁ ଲାଗିଲା । ଜ୍ୱରର ପରବର୍ତ୍ତୀ ପ୍ରଶାନ୍ତ ଅଥଚ ଥମଥମ ଭାବଟା ଏଯାଏଁ ଯାଇନାହିଁ । ସେ ଆଖି ଖୋଲି ଥାଏ, କିନ୍ତୁ ଦେଖେ ନାହିଁ । କେହି କିଛି କହିଲେ ମୁଣ୍ଡ ହଲାଏ, କିନ୍ତୁ କଥାଟା ବୁଝିଛି ବୋଲି ବୋଧହୁଏ ନାହିଁ । ଏହା ଅପେକ୍ଷା ଯେମିତି ପୂର୍ବର ସେହି ଅବସ୍ଥାଟା ଭଲ ଥିଲା ।

ଅସୁସ୍ଥ ହେବା ସଙ୍ଗେ ସଙ୍ଗେ ତା ବକ୍ଷରୁ ଦୁଧ ଶୁଖିଗଲା । ବାଧ୍ୟ ହୋଇ ପିଲାଟିକୁ ଦୁଧ ଛଡ଼ାଇବାକୁ ପଡ଼ିଲା । ଘରେ ମହା ହୈ ଚୈ କାଣ୍ଡ । ଦିନଙ୍କ ପାଇଁ ସେ ପିଲାଟିକୁ ଦେଖାଶୁଣା କରି ନାହିଁ, ଏଯାଏଁ ଏଗରପିଲାଙ୍କ ପାଖରେ ସେ ବା କାହିଁକି ରହିବ ? ଦୁଇ ରାତି ତ ଶୋଇ ଦେଲା ନାହିଁ— ସବୁବେଳେ ଧାଇଁ ମା ପାଇଁ କାନ୍ଦିଲା । ମୁହୂର୍ତ୍ତିକ ପାଇଁ ଶାନ୍ତ ନାହିଁ— ତା ଉପରେ ଫେର୍ ଘର ଦୁଆର କାମ, ନୂଆ ଚାକରାଣୀକୁ କାମ କରାଇବା । ଅନ୍ନପୂର୍ଣ୍ଣାଙ୍କୁ ବି ତ ଟିକିଏ ଅଧେ ଦେଖିବାକୁ ହେବ ! ଏଗରପିଲାଙ୍କର ମିଜାଜ ଏକଦମ ବିଗିଡ଼ି ଯାଇଛି । ସବୁବେଳେ ମୋତିକୁ ସେ ବକୁଛି । ସେ ବାପରା ହାତରେ ଖବରକାଗଜ ଧରି ଏପାଖ ସେପାଖ ଘୁରିଫେରି ବୁଲୁଛି, ଅଙ୍କ ବୁଝି ପାରୁ ନାହିଁ କଣ କରିବାକୁ ହେବ ।

'କିଛି କରିବାକୁ ହେବ ନା କଣ ?'

'ପାଗଳାମି ରଖି ଦିଅ ! ତୁମର କଣ ଆଖି ନାହିଁ କି ? ଦେଖି ପାରୁ ନାହିଁ, ଏକା କେତେ କାମ ସମ୍ଭାଳୁଛି । ଘରର କାମ, ପୁଅର ଖିଜମତ, ତା ଉପରେ ଯଦି ସେହି ବଡ଼ଲୋକ ସ୍ତ୍ରୀ ସେବାଟାର

ହେଫାଜତ କରିବାକୁ ହୁଏ ତ, ମୁଁ ଆଉ କରି ପାରିବି ନାହିଁ କହି ଦେଉଛି । ତୁମେ ତ ପାରୁଛ ବାହାରି ଯାଇ ଗୋଟାଏ କୌଣସି ଅନାଥ ଆଶ୍ରମରେ କି ଡାକ୍ତରଖାନାରେ ତାକୁ ଭର୍ତ୍ତି କରି ଦେଇ ଆସ । ବୁଝିଲ ତ, ତୁମକୁ ଆଉ ଅଁ କରି ଠିଆ ହୋଇ ରହିବାକୁ ହେବ ନାହିଁ ।'

ଏଣୁ ସ୍ତ୍ରୀ ତା କଥା ଶୁଣି ଅବାକ ହୋଇ କହିଲା, 'ତାକୁ ଅନାଥ ଆଶ୍ରମକୁ ପଠାଇବ ?'

'ହଁ ଓଗୋ ହଁ ! ଦରଦ ଯେ ଉଚ୍ଛୁଳା ପଡ଼ୁଛି, ଆଦରର ସେ ଅନ୍ତ ନାହିଁ । ସେତେ ମାୟା ମମତା ଏବଂ ସେହି ଦାୟିତା ପାଇଁ, ଆଉ ମୁଁ ବୋଧହୁଏ ଭାସି ଆସିଥିଲି ।' ରାତି ରାତି ଆଖିକୁ ନିଦ ନାହିଁ, ବାଳ କୁଣ୍ଡାଇବାକୁ ବି ସମୟ ଟିକିଏ ନାହିଁ — ତାହା ତ ଆଜି ତୁମ ଆଖିରେ ପଡୁ ନାହିଁ ! ଖଟି ଖଟି ଏ ଘରେ ହାଡ଼ ମାଂସ ସଢ଼ି ଗଲାଣି । ମୁଁ ଏ ଘରର ସଭିଙ୍କର ଦାସୀ — ନା ! ମାଇକିନାଟା ଭଲ ହୋଇପାରେ — ତାକୁ ଦେଖି ନେବି । ତାକୁ ଦୂର କରି ଦେବି — ସେ ପାପକୁ ବିଦାୟ ନ କରିବା ପର୍ଯ୍ୟନ୍ତ ମୋର ଶାନ୍ତି ନାହିଁ ।'

ତାକୁ ଶୋଧିଲା ସିନା, କିନ୍ତୁ କାମରେ ତାହା ପ୍ରୟୋଗ କରି ପାରିଲା ନାହିଁ । ଅଲ୍ଲିଭିୟାର ଶରୀରଟା ଯେତେବେଳେ ଆରୋଗ୍ୟ ହେବା ଉପରେ, ସେତେବେଳେ ସେ ଦିନେ କଥା କଥାକେ ତାକୁ ଜଣାଇ ଦେଲା ଯେ ତାର ସ୍ୱାମୀ ମାସର ଦରମା ବାବଦକୁ ଅନେକ ଟଙ୍କା ତାଙ୍କ ପାଖରେ ଜମା ଅଛି ।

ନୋନଦାକୁ ଛାତିରେ ଜାକି ଧରି ଅଲ୍ଲିଭିୟା କହିଲା, 'ଟଙ୍କା ପଇସା ନେଇ ମୁଁ କଣ କରିବି, ଭଉଣୀ ! ଏହି ଧନମଣିଟି ମୋର ସର୍ବସ୍ୱ ।' ନୋନଦା ପୁଣି ତା କୋଳକୁ ଫେରି ଆସିଛି । ଦୁଧ ପାଏ ନାହିଁ, କିନ୍ତୁ ଠିକ୍ ସେହି ଆଗ ଭଳି ସେ ତାକୁ ଭଲ ପାଏ । ଓସେ ଆରୋଗ୍ୟ ହେବା ପରେ ପ୍ରଥମେ ଯେଉଁ ଦିନ ଲୁକ୍ରେସୀଣୀ

ନୋଳନଦାକୁ ତା ବଉଣା ପାଖକୁ ନେଇ ଆସିଲା, ସେହୁ ଦନ ସୁଅ ଆଡକୁ ଗୃହଁବା ପାଇଁ ତାର ଇଚ୍ଛା ହେଉ ନ ଥିଲା । ଆନ୍ନଭିସ୍ତା ଯେଉଁ ପୁଅକୁ ଗୃହେଁ, ସେ ଆଉ କେବେ ତା କୋଳକୁ ଫେରି ଆସିବ ନାହିଁ । କନ୍ତୁ ନୋଳନଦା ଯେତେବେଳେ ଛୋଟ ଛୋଟ ହାତ ଦୁଇଟି ବଢ଼ାଇ ଅଧୀର ଭାବରେ ତା ଆଡ଼କୁ ଝୁଙ୍କି ପଡ଼ିଲା, ସେତେବେଳେ ସେ ଆଉ ସ୍ଥିର ହୋଇ ରହି ପାରିଲା ନାହିଁ । ଦୁଇ ହାତରେ ପୁଅକୁ ଛାତି ଉପରକୁ ଟେକି ନେଲା, ଯେମିତକି ନୋଳନଦାହିଁ ତାର ଲଉପ୍ସି । ଏତେ ଦନର ନାରୁଙ୍କ ଶୋକର ବନ୍ଧ ଅଶ୍ରୁର ବନ୍ୟା ହୋଇ ଝରି ପଡ଼ିବାକୁ ଲଗିଲା ।

'ସୁନା ମୋର, ଯାଦୁ ମୋର । କଣ ଗୃହୁ ବାବା ମୋ ଠାକୁ ? ଟୋପାଏ ଦୁଧ ନାହିଁ । ତୋର ଧାଇମା ମରି ଗଲାଣି ...... ।'

ଲଉପ୍ସି କପରି ଭାବରେ ମାରିଗଲା ସେହି ଖବରଟା ପାଇଲେ ସେ ଯେମିତ ଟିକାଏ ଶାନ୍ତି ଲଭନ୍ତା । ମରି ତ ଗଲା— କନ୍ତୁ ଖାଇବାକୁ ନ ପାଇ, କ ଅଯତ୍ନରେ— କଛି ନ ଜାଣି ପାରିଲେ ସେ ତା ମନକୁ କେମିତ ବା ବୁଝାଇବ ! କଛି ଜାଣି ପାରବ ନାହିଁ ବା କଣ ସେ ? ଏ ଯେମିତ ଗୋଟାଏ କୁକୁର ଛୁଆ ମରି ଯାଉଛି । ଆହା ଧନ ମଣିରେ, ବାପ-ମାଆ ଛେଉଣ୍ଡ ଅନାଥ ପିଲଟି ପର ଏ ପର ଘରେ ଅଯତ୍ନରେ ମାରି ପଡ଼ିଲା ! ହାୟ ଭଗବାନ !

ଆନ ଭିସ୍ତାର ବେଦନା ଓ କଷ୍ଟ କେହି ବୁଝନ୍ତି ନାହିଁ । ଏରପିଲଯ୍ସା ତ ଆଦୌ ନୁହେ । ଓଲଟି, ବରଂ ବିରକ୍ତ ହୁଏ— ସାତ ମାସ ପୂରିବା ଝଣି ତାର ଦୁଧ ଶୁଖିଗଲା ବୋଲି । ସେ ତ ଗଇଡ଼ବ— ମାଆର ପ୍ରାଣ । ମାଆ ନକଟରେ ତାର ନାଜ ପିଲ ଛଡ଼ା ଜଗତରେ ଅଉ କେହି ନାହିଁ । ତାର ଶିଶୁଟି ମାରି ଯାଉଛି, ସେଥିରେ ଏରପିଲଯ୍ସାର କଣ ! ବିରକ୍ତ ହୋଇପାରେ, କନ୍ତୁ ତାର ଦୁଃଖ ନାହିଁବ ହେବ । ଆନ ଭିସ୍ତା ମଢ଼ିଓର ମନିବେ ହାତେ,

ସିନେମାର ଦୁଃଖ ନ କଲା ନାହିଁ । କିନ୍ତୁ ଏତିକି ତ ତାର ବୁଝିବା ଉଚିତ ଯେ ନୋନଦା ଉପରେ ମୋର ବି କିଛି ଦାବୀ ଥାଇ ପାରେ। ସେ ପେଟରେ ତାକୁ ଧରିଛି ସତ, କିନ୍ତୁ ନିଜ ସ୍ତନର ଦୁଧ ଦେଇ ତ ମୁଁ ତାକୁ ମଣିଷ କରିଛି । ମୋର ତ ଏବେଣି ସେହି ନୋନଦା ଛଡ଼ା ଆଉ କେହି ନାହିଁ !

ପୁଅକୁ ଦେଖାଶୁଣା-କରିବା ଝମେଲା ତାର ଆଉ ନାହିଁ ବୋଲି ଏଉପିଲସ୍ୟା ଖୁସି ହୋଇଛି । କିନ୍ତୁ ସେ ମନେ ମନେ ସ୍ଥିର କରିଛି, ଲିଓନଦାକୁ ଦାସୀର ଏତେ ଚେଲୁଆ ହେବାକୁ ଦେଲେ ଚଳିବ ନାହିଁ— ମାଇକିନାଟା ଏମିତି ବ୍ୟବହାର କରେ, ଯେମିତିକି ପିଲାଟି ତାର ନିଜର । ତାକୁ ଏ ଦାସୁ ଘଉଡ଼ିବା ପାଇଁ ଯେ ଦୃଢ଼ ସଂକଳ୍ପ । କାହିଁକି ବା ତାକୁ ରଖିବ ? ଘର କାମ ଜାଣେ ନା, ନା ପୁଅର ଅୟା ହୋଇ ପାରିବ ! ତାହା ଛଡ଼ା ଏଉପିଲସ୍ୟା ଚାହେଁ, ତା ପୁଅ ଯେମିତି ସଭ୍ୟ ମାର୍ଜିତ ଇଟାଲିୟାନ ଭାଷା ଶିଖେ ! ସେ ଦିଗରୁ ବି ଅନଶିୟା ଅଚଳ ! ସିସିଲିର ଗାଉଁଲି ଭାଷା ଛଡ଼ା ସେ ଆଉ କୌଣସି ଭାଷା ଜାଣେ ନାହିଁ । ନା, ତାକୁ ଏଠାରେ ଆଉ ରହିବାକୁ ଦିଆଯିବ ନାହିଁ ! ତାକୁ ରଖିବା ଅର୍ଥ ମୋରିକୁ ସୁନ୍ଦର ମୁଖ ଦେଖିବା ପାଇଁ ସୁଯୋଗ ଦେବା । ମୋରିକୁ ବି କହିବାକୁ ହେବ, ସେ ଯେମିତି ତାକୁ ତଡ଼ି ଦିଏ ।

ମୋରି କହିଲା, 'ମୁଁ କାହିଁକି ତାକୁ ତଡ଼ିବାକୁ ଯିବି ?'

'କାରଣ, ତୁମେ ଯେ ହେଲ ଘରର ମୁରବୀ । ତା ଛଡ଼ା ଦରଦ ଦେଖାଇ ତୁମେ ଯେ ତାର ମୁଣ୍ଡ ଖାଇଛ । ବୁଝି ପାରୁ ନାହିଁ ?'

'ମୁଁ ? ମୁଁ ଫେର ତାକୁ ଦରଦ ଦେଖାଇବାକୁ ଗଲି କେବେ?'

'ତୁମେ କଣ କହିବାକୁ ଚାହଁ, ଏଟା ମୋର ମନ-ଗଢ଼ା କଥା ? ଦେଖି ପାରୁ ନାହଁ ତାର ଢଙ୍ଗଢାଙ୍ଗ, ଯେମିତିକି ଏ ସବୁଟା ତାର ନିଜର । ଗୋଟିଏ ପିଲାର ଦୁଇ ଦୁଇଟା ମାଆ, ଆଉ ଏଟା

ସବୁ ଭୁଲ ବୁଝିବା ସ୍ୱହ୍ରଣୀ— ଏହା ତୁମକୁ ଭଲ ଲାଗି ପାରେ, ମୁଁ କିନ୍ତୁ ବରଦାସ୍ତ କରି ପାରିବି ନାହିଁ ।'

ଏଣୁ ତେଣୁ ଜାଣେ, ସ୍ତ୍ରୀ ତର୍କ କରିବାକୁ ଗଲେ ବ୍ୟାପାର ବଡ଼ଧରଣର ଆକାର ଧାରଣ କରିବ, ତଥାପି ସେ ନିଜ ପକ୍ଷରୁ ଓକିଲାତି କରିବାକୁ ଛାଡ଼ିଲା ନାହିଁ । 'ଏ ସବୁ ତୁମେ କଣ ଯା ଇଚ୍ଛା ତାହା କହୁଛ, ଶୁଣେ ? ଛୋଟ କଥା ସବୁ ଜଣକ ତୁମେ ଛିନ୍ନଭିନ୍ନ କରି ଦେଉଛ । ଏହି ସବୁ ଅମୂଳକ ସନ୍ଦେହ କରି କିଛି ଲାଭ ଅଛି ? ତୁମେ ଦେଖି ପାରୁ ନ, ମୁଁ ସଦା ସର୍ବଦା କାମ ଓ ପଢ଼ାପଢ଼ିରେ ବ୍ୟସ୍ତ । ଅନ୍ୟ କୌଣସି ସ୍ତ୍ରୀ ଲୋକ ଆଡ଼କୁ ମୁଁ କେଉଁ ଦିନ ନଜର ଦେଇଛି ? ଘରେ ତୁମେ ଯେମିତି ଶାନ୍ତିରେ ରୁହ, ତୁମେ ଯେଉଁଥିରେ ସୁଖୀ ହୁଅ ସେଥିପାଇଁ ନିଜର ପୁଅକୁ ବି ଆଦର କରିବା ଛାଡ଼ି ଦେଇଛି । ଅନିତା ବିଚରାର କିଛି ଦୋଷ ନାହିଁ— ତୁମେ ମିଛରେ ତାକୁ ଅବିଶ୍ୱାସ କରୁଛ । ଥରେ ତା କଥାଟି ଭାବି ଦେଖ ତ । କେଉଁ ସାହସରେ ସେ ପିଲିକୁ ଫେରିଯିବ ? ...... ପିଲାଟି ମରି ଯାଇଛି, ଜାନୁଆର ସ୍ୱାମୀଟା ତାକୁ ଆଉ ଅନ୍ନ ରଖିବ ? ଏଠାକୁ ଧାଇଁ ଚାଲି ଆସିଲା ବୋଲି ତ ସେ ନିଜ ଝିଅଟିକୁ ହରାଇଲା । ଯେଉଁ ପିଲାଟିକୁ ମଣିଷ କରିବା ପାଇଁ ସେ ନିଜ ପିଲାଟି ବିସର୍ଜନ ଦେଲା, ତାହା ପ୍ରତି ଯଦି ତାର ମାୟା ଲାଗିଯାଏ, ତାକୁ କରଛଡ଼ା ଦେବାକୁ ଯଦି ସେ ନ ଚାହେଁ, ତାହାକୁ କଣ ତୁମେ ଦୋଷ ବୋଲି କହିବ ? ଥରେ ଭାବି ଦେଖ ତ ।'

ସ୍ତ୍ରୀ ନିକଟରେ ସେ ଯେଉଁ ଯୁକ୍ତିଗୁଡ଼ିକ ଅବତାରଣା କରୁଛି, ତାହା ତାର ନିଜ ଲେଖାକୁ ସ୍ମରଣ କରାଉଛି । ସେ ଗୁଡ଼ିକ କିଛି ଦିନ ପରେ ସାମ୍ୟବାଦୀ ଯୁବକରେ ତାର ବକ୍ତୃତା ଦେବାର କଥା ! ବକ୍ତୃତା ପାଇଁ ସେ ପ୍ରସ୍ତୁତ ହେଉଛି । ସେ ସ୍ଥିର କରିଛି, ସୁନ୍ଦର

ମିଶ୍ରିତିରେ ଏହି ଯେ ଗୋଟିଏ ମାଆ-ଛଡ଼ଉବା ଶିଶୁର ମୃତ୍ୟୁ ହେଲା— ଏହି ଘଟଣାଟି ଖୁବ୍ ବଡ଼ ଭବ ସେ ତା ବକ୍ତୃତା ମଧ୍ୟରେ ସ୍ଥାନ ଦେବ।

ଏରସିଲ୍ୟା ସ୍ୱଭାବର ଧାର ଧାରେ ନାହିଁ । ବରଂ ଓଲଟି, ବପରୀତ ପଡ଼ିଲା । ତଗଡ଼ଗ ହବ ସେ ସବୁ ବାହାର ଗଲା— ସେତେବେଳେ ଆନା ଇଗ୍ନାଙ୍କୁ କାମରୁ ବାହାରି ଦେବା ପାଇଁ । ସିଜୋବ ମୋର ଛରକ୍ତ ହୋଇ ଚୌକିରୁ ଉଠି ପଡ଼ି ଠିଆ ହୋଇଲା, ଆଉ ବକ୍ତୃତାର ଲିଖିତ ଅଂଶଗୁଡ଼ିକ ଛିଡ଼ାଇ ପୋଡ଼ାଇ ଦେଲା ।

କେତେ ମୁହୂର୍ତ୍ତ ପରେ ଆନା ଇଗ୍ନାର ରୁଦ୍ଧ କନ୍ଦନର ଶବ୍ଦ ଶୁଣାଗଲା । କାତର ସ୍ୱରରେ ସେ ତାର ମୁନିବାଣୀକୁ ଅନୁନୟ କରି କହୁଛି, 'ମୋତେ ତଡ଼ାଇ ଦିଅ ନାହିଁ, ଦରମା ତୁମର ଦରକାର ନାହିଁ, କେବଳ ଦୁଇ ମୁଠା ଖାଇବାକୁ ଦେବ— ତୁମର ଅଇଁଠା ଭଣ୍ଡା ଯାହା ପଡ଼ିଥିବ । ମୁଁ ଏହି ଘରର ଗୋଟାଏ କୋଣରେ ପଡ଼ିଥିବି । ତୁମକୁ ନେହୁରା କରୁଛି, ମୋତେ ତଡ଼ିଦିଅ ନାହିଁ । ମୁଁ ଫେରି ଯାଇ ପାରିବି ନାହିଁ, କଦାପି ପାରିବି ନାହିଁ । କୋନାଦା ରାଣୀ, ମୋତେ ଟିକିଏ ଦୟା କର ରାଣୀ । ତଡ଼ି ଦେଲେ ମୋର ସର୍ବନାଶ ହେବ । ମୋର ଆଉ କେଉଁଠାକୁ ଯିବାର ରାସ୍ତା ନାହିଁ । ଅନେକ କ୍ଷଣ ଯାଏ କନ୍ଦନ ଓ ଅନୁନୟର ପାଲା ଚାଲିଲା । ତା ପରେ ସବୁ ଚୁପଚାପ । ମୋର ଭାବିଲି, ହୁଏତ ଏରସିଲିଆର ମନ ତରଳିଛି । ସ୍ତ୍ରୀ ଲୋକଟାକୁ ହୁଏତ ଶେଷକୁ ତଡ଼ି ଦେଲା ନାହିଁ ।

କିଛି କ୍ଷଣ ପରେ ସିଜୋବ ସମିତେଲ୍ଲି ମୋବର ଘରେ ପ୍ରବେଶ କଲା । ତାର ପ୍ରଦନର ଗମ୍ଭୀର ଭାବ ଲିଭିଇ ଯାଇଛି ! ଲାଲ ମୁଖ-ମଣ୍ଡଳରେ ଦୁଇଟି ଚକ୍ଷୁ ଜଳୁଛି !

'ଖୁବ୍ ବାଗକୁ ଅଣିଛ କହିବାକୁ ହେବ !' ମୃନାଳ ଆଗରେ ଆନନ୍ଦରେ ସେ ହାତ ଘଷିବାକୁ ଲଗିଲା । 'ଝିପିଲର ସେହି ସୁନ୍ଦର ଥାଇଁଶ— ସେହି ଯାବାକୁ ଅପଣଙ୍କ ସ୍ତ୍ରୀ ଠିକ୍ ଆଗରୁ ଛାଡ଼ିବ କର ଦେଉଛନ୍ତି— ଅଳ୍ପ ସ୍ତତରେ ସେ ମୋ ଘରକୁ ଆସିବ ! ହାଣ ଭାଗ୍ୟ କହିବାକୁ ହେବ— ଶିକାର ଅପଣା ଆସେଁ ଧରା ଦେଉଛି । ଧାଇଁଶଗୁଡ଼ାକ ଯେ ନଷ୍ଟ-ଚରିତ୍ର, ଏହା କଏ ନ ଜାଣେ ? ଠଙ୍କା ପଇସାର କାରବାର...... ଯେ କେହି ଟେକ ନେଲେ ହେଲା । ଏ କିନ୍ତୁ ଭାର ସିଦ୍ଧାଣୀ— ଏମିତ ଢଙ୍ଗ କାଢ଼େ, ଯେମିତକ ଭଙ୍ଗା ମାଛ ବ ଉଠାଇ ଖାଇ ଜାଣେ ନାହିଁ ; ତାର ମନ, ମୁଁ ଯେମିତ ତାହା ଦ୍ୱାରା ଦାସୀର କାମ କରାଇବ । ଦାସୀ ଏତ... ଚିନ୍ତୁ ସେବା-ଦାସୀ !'

'ସିନୋର ସମିତଚନ୍ଦ୍ରି !'

'ଆଜ୍ଞା !'

ବକ୍ତୃତାର ଲିଖିତ ଅଂଶଗୁଡ଼ିକ ମୋହ୍ୱସ୍ୱରର ହାତରେ ଦେଇ ମୋର କହିଲା, 'ଏଗୁଡ଼ାକ ଭ୍ରନ୍ତ ଜଡ଼ାବ ପଢ଼ାଅ ତ ।'

ସମିଚେଲି ଲେଖି ଗୁଲୁଲ: ସମାଜତନ୍ତ୍ରର ମୂଳଭିତ୍ତି ସୁଦୃଢ଼ କରିବାକୁ ହେଲେ, ଅର୍ଥାତ୍ ମାନବ ସମାଜରେ ସାମ୍ୟ ପ୍ରତିଷ୍ଠା କରିବାକୁ ହେଲେ, ଦୁଇଟି କଥା ସ୍ମରଣ ରଖିବା ଏକାନ୍ତ କର୍ତ୍ତବ୍ୟ । ପ୍ରଥମତଃ, ସମସ୍ତ ମନୁଷ୍ୟଙ୍କର ଜୀବିକା ନିର୍ବାହ ପାଇଁ ସୁନିର୍ଦ୍ଦିଷ୍ଟ ବ୍ୟବସ୍ଥା ଥିବା ପ୍ରୟୋଜନ । ଦ୍ୱିତୀୟତଃ, ଜୀବନ ସଂଗ୍ରାମର ସୂଚନାରେ ସମସ୍ତଙ୍କୁ ସମାନ ସୁଯୋଗ ଦେବାକୁ ହେବ । ସମାଜ-ବ୍ୟବସ୍ଥାରେ ଏହି ସାମ୍ୟ ପ୍ରତିଷ୍ଠା ହେଲେ, ପ୍ରତ୍ୟେକ ବ୍ୟକ୍ତି ନିଜର ବ୍ୟକ୍ତିତ୍ୱର ବିକାଶ ପାଇଁ ସ୍ୱାଧୀନ କ୍ଷେତ୍ର ପାଇବେ । ଦୁଃଖର ବିଷୟ, ଆଧୁନିକ ସମାଜରେ ବର୍ତ୍ତମାନ ସୁଦ୍ଧା ଏହିପରି ବ୍ୟବସ୍ଥା ଅବଲମ୍ବନ କରାହୋଇ

ନାହିଁ । ତାର ବିଷମୟ ଫଳ ଆମେ ସମସ୍ତେ ପ୍ରତ୍ୟକ୍ଷ କରୁଅଛୁଁ । ଯେଉଁ ଶିଶୁ ଶକ୍ତି ଓ ସ୍ୱାସ୍ଥ୍ୟ ଧରି ଗରୀବ ଘରେ ଜନ୍ମିଲା, ପରିଣାମରେ ତାକୁ ରୁଗ୍ଣ ଶୀର୍ଣ୍ଣ ଧନୀ ସନ୍ତାନ ନିକଟରେ ପରାଜୟ ସ୍ୱୀକାର କରିବାକୁ ହୁଏ ।......

'ସିନୋର ଗମିଚେଲ୍ଲି !'

'ଆଜ୍ଞା !'

'ତୁମର ଅଜି କଣ ହୋଇଛି କୁହତ ? ମଥା ଖରାପ ହେଲା ନା କଣ ? ଏମିତ ହସୁଛ ବା କାହିଁକି ?'

# ବେଣ୍ଟ ଭଲ

—୧—

୧୮୬୧ ମସିହା ଫେବ୍ରୁଆରି ୧୨ ତାରିଖ ରାତିରେ ସରେଣ୍ଟୋରେ ଡରଲ୍ଲିସ୍ ଫ୍ରାନଚେସ୍କୋ ଅଲବେର୍ଟ ଅଗିଦେଲ ଓ ତାର ସ୍ତ୍ରୀ ଫ୍ଲୋରେନ୍ସାର ଗୋଟିଏ ପୁଅ ଜନ୍ମ ହେଲା । ପୁଅଟିର ନାମ ହେଲା ଡସେମୋ ଅଣ୍ଟୋନିଓ ଡରଲ୍ଲିସ୍ । ଭୂମିଷ୍ଠ ହୋଇ ନ ହୋଇଣୁ ସେ ଅଦ୍ଭୁତ ଅଭ୍ୟର୍ଥନା ଲାଭ କଲା— ଠେଙ୍ଗା ଉତ୍ତମ-ମଧ୍ୟମ ପ୍ରହାର । ପ୍ରସବ ହେବାକୁ ଖୁବ୍ ବେଶୀ ସମୟ ଲାଗିଥିଲା— ପ୍ରାୟ ଶ୍ୱାସ ବନ୍ଦ ହୋଇଯିବା ଉପରେ— ତେଣୁ ପୃଥିବୀରେ ପ୍ରବେଶ କରିବା ସମୟରେ ସେ କାନ୍ଦଲା ନାହିଁ । ସେଥିପାଇଁ ଧାଈ ତା ମଥାଟାକୁ ତଳକୁ ଝୁଲାଇ ରଖି, ନ କାନ୍ଦିବା ଯାଏ ତାକୁ ବେଶ୍ କଷ୍ଟ ଦେଇ ଯାଏ ମାଡ଼ ଲଗାଇଲା । କାରଣ ପୃଥିବୀରେ ପ୍ରବେଶ କରିବାକୁ ହେଲେ ସମସ୍ତଙ୍କୁ ନିଶ୍ଚୟ କାନ୍ଦିବାକୁ ହେବ ।

୧୮୬୧ ମସିହା ଫେବ୍ରୁଆରି ୧୩ ତାରିଖ ଠାରୁ ୧୮୬୨ ମସିହା ମାର୍ଚ୍ଚ ୧୫ ତାରିଖ ଭିତରେ ତା ପାଇଁ ପାଞ୍ଚ ଜଣ ଧାଈ ନିଯୁକ୍ତ ହୋଇଥିଲେ । ଯଥେଷ୍ଟ ଦୁଧ ନ ହେବାରୁ ପ୍ରଥମ ଦୁହିଁଙ୍କୁ ବରଖାସ୍ତ କରାଯାଇଥିଲା । ତୃତୀୟଟିର କାରଣ ଅବଶ୍ୟ ଟିକିଏ ଅଲଗା ପ୍ରକାର

ଥିଲା— ଦିନେ ସକାଳେ ଗାଧୋଇଦେବା ବେଳେ ପ୍ରାୟ ଫୁଟିଲା ଗରମ ପାଣିରେ ଟିକିଏ ଥଣ୍ଡା ପାଣି ମିଶାଇବାକୁ ଭୁଲିଯାଇ ସେ ପିଲାଟିକୁ ସେଥିରେ ଛାଡ଼ି ଦେଇଥିଲା । ଫଳରେ ସେ ସାଂଘାତିକ ଭାବରେ ପୋଡ଼ିଗଲା ଏବଂ ଅନେକ କଷ୍ଟରେ ତାର ପ୍ରାଣ ରକ୍ଷା ହେଲା । ଭଗବାନ ଦୟା କରି ତାର ପ୍ରାଣ ରକ୍ଷା କଲେ ସତ, ମାତ୍ର ତା ବଦଳରେ ତାର ମାଆକୁ ନେଇଗଲେ । ଚତୁର୍ଥ ଧାଈଟି ମାତ୍ର ତିନି ଥର ତାକୁ ଖଟ ଉପରୁ ତଳକୁ ଗଡ଼ାଇ ପକାଇଥିଲା । ଆଉ ଥରେ, ଥରେ ମାତ୍ର, ପିଲାଟିକୁ ଧରି ଦୋତାଲାରୁ ଓହ୍ଲାଇ ଆସୁଥିବା ବେଳେ ସେ ପଡ଼ି ଯାଇଥିଲା । ଏତେ ଥର ପଡ଼ି ଯାଇଥିଲେ ବି ପିଲାଟିର ବିଶେଷ କିଛି କ୍ଷତି ହୋଇ ନ ଥିଲା— ସେଥି ଭିତରୁ ଥରେ ସାଂଘାତିକ ଭାବରେ ଅବଶ୍ୟ ତା ନାକର ହାଡ଼ ଭାଙ୍ଗି ଯାଇଥିଲା

ତାକୁ ନଅ ବର୍ଷ ବୟସ ହେବା ବେଳକୁ, ଶୈଶବରୁ ବାଲ୍ୟ କାଳରେ ଉପନୀତ ହେବା ପର୍ଯ୍ୟନ୍ତ ଯେଉଁସବୁ ଅସୁଖର ସୋପାନ ଚଢ଼ି ଆସିବାକୁ ହୁଏ, କସମେ ଅଣ୍ଟୋନିଓ କରଭାଗ୍ ଆସିଦେଇ ଗୋଟିଏ ଅଡ଼େ ଡାକ୍ତର ଓ ଅନ୍ୟ ଅଡ଼େ ଔଷଧ ବିକ୍ରେତାର ସାହାଯ୍ୟରେ ସେ ସବୁ ଉତ୍ତୀର୍ଣ୍ଣ ହୋଇଥିଲା । ନଅ ବର୍ଷ ବୟସରେ ପ୍ରଗାଢ଼ ଧାର୍ମିକ ବିଶ୍ୱାସରେ ଉଦ୍‌ବୁଦ୍ଧ ହୋଇ ସେ ବିଦ୍ୟାଳୟରେ ପଢ଼ିବାକୁ ଗଲା

ଧର୍ମ ଗ୍ରନ୍ଥରେ ସାତ ପ୍ରକାର ଦାକ୍ଷିଣ୍ୟର ଉଲ୍ଲେଖ ଅଛି । ବିଦ୍ୟାଳୟକୁ ଯିବାର କିଛି ଦିନ ପରଠାରୁ ଏହି ସାତ ପ୍ରକାରରୁ ଏକ ପ୍ରକାର ସେ ପ୍ରାୟ ଅକ୍ଷରେ ଅକ୍ଷରେ ପାଳନ କରୁଥିଲା । ସମୁଦ୍ର କୂଳରେ ଗୋଟିଏ ସମ୍ପୂର୍ଣ୍ଣ ଉଲଗ୍ନ ବାଳକକୁ ଦେଖି, ତାର ବାପା ଯେଉଁ ନୂଆ ପୋଷାକଟା ତା ପାଇଁ ନେପଲ୍‌ସରୁ କିଣି ଆଣିଥିଲେ, ସେ ସେଇଟାକୁ ଖୋଲି ତାକୁ ପିନ୍ଧାଇ ଦେଲା ଏବଂ ନିଜେ ଖାଲି ଦେହ

ନାବିକ ଟେଟୋପିଣ୍ଡା ପିଣ୍ଡ ଘରକୁ ଫେରି ଆସିଲେ । କିନ୍ତୁ ହାୟରେ ! ତାର ଏମିତ ଧାର୍ମିକ କାର୍ଯ୍ୟର ପରିଣାମ କଣ ହେଲ ? ଘରେ ପୋଗଡ଼ ନ ଦେଉଣୁ ତା ବାପାଙ୍କ ଠାରୁ ଅକର୍ମଣ୍ୟ, ବୋକା ଓ ଗଧ ବୋଲି ସେ ଗାଳି ଖାଇଲେ ଏବଂ ସେ ଏମିତି ଜୋରରେ ତାର କାନ ମୋଡ଼ି ଦେଲେ ଯେ କାନ ଦୁଇଟା ଉପୁଡ଼ି ନ ଯାଇ ଟିକକରୁ ବଞ୍ଚିଗଲା ।

ବିଦ୍ୟାଳୟରେ ଜସେଫୋ ଅଣ୍ଟୋନିଓ କରଭାସ ଅମିବୋଇ ଏମିତ ଭାବରେ ମନପ୍ରାଣ ଲଗାଇ ପଢ଼ାଶୁଣା ଓ ଧର୍ମଚର୍ଚ୍ଚା କରିବାକୁ ଲାଗିଲା ଯେ ବାସ୍ତବିକ ଷୋଳ ବର୍ଷ ବୟସରେ ତା ଦେହରେ ଯକ୍ଷ୍ମା ରୋଗର ଲକ୍ଷଣ ଦେଖାଗଲା । ସେତେବେଳକୁ ସେ ଧର୍ମ ସମ୍ବନ୍ଧରେ ପ୍ରଥମ ଗମ୍ଭୀର ଶିକ୍ଷା ଲାଭ କରି ସାରିଲାଣି । ଏହିବାକୁ ଦିନେ ସେ ଓ ଗ୍ରାଣ୍ଟିସ୍କୋ ନାମକ ଧର୍ମ ଗ୍ରନ୍ଥରେ ଗୋଟିଏ ଧାଡ଼ି ଦେଖିବାକୁ ପାଇଲା ।

ସେମାନ କାଥଲିକ ଧର୍ମ ତତ୍ତ୍ୱ କହେ ଯେ ଭଗବାନ ଯାହାକୁ ସଂହାର କରିବାକୁ ସ୍ଥିର କରନ୍ତି ସେ ଏହି ରୋଗର ଭଲି ଶ ମଣ କିନ୍ତୁ ଏଣ୍ଡୁର କରନ୍ତି ନାହିଁ । ଅଭିକାଠେ ଚଲି କାମଟା କରି ନ ପାରିଲେ ସେ ତାଙ୍କୁ ବାରମ୍ବାର ଚେଷ୍ଟା କରିବାକୁ ସମୟ ପ୍ରଦାନ କରନ୍ତି ।

ସେଣ୍ଟ ଟମାସ ମଧ୍ୟ ସେହି କଥା କହିଛନ୍ତି । ଜସେଫୋ ଆଣ୍ଟୋନିଓ କରଭାର୍ସ ଅମିବୋଇ । ଏହି ପ୍ରଶ୍ନ ବିଷୟରେ ତେଣୁ ସ୍ତବ୍ଧ ଧରି ଗମ୍ଭୀର ଚିନ୍ତାରେ ମଗ୍ନ ହୋଇ ରହିଲା । ତା ପରେ ହଠାତ୍ ଦିନେ ସ୍କୁଲରେ ଦେଖାଗଲା, ଦେହରେ ଖାଲି କମିଜଟା ଗଳାଇ ଓ ହାତରେ ମହମବତିଟିଏ ଧରି, ସେ ଶଯ୍ୟାଗାର ଭିତରେ ପରିଭ୍ରମଣ କରୁଛି । ତାର ମୁହଁଟା ଲାଲ ଓ ଜଳୁଆ ଦିଶୁଥିଲା, ଏବଂ ତାର ଆଖି ଦୁଇଟା ଭୟ ଓ ଶଙ୍କା ହୋଇଯାଇ ଉଦ୍ଦଣ୍ଡ ଅଭାବରେ

ଙ୍କଲୁଥିଲା । ଘଟଣା ଶୁଣି ପଚାରିବାରୁ ସେ ଜାଣିଲ ଯେ ସେ ଗୋଟାଏ ବୃକ୍ଷ ଗୋଳିଛନ୍ତି । ବୃକ୍ଷ ତୋଳି ପଡ଼ିବ ଯିବାରୁ, ସେ ଜବାବ ଦେଲ ଯେ ସେହା ଦେଖୁଛନ୍ତି ଅଧବୟଃସ୍କର ବୃକ୍ଷ । ସେ ପ୍ରାୟ ପାଗଳ ହୋଇଯାଇ ଥିଲା । ଦୈବ ଯୋଗକୁ ତାର ମସ୍ତିଷ୍କ-କ୍ଷୁବ୍ଧ ହେବାରୁ, ତାକୁ ଡାକ୍ତରଖାନାକୁ ନେଇଗଲେ ଏବଂ ସେଠାରେ ପ୍ରାୟ ମାସେ ଯାଏ ତାର ଜୀବନ ସଙ୍କଟଜନକ ଅବସ୍ଥାରେ ରହିଲା ।

ସେଣପରେ ସେ ଆରୋଗ୍ୟ ହେଲା ବେଳକୁ, ଧର୍ମରେ ତାର ତାଙ୍କ ହେଲେ ବିଶ୍ୱାସ ନ ଥିଲା । ଖାଲି ସେତିକି ନୁହେଁ । ତା ମଥାରୁ ବାଳସବୁ ଝଡ଼ି ପଡ଼ି ଯାଇଥିଲା, ବାକ୍-ଶକ୍ତି ଲୋପ ହୋଇ ଯାଇଥିଲା, ପ୍ରାୟ ଅଧେ ଦୃଷ୍ଟି-ଶକ୍ତି ନଷ୍ଟ ହୋଇ ଯାଇଥିଲା ଏବଂ ଆହୁରି ଅନେକ କଷ୍ଟ ତାର ହୋଇ ଯାଇଥିଲା । ତାର ସ୍ମରଣ ଶକ୍ତି ସମ୍ପୂର୍ଣ୍ଣ ଭାବରେ ବିଲୁପ୍ତ ହୋଇ ଯାଇଥିଲା ଏବଂ ପ୍ରାୟ ବର୍ଷେ ଯାଏ, ସେ ଜଡ଼ ହୋଇ ରହିଲା । ଅବଶେଷରେ ତାର ମେରୁଦଣ୍ଡରେ ଭୁସ୍ ଦିଆ ଯିବାରୁ ସେ ତାର ହୃତ ସ୍ୱାସ୍ଥ୍ୟ କିଞ୍ଚିତ୍ ଫେରି ପାଇଲା ଏବଂ ତାକୁ ଯେତେବେଳେ ତାଇଶ ବର୍ଷରୁ ଟିକିଏ ବେଶୀ, ସେତେ-ବେଳେ ସେ ମେଟ୍ରିକୁଲେସନ ପରୀକ୍ଷା ଦେଲା ଏବଂ ସାହିତ୍ୟ ଓ ଦର୍ଶନରେ ଡକ୍ଟରେଟ ପାଇବା ଲାଗି ସେ ନେପଲ୍ସ ବିଶ୍ୱ-ବିଦ୍ୟାଳୟକୁ ପଢ଼ିବାକୁ ଗଲା । ଏହି ବୟସରେ ହୁଲା ସେ ସମ୍ପୂର୍ଣ୍ଣ ଭାବରେ ଟାଙ୍ଗସ୍ ଓ ଅଧା-ଅନ୍ଧ ହୋଇଗଲା ଏବଂ ଶୈଶବରେ ସେହି ଘଟନା ଫଳରେ ତାର ନାକଟି ବାଙ୍କି ଯାଇଥିଲା ।

୧୮୮୬ ମସିହା ଅକ୍ଟୋବର ମାସରେ, ସେ ସାସାରିର ବିଶ୍ୱ ବିଦ୍ୟାଳୟରେ ସହକାରୀ ଶିକ୍ଷକ ପଦ ପାଇଁ ପ୍ରାର୍ଥୀ ହେଲା ଏବଂ ଶୂନ୍ୟସ୍ଥାନଟା ବି ପାଇଗଲା । ବାଳକମାନେ ତ ଜୀବନ୍ତ ତରୁଣ ଜୀବଜନ୍ତୁ । ଯଦି ସେମାନେ ଉକ୍ତ ଶିକ୍ଷକଙ୍କୁ ପସନ୍ଦ ନ କରନ୍ତି ଏବଂ ଶିକ୍ଷକ ଏ

କ୍ଷୀଣ ଦୃଷ୍ଟି ହେତୁ ପରିଷ୍କାର ଭାବରେ ସେମାନଙ୍କୁ ଦେଖି ନ ପାରେ, ତାହାହେଲେ ପିଲାମାନେ ସାଧାରଣତଃ କ୍ଲାସଟାକୁ ଗୋଟାଏ ଭାଲୁ-ଖାନା କରି ଦିଅନ୍ତି । ଏ ସେନରେ ମଧ୍ୟ ସହକାରୀ ଶିକ୍ଷକ କ୍ଲାସରେ ଠିକ୍ ଭାବରେ ଶୃଙ୍ଖଳା ନ ରଖି ପାରିବାରୁ ପ୍ରଧାନ ଶିକ୍ଷକ ମହାଶୟ ସେଥିପାଇଁ ତାଙ୍କୁ ବାରମ୍ବାର ଦୋଷ ଦେବାକୁ ଲାଗିଲେ ।

ପାସାପାରି ବାଟ ଘାଟରେ ମଧ୍ୟ, ଛୋଟ ଛୋଟ ପିଲାମାନେ ଅଧ୍ୟାପକ କସମୋ ଅଟେଷ୍ଟାଜିଓ କରଭସ ଅମିଦେଇଙ୍କୁ ଏପରି ଭାବରେ ଇଟାଳିଆ ଡୋଟଡ଼ିଛ ମାରିବାକୁ ଲାଗିଲେ ଯେ ଶେଷକୁ ତାର ଉତ୍ତର ସହକର୍ମୀ—ସାଧାରଣ ବିଜ୍ଞାନର ଅଧ୍ୟାପକ ଡଲ୍‌ଫୋ ଡଲ୍‌ଫି—ତାଙ୍କୁ ବିଦ୍ୟାଳୟ ଭିତରେ ଓ ବାହାରେ ରକ୍ଷା କରିବାର ଭାର ଗ୍ରହଣ କଲେ । ଖାଲି ସେତିକି ନୁହେଁ । ପାଖରେ ନିଜ ବସାରେ ରହିବା ପାଇଁ ବି ସେ ତାଙ୍କୁ ଡାକି ଆଣିଲେ ।

ଡଲ୍‌ଫୋ ଡଲ୍‌ଫି ଟିକିଏ ବେଶୀ ବୟସରେ ଶିକ୍ଷକତା ବୃତ୍ତି ଅବଲମ୍ବନ କରିଥିଲେ । ତାଙ୍କର କୌଣସି ବିଶେଷ ଡିଗ୍ରୀ ନ ଥିଲେ ହେଁ ଏବଂ ଶିକ୍ଷକତା ପାଇଁ ସାଧାରଣ ପରୀକ୍ଷା ନ ଦେଇ ମଧ୍ୟ, ଜଣେ ବଡ଼ ମୁରବି ପାର୍ଲାମେଣ୍ଟ ସଭ୍ୟଙ୍କ ଦୟାରୁ ସେ ଶିକ୍ଷକତା ଚାକିରି ପାଇଯାଇ ଥିଲେ । ଏହା ପୂର୍ବରୁ ସେ ପ୍ରଥମେ ଆଫ୍ରିକାରେ ଭୂପର୍ଯ୍ୟଟନ କରୁଥିଲେ ଏବଂ ତା ପରେ ଜେନୋଆରେ ବହୁ ବର୍ଷ ସାମ୍ବାଦିକ ଭାବରେ କଟାଇଥିଲେ । ଜୀବନରେ ସେ ପ୍ରାପ୍ୟ ବାରଟାରୁ ଅଧିକ ଦ୍ୱନ୍ଦ୍ୱ ଯୁଦ୍ଧ ଲଢ଼ି, ଅଧିକାଂଶରେ ଜୟଯୁକ୍ତ ହୋଇଥିଲେ । ସେ ଜଣେ ସ୍ୱାଧୀନ ସ୍ୱଭାବ ଥିଲେ, ଏବଂ ନିଜର ଭାଇଜ କନ୍ୟାକୁ ନେଇ ବାସ କରୁଥିଲେ । ତାର ଅଦ୍ଭୁତ ନାମ ଥିଲା ସାଟାନିନା ।

କସମୋ ଅଟେଷ୍ଟାଜିଓ କରଭସ ଅମିଦେଇ ଆଶା କରିଥିଲେ ଯେ ଡଲ୍‌ଫୋ ଡଲ୍‌ଫିଙ୍କ ବାହୁ ଛାୟା ତଳେ ରହି ସେ ଟିକିଏ ଶାନ୍ତିରେ

ନିଶ୍ୱାସ ମାରି ପାରିବ, କିନ୍ତୁ ତାର ସେ ଆଶା ବ୍ୟର୍ଥ ହେଲା । କାରଣ ଅବସର ସମୟରେ ତାର ରକ୍ଷକ ମହାଶୟ ନିଜର ଭ୍ରମଣ କାହାଣୀ, ସାମ୍ବାଦିକ ଜୀବନର ବିଚିତ୍ର ଗତି ଓ ଦ୍ୱନ୍ଦ୍ୱ ଯୁଦ୍ଧ ବିଷୟ ବର୍ଣ୍ଣନା କରି କିସମେଙ୍କୁ ଅତିଷ୍ଠ କରି ପକାଉଥିଲେ । ନିଜ ଅଦ୍ଭୁତ ଜୀବନର ଧର୍ମ, ଦର୍ଶନ ଓ ଅଧ୍ୟାତ୍ମ ଅଭିଯାନ, ପ୍ରଭୃତି ବିଷୟରେ ସେ ଆଲୋଚନା ଚଳାଇବାକୁ ଖୁସି ମଣୁଥିଲେ । ଏହିସବୁ ଦୀର୍ଘ ଆଲୋଚନାରେ ସେ କେବଳ ଏକାକୀ ଭାଗ ନେଉଥିଲେ । ଗୋଡ଼ ଲମ୍ବାଇ ଓ ଛାତି ଫୁଲାଇ ବସି ରହି, ସେ ନିଜ ଆଙ୍ଗୁଳିରେ ମୁହଁର ଦାଢ଼ୀ ଆଉଁସୁଥାନ୍ତି ଏବଂ ଘଣ୍ଟା ଘଣ୍ଟା ଧରି ବାଜେ କଥାଗୁଡ଼ାକ କହୁଥାନ୍ତି । ତାଙ୍କ ଗପ ଯେତେ ଲମ୍ବ ହୋଇ ଯାଉଥାଏ, କିସମେ ଆତ୍ମୋନ୍ନତି କରିବାର ଆସିବେଳେ ସେତେ ବେଶୀ ନିଜ ଭିତରେ ପଶି ଯାଉଥାଏ । ସେ ସବୁବେଳେ ସମ୍ମତି ଜଣାଉଥାଏ, ଏବଂ କେବେ ହେଲେ କୌଣସି କଥାରେ ପ୍ରତିବାଦ କରେ ନାହିଁ । ବିଦ୍ୟାଳୟର ଛାତ୍ରମାନେ ଓ ସହରର ପିଲାମାନେ ବର୍ତ୍ତମାନ ଡଲ୍ଫିଙ୍କ ଉପରେ ଆସିବେଳକୁ କିଛି କହିବାକୁ ସାହସ କରୁ ନ ଥିଲେ । ତେଣୁ ସେ ସେମାନଙ୍କ ହାତରୁ ନିସ୍ତାର ପାଇ, ନିଃସନ୍ଦେହରେ, କ୍ଷୁଦ୍ର ସୁଖ ଶାନ୍ତିରେ ଦିନ କାଟୁଥିଲା । କିନ୍ତୁ ଅନ୍ୟ ଦିଗରେ ସେ ନିଜର ସ୍ୱାଧୀନ ସତ୍ତା ଟିକକ ହରାଇ ବସିଲା । ବିଦ୍ୟାଳୟରୁ ଛୁଟି ମିଳିଲେ ଅବସର ସମୟ ଟିକକ ସେ ନିଜର ଇଚ୍ଛା ମୁତାବକ କଟାଇବା ସେ ଅଧିକାର ତାର ନ ଥିଲା, କାରଣ ନିମ୍ନ ବିଦ୍ୟାଳୟରେ ଶିକ୍ଷକତା କରି ସେ ଯେଉଁ ସାମାନ୍ୟ ଦରମା ଗଣ୍ଡାକ ପାଉଥିଲା ସେତକ ବି ତା ପାଖରେ ରହୁ ନ ଥିଲା । ତାର କେବେ କିଛି ପଇସା କଉଡ଼ି ଦରକାର ହେଲେ, ସେ ସାହାନିକାକୁ ହାତ ପତାଉଥିଲା । ପନ୍ଦର ବର୍ଷ ବୟସରେ ସେହି ବାଳକାଟି ଏହି ଘରେ ମାଆର ଆସନ ଦଖଲ କରିଥିଲା । ଲୁଇଜ

ପଇସା ଦେବା ବେଳେ ସେ ତାଙ୍କୁ ସାବଧାନ କରି କହୁଥିଲେ ଯେ ସେ ଯାହା କରୁ ପଛକେ, ତା ବାବାଙ୍କୁ ଯେମିତି ପଇସା କଥା ନ କହୁ । ତା ନ ହେଲେ ସେ ବି ତାଙ୍କୁ ପଇସା ପାଇଁ ଝିଙ୍କଝିଙ୍କ କରି ଖାଇଯିବେ ଏବଂ ସେହା ହେଲେ ସେ ଆଉ ଘର ଚଳାଇ ପାରିବ ନାହିଁ ।

ସାଙ୍ଗାନିନା ଭାରି ଭଲ ଝିଅଟିଏ— ସେଥିପାଇଁ କପର୍ନୋ ଅଣ୍ଟୋନିଓ ଭରଭାରା ଆମିଦେଇ ତାଙ୍କୁ ଏତେ ଶ୍ରଦ୍ଧା କରୁଥିଲା ଯେ ତାର ନାମଟା ଛୋଟ କରି ନିନା ବା ଜନେଟା ବୋଲି ଡାକିବାକୁ ସେ ପ୍ରସ୍ତାବ ଦେଲା । କିନ୍ତୁ ଡଲ୍ ଫୋ ଡଲ୍ ଫି ସେ କଥା ହସି ଉଡ଼ାଇ ଦେଲେ ।

'ନିନା, ଜନେଟା, ବାସ୍ତବିକ ! ପାଗଳ ନା କଣ ! ତାର ନାମ ହେଉଛି ସନ୍ତୃତାନ, ମୁଁ କହୁଛି— ଖାଲି ସନ୍ତୃତାନ !

ସନ୍ତୃତାନ, ତୁମକୁ ଆହ୍ୱାନ କରେ !

ବିଦ୍ରୋହ, ତୁମକୁ ଅହ୍ୱାନ କରେ !

ମଣିଷର ସ୍ଥିର ଚିନ୍ତାଧାରା ସହ ତୁମର ଯୁଦ୍ଧ,

ତୁମକୁ ନମସ୍କାର କରେ ।'

ଏହିଭଳି ଭାବରେ ଆଉ ଡଜନେଟି ବର୍ଷ କଟିଗଲା । ଲୋକମାନେ ଅଧ୍ୟାପକ ଭରଭାରା ଅମିଦେଇଙ୍କୁ ପ୍ରାପ୍ତ ପଶୁରନ୍ତି, ସେ କିପରି ଭାବରେ ଡଲ୍ ଫୋ ଡଲ୍ ଫିଙ୍କ ଭଳି ଜଣେ ଦାମ୍ଭିକ ଲୋକ ସାଙ୍ଗରେ କାଳାତିପାତ କରି ପାରୁଛନ୍ତି । କିନ୍ତୁ ସେ କେବେ ତାର କୌଣସି ଜବାବ ଦିଏ ନାହିଁ । କାନଟା ଟିକିଏ ବଙ୍କାଇ ଏବଂ ସୀମିତ-ଦୃଷ୍ଟି ଆଖି ଦୁଇଟା ପିଟିପିଟି କରି, ସେ ତାର ହାତ ଦୁଇଟା ହତାଶ ଭଙ୍ଗୀରେ ବିସ୍ତାର କରିଦିଏ । ସାମାନ୍ୟ ହସର ରେଖାଟିଏ ଫୁଟାଇବାକୁ ଯାଇ ତାର ମୁହଁଟା ଅତ୍ୟନ୍ତ କରୁଣ ଦେଖାଯାଏ । ସେ ବୋଧ ହୁଏ ବୁଝି ପାରେ ଯେ ଏହି ପ୍ରଶ୍ନଟା ଉଠାଇ ଲୋକେ ତାକୁ କହିବାକୁ ଚାହାନ୍ତି ଯେ ସେ ଗୋଟାଏ ଅପଦାର୍ଥ ।

ଆଉ ବାସ୍ତବିକ, ତାଙ୍କୁ ଟିକିଏ କ୍ଷମା ଦେବେ, ବସମୋ ଅଣ୍ଟୋନିଓ ବରଞ୍ଚ ଆମିଦେଶ ନିଜ ତୁଣ୍ଡରେ ସ୍ୱୀକାର କରି ପକାଏ ଯେ ସେ ଗୋଟାଏ ଅପଦାର୍ଥ । ତଥାପି, ଯାହାହେଉ, ଏ ବିଷୟରେ ତାର ଟିକିଏ ସନ୍ଦେହ ଥିଲା, କାରଣ ଅନେକ ଭାବି ଚିନ୍ତି ସେ ସ୍ଥିର କଲା ଯେ ସାଧାରଣତଃ ମଣିଷ ଜୀବନଟାହିଁ ବୋଧହୁଏ ତା ନିଜ ଠାରୁ ଅଧିକ ଅପଦାର୍ଥ । ଯେତେବେଳେ ଜୀବନଟା ଏଡ଼େ ଅପଦାର୍ଥ, ସେତେବେଳେ ସଜାଗ ବା ସୁଚତୁର ହୋଇ, କ୍ଷମା ହେବାକୁ ଛଳନା କରି ପ୍ରକୃତରେ କିଛି ଲାଭ ନାହିଁ— ବିଶେଷତଃ ଯେତେବେଳେ ଦେଖାଯାଏ ଯେ ଜୀବନଟା ତାର ନଖରେ କାହାକୁ କାହାକୁ ଅଷ୍ଟୁଭି ଦେବା ପାଇଁ ବଦ୍ଧପରିକର ହେଉଛି । ଏପରି କ୍ଷେତ୍ରରେ ବିରୋଧିତା କରି କୌଣସି ଲାଭ ନାହିଁ, ଏବଂ ଯାହା କରି ତାହା କରିବା ପାଇଁ ଜୀବନକୁ ସୁବିଧା ଦେବା ବରଂ ସବୁ ଠାରୁ ଭଲ । କାରଣ, ଆମେ ବୁଝି ନ ପାରିଲେ ସୁଦ୍ଧା କୌଣସି ଗୋଟାଏ ବିଶେଷ ଲକ୍ଷ୍ୟ ରେ ପହଞ୍ଚିବା ପାଇଁ ଜୀବନ ସତତ ଚେଷ୍ଟା କରୁଥାଏ, ଏବଂ ଯଦି ତାହା ନ ହୁଏ ତାହାହେଲେ ଦିନେ ନା ଦିନେ ଜୀବନର ଅବସାନ ଘଟିବ— ଏଥିରେ କୌଣସି ସନ୍ଦେହ ନାହିଁ । ସେଥିପାଇଁ ତା ସାଙ୍ଗରେ ଅଯଥା ବିବାଦ କରି କି ଲାଭ !

ସତକୁ ସତ ହଠାତ୍ ଦିନେ ଜୀବନର ଅବସାନ ଘଟିଲା— କିନ୍ତୁ ହାୟ, ତାର ନୁହେଁ ! କ୍ଲାସରେ ପଢ଼ାଉଁ ପଢ଼ାଉଁ ଡଲ୍‌ଗୋ ଡଲ୍‌ଫି ସହସା ଏପୋପ୍‌ଲେକ୍‌ସିରେ ଆକ୍ରାନ୍ତ ହେଲେ ଏବଂ ତାଙ୍କର ଜ୍ଞାନ ଆଉ ଫେରି ଆସିଲା ନାହିଁ ।

ଏହି ଅପ୍ରତ୍ୟାଶିତ ଦୁର୍ଘଟଣାରେ ବସମୋ ଅଣ୍ଟୋନିଓ ବରଞ୍ଚ ଯାମଦେଶ ଏକ ଦାରୁଣ ଆଘାତ ଲାଭ କଲା । ତାର ମନେ ହେଲା, ସମଗ୍ର ଅଟ୍ଟାଳିକାଟା ଯେମିତି ହଠାତ୍ ଚୂର୍ଣ୍ଣ ହୋଇଗଲା—

ଜୀବନ ଭାବରେ ଶୂନ୍ୟ । ସହର କୌଣସି ଅସବାବ ଘର ହୁଏତ ଆଗକୁ ସଜାଇତ ରଖିବା ପାଇଁ ତାକୁ କେଉଁ ଦିନ ଅବସର ମିଳି ନ ଥିଲା । ସେ ଜାଣିଥିଲା ଯେ ମାତ୍ର ଜଣେ ଲୋକଙ୍କରେହିଁ ଏହି ଘର ଦୁଆର ଖୋଲି ରହିଥିଲା । ଆଜି ସେହି ସବୁ ଅସବାବ ପତ୍ର ଆଡ଼େ ଦୃଷ୍ଟି ପଡ଼ିବା ମାତ୍ରେ ତାର ମନେ ହେଲା ଯେ ତାର ଭଳି ଏହି ଜିନିଷପତ୍ରଗୁଡ଼ିକ ବି ଯେମିତି ସେହି ଲୋକଟିର ପ୍ରତୀକ୍ଷା କରୁଛନ୍ତି, ଯେ ଆଉ କେବେ ଫେରିଆସି ପାରିବ ନାହିଁ ।

ସାନ୍ତାନୋନା ଶୋକାଭିଭୂତା ହୋଇ କାନ୍ଦିବାକୁ ଲାଗିଲା । ପ୍ରଥମେ ସେ ତାକୁ ସାନ୍ତ୍ୱନା ଦେବା ପାଇଁ ଆଦୌ ଚେଷ୍ଟା କରି ନ ଥିଲା, କାରଣ ସେ ଭାବିଥିଲା ଯେ ସେ ଯାହା କହୁ ପଛକେ ସେଥିରେ ସାନ୍ତାନୋନା କେବେ ହେଲେ ସାନ୍ତ୍ୱନା ଲାଭ କରିବ ନାହିଁ । ତା ପରେ ଦିନେ ହେଡ଼ମାଷ୍ଟର ଓ ତାର ସହକର୍ମୀମାନେ ତାକୁ ପଚାରିଲେ, ସେ କଣ ସାନ୍ତାନୋନା ପାଇଁ କି ବ୍ୟବସ୍ଥା କରୁଛି— ତାର ବାପା ହଠାତ୍ ମରି ଗଲେ ଏବଂ ଆଇନ ଅନୁଯାୟୀ ସେ ତ ପେନସନ ପାଇବାକୁ ହକଦାର ନୁହେଁ । ତାର ବାପା କିଛି ପଇସା ପତ୍ର ରଖି ଯାଇ ନାହାନ୍ତି, ଏବଂ ଏଣେ ତାର ମଧ୍ୟ କେହି ଆତ୍ମୀୟ ସ୍ୱଜନ ନାହାନ୍ତି, ଏପରିକି କୌଣସି ଦୂର ସମ୍ପର୍କୀୟ ଆତ୍ମୀୟ ମଧ୍ୟ । ଅଧ୍ୟାପକ କାସେମୋ ତତ୍କ୍ଷଣାତ୍ ସେମାନଙ୍କୁ ଜବାବ ଦେଇଥିଲା ଯେ ଏସବୁ କଥା କହିବା ନିତାନ୍ତ ବାହୁଲ୍ୟ ଏବଂ ଝିଅଟିକୁ ସେ ତା ପାଖରେ ନିଜର ଝିଅ ପରି କରି ରଖିବ । କିନ୍ତୁ ହେଡ଼ମାଷ୍ଟର ଓ ତାର ସହକର୍ମୀମାନେ ଏଥିରେ ଅସନ୍ତୁଷ୍ଟିପୂର୍ବକ ଭାବ ପ୍ରକାଶ କରି ଭାବ ବଙ୍କାଇ ଚାଲିଗଲେ । ତାହିଁ ସେ ବୁଝି ପାରିଲା ଯେ ସେ ଭୁଲ କଥାଟାଏ କହିଲା । ସେମାନେ କାହିଁକି ତା ଉପରେ ଅସନ୍ତୁଷ୍ଟ ହେଲେ ଏବଂ ସେ କା କି ଭୁଲ କଥା କହିଲା, ତାହା ବୁଝି ନ ପାରି ସେ ଅବାକ ହୋଇଗଲା । ତାର

ପ୍ରସ୍ତାବଟିର ଅନ୍ୟାୟତା ବା ଭୁଲ୍‌ଟା କେଉଁଠି ? ସେ ଏ ବିଷୟରେ ସାଣ୍ଟାଜିନା ସଙ୍ଗେ କଥାବାର୍ତ୍ତା ହେଲା ଏବଂ ଦେଖି ଆଶ୍ଚର୍ଯ୍ୟ ହେଲା ଯେ ସେ ବି ତାର ପ୍ରସ୍ତାବକୁ ଗ୍ରାହ୍ୟ କରୁ ନାହିଁ । ସେ ଜୋର ଗଳାରେ ତାକୁ ଜଣାଇ ଦେଲା ଯେ ଏହା ପରେ ତାହା ସହିତ ବାସ କରିବା ସାଣ୍ଟାଜିନା ପକ୍ଷରେ ଅସମ୍ଭବ ଏବଂ ସେଥିପାଇଁ ଯେତେ ଶୀଘ୍ର ସମ୍ଭବ, ତାକୁ ଏଠାରୁ ପଳାଇ ଯିବାକୁ ହେବ ।

‘କେଉଁଠାକୁ ?’

‘ଓ— ଯେଉଁ ଅଡ଼କୁ ଦୁ ଆଖି ପଳାଇବ ।’

‘କିନ୍ତୁ ତୁମେ ବା କାହିଁକି ପଳାଇବ ?’ ସେ ପଚାରିଲା, ମାତ୍ର କୌଣସି ଜବାବ ମିଳିଲା ନାହିଁ ।

କିଛି ଦିନ ପରେ ଅନ୍ୟ ଶିକ୍ଷକମାନେ ତାକୁ କାରଣଟା ସଂକ୍ଷେପରେ ବୁଝାଇ କହିଲେ— ତାର ବୟସ ତିରିଶ ବର୍ଷରୁ ଟିକିଏ ବେଶୀ, ଅଥଚ ସାଣ୍ଟାଜିନାର ଏବେ ଅଠର ପୁରିଗଲା । ସୁତରାଂ ସେ ସାଣ୍ଟାଜିନାର ବାପର ବୟସୀ ନୁହେଁ, କି ସାଣ୍ଟାଜିନା ବି ତାର ଝିଅ ହେବା ଭଳି ସାନ ନୁହେଁ । ଏଥର ତାର ନିସ୍ତବୁଦ୍ଧି ଫେରିଲା, ସାଣ୍ଟାଜିନା କାହିଁକି ଚାଲି ଯିବାକୁ ଚାହୁଁଛି । ଅଧ ଘଣ୍ଟା କାଳ ବସି ଅମିତରେ ଥରେ ନିଜ ପାଦର ଅଙ୍ଗୁଳି ଅଡ଼କୁ ଏବଂ ଥରେ ହାତର ଅଙ୍ଗୁଳି ଅଡ଼କୁ ଅନାଇଲା ଏବଂ ତା ପରେ ତା ଓଣ୍ଠ ପାଖରେ ଅଟକିଥିବା କିଛି ଜଳକଣିକୁ ଗିଳି ପକାଇବାକୁ ଚେଷ୍ଟା କଲା । ସେ ଭାବିବାକୁ ଲାଗିଲା— ତାର ସହକର୍ମୀମାନେ ଏତେ ଭାଷା ଶିଖିଲେ ବୁଝନ୍ତି ଯେ ତାର ସାଣ୍ଟାଜିନାକୁ ......ବିବାହ...... କହିବା ଉଚିତ ? ଏହି ଚିନ୍ତାରେ ତାର ମଥା ଘୂରିଗଲା । ତାର ମନେ ହେଲା, ସେ ଏକ୍ଷଣି ଅଜ୍ଞାନ ହୋଇଯିବ । ନା, ସେମାନେ ନିଶ୍ଚୟ ତାକୁ ଖାଲି ଥଟ୍ଟା କରୁଛନ୍ତି ? ନା, ଏମିତି ହେଲେ ବି ଭଲ ନାହିଁ, ସାଣ୍ଟାଜିନା ସଙ୍ଗରେ ତାକୁ ଆଉ ଥରେ କଥାବାର୍ତ୍ତା କରିବାକୁ ହେବ । ସେ ସେୟା କଲା ଏବଂ ତାକୁ

ବୁଝାଇବାକୁ ଚେଷ୍ଟା କଲା ଯେ ଅନ୍ୟ ପାଡ଼ା ପଳାଇବା ଭାର୍କ ସେ ମନରେ ଯେଉଁ ଧାରଣା ପୋଷଣ କରନ୍ତି, ତାହା ପାଗଳାମି, ଶୁଦ୍ଧା ପାଗଳାମି ଛଡ଼ା ଆଉ କିଛି ନୁହେଁ । ତା ପରେ ସାନ୍ତାନନା ବି ତାଙ୍କୁ ବୁଝାଇ ଦେଇ ଯେ ଏକମାତ୍ର ଗୋଟିଏ ସର୍ତ୍ତରେ ସେ ତା ନିକଟରେ ରହିବା ସମ୍ଭବ ହେବ । ତାହା ହେଉଛି, ଯଦି ସେ ତାର ସ୍ତ୍ରୀ ହୁଏ ।

ରସ୍ତେମା ଆଣ୍ଟୋନିଓ କରଭାଲ୍ ଆମିଦେଇ ଏହା ଶୁଣି ସ୍ତବ୍ଧ ଭାବିଗଲା ଯେ ସେ ନିଜେ ପାଗଳ ହୋଇ ଯାଉଛି — ହୁଏତ ସତରେ ତାର ମଥା ଖରାପ ହୋଇ ଯାଇଛି, ନହେଲେ ସେମାନେ ସମସ୍ତେ ମିଶି ତା ସାଙ୍ଗରେ ନିଷ୍ଠୁର ପରିହାସର ଅଭିନୟ କରୁଛନ୍ତି । ସେ କୌଣସି ମତେ ବୁଝି ପାରିଲା ନାହିଁ ଯେ ସାନ୍ତାନନା ପରି ସୁନ୍ଦରୀ ଯୁବତୀଟିଏ କିପରି ଭାବରେ ତାକୁ ବିବାହ କରିବା କଥା ମନରେ ଆଣିଲା— ସେମାନେ ବିବାହ ନ କରି ଏକା ଘରେ ରହୁଥିଲେ ଯେ ଗ୍ରାମରେ କୌଣସି ବଦନାମ ରଟନା ହେବ ସେ ଏହା ବି ଚିନ୍ତା କରି ପାରିଲା ନାହିଁ ! ଅଚ୍ଛା!, ଏହା କଣ ସମ୍ଭବ ହୋଇପାରେ ଯେ ତାକୁ ବିବାହ କରିବାଟା ଖୁବ୍ ଉପଯୁକ୍ତ ବା ପସନ୍ଦ ବୋଲି ସାନ୍ତାନନା ମନେ କରୁ ନାହିଁ ? ତା ମନ ଭିତରେ ଯେମିତି ଗୋଟାଏ ଆଶା ସଞ୍ଚାରିତ ହେଲା । ସେ ଏଖଣି କେମିତି ଦିଶୁଛି, ଭଲ ଭାବରେ ତାହା ଥରେ ଦେଖି ନେବା ପାଇଁ ସେ ଆଇନା ଆଡ଼କୁ ଯାଇ ଠିଆ ହେଲା । ସତରେ ସେ ଦେଖିବାକୁ ଯେତେ କୁତ୍ସିତ, ନିଜର ଚେହେରାକୁ ସ୍ୱୟଂ ଦେଖିଲା ମାତ୍ରେ ଏଖଣି ତାହା ତାକୁ ବରଂ ଅଧିକ କୁତ୍ସିତ ବୋଲି ବୋଧ ହେଲା । ଶିର ଦିନ ବେଗରେ ପକ୍ଷ ପଡ଼ି ଏବଂ ସ୍ୱାସ୍ଥ୍ୟର ଲାଞ୍ଛନା ସହ୍ୟ ସହି ତା ମୁହଁର ରଙ୍ଗ ବେଙ୍ଗାଳି ପରି ହଳଦିଆ ପଡ଼ି ଯାଇଛି, ଏବଂ ସେ ଛାତିର ଓ ଅଧା-ଅନ୍ଧ ହୋଇ ଯାଇଛି । ସ୍ୱାସ୍ଥ୍ୟ ଓ ଅବନତିରେ ପରିପୂର୍ଣ୍ଣ ସାନ୍ତାନନାକୁ ନିଜ ପାଖରେ ରଖିବା କଳା

ଶୁଣି ତାର ମଥା ଘୁରିଗଲା । ସତରେ ସାଷ୍ଟାଲିନା ତାକୁ ବିବାହ କରିବ ! ଏହା କିଣ ସମ୍ଭବ ହୋଇପାରେ ? ସେ ପୁଣି ସାଷ୍ଟାଲିନା ପାଖକୁ ଫେରିଗଲା ଏବଂ, ଅତି କଷ୍ଟରେ ଅଟକି ଅଟକି, ତାକୁ ପଚାରିଲା ପ୍ରକୃତରେ ସେ ତାକୁ ବିବାହ କରିବାକୁ ରାଜି କି ନା । ସେ ହତଭମ୍ବ ହୋଇ ଦେଖିଲା, ତଳେ ମାଟି ଲଜ୍ଜା ବା ଦ୍ୱିଧା ନ କରି ସାଷ୍ଟାଲିନା ତାକୁ ଜବାବ ଦେଲା 'ହଁ', ଏବଂ ଅନ୍ତର ବ୍ୟକ୍ତ କଲା ଯେ ଯଦି ଡଏମୋ ତାକୁ ଗ୍ରହଣ କରିବ, ତାହାହେଲେ ସେ ତା ନିକଟରେ ଚିର କୃତଜ୍ଞ ରହିବ ।

ଡଏମୋ ଅଷ୍ଟୋଲିର୍ଜି ବିରକ୍ତିରେ ଅମିଠେଇ ଏ କଥାର ପ୍ରତିବାଦ କରିବାକୁ ବସିଲା ! ମାଟି ତା ପାଟିରୁ ପଦେ ହେଲେ କଥା ବାହାରିଲା ନାହିଁ ଏବଂ ଛୋଟ ପିଲାଙ୍କ ପରି ସେ ଭେଁ ଭେଁ ହୋଇ କାନ୍ଦିବାକୁ ଲାଗିଲା । ନିଜକୁ ସମ୍ଭାଳି ନେଇ ସେ ସାଷ୍ଟାଲିନାକୁ କୃତଜ୍ଞତାର କଥା ନ ଜଣାଇବାକୁ ଅନୁରୋଧ କଲା । କି ଅବାସ୍ତବ ! ତାର ବରଂ କୃତଜ୍ଞ ହେବା ଉଚିତ । ଭାଗ୍ୟଦେବୀ ଯେ ତା ପାଇଁ ଏତେ ବଡ଼ ସମ୍ପଦ ଲୁଚାଇ ରଖିଥିଲେ, ତାହା ତ ତାକୁ ଜଣା ନ ଥିଲା । ଏହା ତାକୁ ଅସମ୍ଭବ ଜଣାଗଲା !

କେତେ ଦିନ ଯାଏ ଅଧ୍ୟାପକର ତୁଣ୍ଡରୁ ଭଲ ଭାବରେ ପଦଟିଏ ହେଲେ କଥା ବାହାରିଲା ନାହିଁ ।

ବାଗଦତ୍ତ ଦମ୍ପତ୍ତିଙ୍କୁ ଏକା ଘରେ ରହିବାକୁ ପଡୁଥିବାରୁ, ବିବାହବେଠା ଶୀଘ୍ର ହୋଇଗଲା । ହେଡ଼ମାଷ୍ଟର ମହୋଦୟ ଯେ ଆଶା ପୋଷଣ କରିଥିଲେ ଯେ, ଅରେ ବିଧବା ହୋଇ ପଡ଼ିଲେ, ତାଙ୍କର ସହକାରୀ ପତ୍ନୀ-ବଞ୍ଚୀଙ୍କୁ ପୁଣି ଥରେ ଧରଣୀକୁ ଓହ୍ଲାଇ ଆସିବ । କିନ୍ତୁ, ଯାହା ହେଲା, ତାଙ୍କର ଆଶା ବ୍ୟର୍ଥ ହେଲା । ୧୮୯୨ ମସିହା ମାର୍ଚ୍ଚ ୧୪ ତାରିଖରେ ବିବାହଟା ସମ୍ପୂର୍ଣ୍ଣ ଶାନ୍ତିର ସହିତରେ ସମ୍ପନ୍ନ

ଓହ୍ଲାଇଗଲେ । କେତେ ବର୍ଷ ତଳେ ଅଧ୍ୟାପକ ଧର୍ମ ସମ୍ବନ୍ଧରେ ଯେଉଁ ମତ ଗ୍ରହଣ କରିଥିଲା, ତାର ଫଳରେ ଗୀର୍ଜାକୁ ଯାଇ ବିବାହ କରିବାକୁ ସେ ଆଦୌ ସ୍ୱଚ୍ଛ ହେଲା ନାହିଁ ।

ବିବାହ ପରେ, ଅଧ୍ୟାପକ ପୂର୍ବାପେକ୍ଷା ଅଧିକ ସୁଖୀ ହେଲା ସତ । କିନ୍ତୁ, ଫଳତଃ, ତାର ବୋକାମିର ମାତ୍ରା ଦିନକୁ ଦିନ ବଢ଼ିବାକୁ ଲାଗିଲା । ବର୍ଷ ବର୍ଷ ଧରି ଦୁଃଖ ଭୋଗି ଭୋଗି ଯାର ଯାହା ହୋଇ ନ ଥିଲା, ଏବେ କେତେଟା ଦିନର ସୁଖ ଭୋଗରେ ତାହା ହୋଇଗଲା । କସଟୋ ଅଣ୍ଟୋନିଓ କରଭିସ ଅମିଦେଇ ଏତେ ଦିନ ହେଲା କଷ୍ଟ ସ୍ୱୀକାର କରି ଯାହା ଶିଖିଥିଲା ସବୁ ଭୁଲିଗଲା, ଏପରିକି ଲାଟିନ ବ୍ୟାକରଣ ମଧ୍ୟ, ଏବଂ ଶିକ୍ଷକତାର ସମ୍ପୂର୍ଣ୍ଣ ଅଯୋଗ୍ୟ ହୋଇ ପଡ଼ିଲା । ସାଣ୍ଟାନିନା ଛଡ଼ା ସେ ଆଉ କାହାକୁ ସ୍ୱପ୍ନରେ କି ଜାଗରଣରେ ଦେଖି ପାରିଲା ନାହିଁ । ଖାଇବା ଲାଗି ସାଣ୍ଟାଣିନା ତାକୁ ବାଧ୍ୟ ନ କଲେ, ସେ ଖାଇବାକୁ ବି ଚାହୁଁଲା ନାହିଁ । ତାର କ୍ଷୁଧାତୁର ଆନନ୍ଦ ମୁଖର ସ୍ତ୍ରୀକୁ ଭୋଜନ ଟେବୁଲ କଡ଼ରେ ବସି ଥିବାର ଦେଖିଲେ ସେ ତୃପ୍ତି ବୋଧ କରୁଥିଲା । ଯଦି ସାଣ୍ଟାଣିନା ନିଜର ସୁନ୍ଦର ଛୋଟ ଛୋଟ ଦାନ୍ତରେ ତାର ଦେହକୁ ଖାଦ୍ୟ ଉପଯୋଗୀ ବୋଲି ମନେ କରୁ ଥାଆନ୍ତା, ତାହାହେଲେ ନିଜକୁ ତାର ଖାଦ୍ୟ ଭାବରେ ସମର୍ପଣ କରି ଦେବାକୁ ସେ ତ୍ୱୋଧହୁଏ ତଳେ ମାତ୍ର ଦ୍ୱିଧା ପ୍ରକାଶ କରୁ ନ ଥାଆନ୍ତା ।

ଏଣେ ଜେଲ୍ ଡେମୀ ଡେଲ୍ ଫିର ଅନୁପସ୍ଥିତିର ସୁଯୋଗ ନେଇ ବିଦ୍ୟାଳୟର ଛାତ୍ରମାନଙ୍କର ଓ ରାସ୍ତାରେ ପିଲାମାନଙ୍କର ଭୟ ଭାଙ୍ଗି ଗଲା । ଏଥର କ୍ଲାସରେ ଓ ବାହାରେ ଯେଉଁ ଗୋଳମାଳ ଆରମ୍ଭ ହେଲା, ତାହା ସହିତ ପୂର୍ବ ଗୋଳମାଳର କୌଣସି ତୁଳନା କରା-ଯାଇ ନ ପାରେ । ହେଡ଼ମାଷ୍ଟର ଗର୍ଜି ଉଠିଲେ, ଏବଂ ତାଙ୍କ

ସହକାରୀଙ୍କୁ ଖୁବ୍ ଚଡ଼ା ଭାଷାରେ ଧମକିବାକୁ ଲାଗିଲେ । କିନ୍ତୁ ସେଥିରେ ତ କିଛି ଫଳ ହେଲା ନାହିଁ । ଅଧ୍ୟାପକ ଜରଭାସ୍ ଅମିଦେଇ ଏମିତ ମଧୁର ଭାବରେ ହେଡମାଷ୍ଟରଙ୍କ ଆଡ଼କୁ ଚାହାଁ ଖାଲି ହସିବାକୁ ଲାଗିଲା ଯେ ମନେ ହେଲା, ଏଥିରୁ ଘଟଣା ସହିତ ଯେମିତି ତାର କୌଣସି ସମ୍ପର୍କ ନାହିଁ । ସମସ୍ତ ଘଟଣା ଦେଖି ସାଂଟାନିନା ସେମାନଙ୍କର ପ୍ରତିପତ୍ତିଶାଳୀ ବନ୍ଧୁ ପାର୍ଲାମେଣ୍ଟର ସଭ୍ୟଙ୍କ ନିକଟକୁ ଖଣ୍ଡିଏ ଚିଠି ଲେଖିବାକୁ ବାଧ୍ୟ ହେଲା । ତାଙ୍କ କ୍ଷମତା ପୂର୍ବାପେକ୍ଷା ଏଷଣି ଢେର୍ ବେଶି ଥିବାରୁ ସେ ତାଙ୍କୁ ଲେଖିଲା, ଅଧ୍ୟାପକଙ୍କୁ ଏଠାରୁ ସ୍ଥାନାନ୍ତର କରି ଦେଇ ଏମିତି କୌଣସି ସ୍ଥାନରେ ରଖେଇ ଦିଅ, ଯେଉଁଠି ଏଭଳି ଗୋଲମାଲ ନ ଥିବ— ଯଥା, କୌଣସି ସାଧାରଣ ପାଠାଗାରରେ କିମ୍ବା ସାଧାରଣ ଶିକ୍ଷା ମନ୍ତ୍ରାଳୟର କୌଣସି ଅଫିସରେ । ଏହି ଚିଠି ଫଳରେ, ଦୁଇ ମାସ ପରେ, ମନ୍ତ୍ରାଳୟରେ ଉପସ୍ଥିତ ହେବାକୁ ଆଦେଶ ପାଇ, କସମୋ ଆର୍ଣ୍ଣୋନର୍ଡ ଜରଭାସ୍ ଅମିଦେଇ ସେହି ଉଦ୍ଦେଶ୍ୟରେ ଯାତ୍ରା କଲା ।

ନୁଷ୍ଟାମୀ ଜଣେ ବୁଢ଼ା, ତାର ଯେଉଁ ଛାତ୍ରମାନେ ପ୍ରକୃତରେ ତାକୁ ଭାରି ଭଲ ପାଉଥିଲେ, ତାର ବିଦାୟ ହେତୁ ସେମାନେ ଅତିଶୟ ବ୍ୟଥିତ ହୋଇ ପଡ଼ିଲେ । ମାତ୍ର ହେଡମାଷ୍ଟର ଓ ତାଙ୍କ ସହକର୍ମୀମାନେ ତା ହାତରୁ ମୁକ୍ତି ପାଇ, ଯାହା ହେଉ, ଶାନ୍ତିରେ ଟିକିଏ ନିଶ୍ୱାସ ମାରିଲେ । ଏତିକିବେଳେ ସାଂଟାନିନା ସନ୍ତାନ ସମ୍ଭବା ଥିବାରୁ, ସମୁଦ୍ର ପାର ହେବା ସମୟରେ ସେ ଭାରି ଅସୁସ୍ଥ ହୋଇ ପଡ଼ିଲା । କିନ୍ତୁ ଇଟାଲିର ପ୍ରଧାନ ଭୂଭାଗରେ ପୁନଃ ପଦାର୍ପଣ ହେତୁ ଓ ରୋମର ଏତେ ନିକଟରେ ପହଞ୍ଚି ଯିବାରୁ ସେ ଏତେ ଆନନ୍ଦ-ବିହ୍ୱଳ ହୋଇ ଯାଇଥିଲା ଯେ, ଚିଭିଟାଭେକ୍କିଆଟିର ଜାହାଜରୁ ଓହ୍ଲାଇବା କ୍ଷଣି ସେ ସେହିସବୁ ଦୁଃଖ-ଯନ୍ତ୍ରଣା ଭୁଲିଗଲା ! ତାର ଦୁଃସାହସୀ

ସାବାର ରକ୍ତ ଶରୀର ଶିରା-ପ୍ରଶିରାରେ ପ୍ରବଳ ଭାବରେ ପ୍ରବାହିତ ହେଉଥିବାର ଅନୁଭବ କରି ସାନ୍ତ୍ୱନା ଲଜ୍ଜିତ ହୋଇଗଲା ।

ଶିକ୍ଷା ମନ୍ତ୍ରଣାଳୟରେ ଯେଉଁ ନକଲ ବିଭାଗ ଅଛି, ତାର ତତ୍ତ୍ୱାବଧାୟକ ପଦରେ ଅଧ୍ୟାପକଙ୍କୁ ନିଯୁକ୍ତ କରାଗଲା— କିନ୍ତୁ ତାର ତତ୍ତ୍ୱାବଧାନ ସମ୍ପୂର୍ଣ୍ଣ ଅକର୍ମଣ୍ୟ ବୋଲି ପ୍ରତିପାଦିତ ହେଲା । ଦିନ-ମଜୁରିରେ ଯେଉଁ ସ୍ୱଳ୍ପ-ବେତନ-ଶ୍ରେଣୀ କର୍ମଚାରୀମାନଙ୍କୁ ନିଯୁକ୍ତ କରାଯାଏ, ସେମାନେ ଶୀଘ୍ର ସେମାନଙ୍କର ନୂଆ ମୁନିବଙ୍କୁ ଚିହ୍ନି ନେଲେ । ଯଦି ଢୌଁଶର ଝିଁଝିଁଝିଁ ବୁଢା, ଯାହା ସମ୍ବନ୍ଧରେ ନାନା ରକମ ଗୁଜବ ଶୁଣାଯାଏ, ସେମାନଙ୍କର କାମ ତଦାରଖ କରିବା ପାଇଁ ନିଯୁକ୍ତ ହୋଇଥାନ୍ତା, ତାହାହେଲେ ଅବଶ୍ୟ କିଛି କହିବାର ନ ଥିଲା— ସମସ୍ତେ ତାଙ୍କୁ ସଲାମ କରିଥାନ୍ତେ ଏବଂ ଖାତିର କରିଥାନ୍ତେ । କିନ୍ତୁ ଏହିଭଳି ଜଣେ ନିରୀହ ଲୋକଙ୍କୁ ସମ୍ମାନ ଦେଖାଇ କି ଲାଭ ? ସେମାନେ ଯେ ତାଙ୍କୁ ଖୁବ୍ ବେଶି ଘୃଣା କରୁଥିଲେ ତାହା ନୁହେଁ— ମାତ୍ର ଯେତେବେଳେ କାମର ଚାପ କମ ଥାଏ, ସେମାନେ ତାଙ୍କୁ ଟିକିଏ ଥଟ୍ଟା କରିବାକୁ ଚେଷ୍ଟା ନ କରି ରହି ପାରନ୍ତି ନାହିଁ । ଆଉ ଯଦି ସେମାନେ ନକଲ କରିବାରେ କିଛି ଭୁଲ୍ କରି ଥାଆନ୍ତି— ତାହାହେଲେ, ଦୋଷଟା ଆସି ସିଧା ଅଧ୍ୟାପକ ସାହେବଙ୍କ ଆମିତ୍ୱର ଉପରେ ପଡ଼ିଯାଏ ।

'ଶୁଣୁଛନ୍ତି ଆପଣମାନେ, କିଏ କଣ ନକଲ କରୁଛନ୍ତି ମୋତେ ଟିକିଏ ଦେଖାନ୍ତୁ ତ । ମନ ଦେଇ ଶୁଣନ୍ତୁ । ମୋ କଥା ଟିକିଏ ଶୁଣନ୍ତୁ । ଶୁଣୁଛନ୍ତି ଆପଣ, ଆପଣଙ୍କୁ କହୁଛି, ଆପଣ ଯେତେବେଳେ ragione ଲେଖିବେ, ଦସ୍ତଖତର ଗୋଟାଏ 'g' ଲେଖିବେ । ବୁଝିଲେତ, ମହାଶୟ?'

ବେଶୀ ଗଡ଼ିବା ଭଲ, ଅଧ୍ୟାପକ ମହାଶୟ, ବରଂ ଦୁଇଟା ଏଲିଖିବା ଉତ୍ତମ । କାରଣ ଏଟା reasonର ବ୍ୟାପାର କି ନା ।'

'ବେଶ୍ ଭଲ !' ଅଧ୍ୟାପକ ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ି ଉତ୍ତର ଦେଲା ଏବଂ ଅଭ୍ୟାସ ବଶତଃ ଓଠଟା ଲମ୍ବାଇ ଦେଇ ଓ ତାହା ନୁଆଁଇ ଆଣି, ତାର ଶୀର୍ଣ୍ଣ-ଶୁଷ୍କ ଗଣ୍ଡ ଦୁଇଟିକୁ ପ୍ରାୟ ଦରବୁଜା କରି ଦେଲା । ତାର ଚଷମା ଭାରି ବୋଝିଲ ନାକର ଖାଲ ଭଳି ଜାଗାଟା— ତାହା ତଳେ ତାର ଆଖି ଦୁଇଟା ପ୍ରାୟ ଲୁଚିଗଲା ।

ଯେତେବେଳେ କଲେଜ୍-ଛାତ୍ରମାନେ ଅଧ୍ୟାପକଙ୍କୁ ଏପରି ଭାବରେ ଦୀର୍ଘ ନିଃଶ୍ୱାସ ଛାଡ଼ି 'ବେଶ୍ ଭଲ' ବୋଲି କହିବାର ଶୁଣନ୍ତି, ସେମାନେ ସମସ୍ତେ ହସି ହସି ଗଡ଼ି ଯାଆନ୍ତି । ସେ ଆଦୌ ବୁଝି ପାରେ ନାହିଁ, କାହିଁକି ସେମାନେ ଏମିତି କରନ୍ତି । ତାର କେଉଁଠି କିଛି ଗୋଳମାଳ କି ଭୁଲ୍ ହୋଇଗଲେ, ଏହି ଦୁଇଟି ଶବ୍ଦ ଉଚ୍ଚାରଣ କରିବାଟା ତାର ପ୍ରାୟ ଅଭ୍ୟାସରେ ପରିଣତ ହୋଇ ଯାଇଥିଲା— 'ବେଶ୍ ଭଲ··· ବେଶ୍ ଭଲ···', ଆଉ ଏହି ଛାତ୍ରୀମାନେ ଏବେ ତା ବିଷୟରେ କିଛି କହିବାକୁ ଗଲା ବେଳେ, ତାକୁ 'ଅଧ୍ୟାପକ ବେଶ୍ ଭଲ' ବୋଲି ସମ୍ବୋଧନ କରୁଥିଲେ । ଏହି ନୂତନ ନାମକରଣଟା ତା କାନରେ ପଡ଼ିବାରୁ ସେ ଟିକିଏ ହସି ଦେଲା, ତା ଓଠଟା ଲମ୍ବାଇ ଦେଲା, ତା ବେକ ନୁଆଇଁ ଦେଲା ଏବଂ ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ିଲା······ ଓ, ତାର ଅଜାଣତରେ, କେତେବେଳେ ତାର ସେହି ଅଭ୍ୟାସଟା ହୋଇଗଲା······ ନିଷ୍ଠୁର ନିୟତିର ପାଖରୁ କ୍ରମାଗତ ପ୍ରହାର ଖାଇ ଖାଇ ସେ ଆଶା ଛାଡ଼ି ଦେଇ ଥିବାରୁ, ତାର ଫଳ ସ୍ୱରୂପ ଏହି ଅଭ୍ୟାସଟା ବୋଧହୁଏ ତା ଦୈନନ୍ଦିନ ଜୀବନରେ ଆସି ଠିଆ ହୋଇ ଯାଇଛି । କିନ୍ତୁ ଏଣିକି, ଏବେ ପରେ, ସେ ତାର ସବୁ ଦୁଃଖ ବଦଳରେ ଶାନ୍ତି ପାଇଛି, ଏବଂ ଭବିଷ୍ୟତରେ ବି ଯେତେ ଦୁଃଖ ଆସିବ ସେ ତାହା ସହାସ୍ୟ ମୁଖରେ ସହିବ, —ତାହା ଶପଥ୍ୟଙ୍କୁ ସେ ଆଉ ଭୟ କରେ ନାହିଁ । ପୃଥିବୀର ସବୁ କଲେଜ ଛାତ୍ରମାନେ

ତାକୁ ପରିହାସ କରନ୍ତୁ, ସେମାନେ ତାକୁ 'ବେଣ୍ କଲ୍' ବୋଲି ଡାକନ୍ତୁ—ସେମାନଙ୍କର ଯାହା ଖୁସି ସେମାନେ ତାକୁ ତାହା ବୋଲି ଡାକନ୍ତୁ—ତାର ସାଷ୍ଟାଜିନା ଥିବା ଯାଏ ସେ ସେମାନଙ୍କର ଉପହାସକୁ ଆଦୌ ଗୋଡ଼ର ଭରବ ନାହିଁ। ଯେତେବେଳ ଯାଏ ସେ ଅଫିସରେ ବସି କାମ କରୁଥାଏ, ତାର ମନଟା ସବୁବେଳେ ସାଷ୍ଟାଜିନା ପାଖରେ ଘୂରି ବୁଲୁଥାଏ। ସାଷ୍ଟାଜିନା ଡେର୍ ଦୂରରେ ଥିଲେ ବି ହେବ, ତାର ଛବି ଅଧ୍ୟାପକର ଆଖି ଆଗରେ ପ୍ରାୟ ବରାବର ନାଚୁଥାଏ। ସେ ପରିଷ୍କାର ଦେଖିପାରେ, ଭସ୍ମା ସାନ ନିଗ୍ରେବେ ଧା ଝରେଣ୍ଟି-ଲୋରେ ବଡ଼ା ନେଇଥିବା ତାର ଶ୍ଲେଟ ଛବାସଟିର ଗୋଟିଏ କଣରେ ସାଷ୍ଟାଜିନା ଯେମିତି ଏକ ମନରେ କାମ କରୁଛନ୍ତି।

୧୮୯୩ ମସିହାର ଅଗଷ୍ଟ ୧୫ ତାରିଖରେ, ସାଷ୍ଟାଜିନା ନବିସ୍ନରେ ଗୋଟିଏ ପୁଅ ପ୍ରସବ କଲେ। ତାର ନାମ ଚଲୁଫିନା। ପିତୃତ୍ୱର ଗୌରବରେ ଆନନ୍ଦ-ଅଧୀର ହୋଇ ଅଧ୍ୟାପକ ପ୍ରାୟ ପାଗଳ ହୋଇଗଲେ। ଯାହା ହେଉ, ଗୋଟିଏ ବିଷୟରେ, ସେ ଚିନ୍ତିତ ହୋଇଗଲେ—କାରଣ ପିଲାଟିକୁ ପ୍ରତିପାଳନ କରିବା ପାଇଁ ସାଷ୍ଟାଜିନାର ଯଥେଷ୍ଟ ଶକ୍ତି ନ ଥିଲା। ତେଣୁ କିଛି ଦୂରରେ ପାହାଡ଼ ତଳେ ଥିବା ଗୋଟିଏ ଗ୍ରାମର ଜଣେ ଧାଈ-ମାଆ ପାଖକୁ ପିଲାଟିକୁ ପଠାଇ ଦେବାକୁ ସ୍ଥିର କଲେ। ଏହି ବ୍ୟବସ୍ଥାକୁ ମାନି ନେବା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ ବୋଲି ଜାଣି, ଅଧ୍ୟାପକ ତା ମନକୁ ଶାନ୍ତ କରିବାକୁ ଚେଷ୍ଟା କଲେ ଏବଂ ଧାଈ-ମାଆର ଘରର ଠିକଣା ପାଇଁ ସେ ପିଗାରେଟ, କପି ଓ ଆଉ କେତେ ଲେଟ କାଗଜର ତଳାଶ ଛାଡ଼ିଦେଲେ।

ଆପଣ ଯାଦୁକରଙ୍କ ଦେଖିଥିବେ। ସେମାନେ ଗୋଟିକ ପରେ ଗୋଟିଏ ଖେଳ ଦେଖାଉଥାନ୍ତି ଏବଂ ବଡ଼ଲେ ଟେଲିକ ବୃଦ୍ଧପତେ ଟିଆ

ହୋଇ ଉଲ୍ଲସିତ ଚିତ୍ତରେ ଖେଳ ଦେଖୁଥାନ୍ତି । କିମ୍ବା ହୁଏତ ଆପଣ ଶୁଣିଥିବେ, ସର୍କସ-ଚାଳକ ଯେତେବେଳେ କୌଣସି କଠିନ ଖେଳ ଦେଖାଇବା ପାଇଁ ତାର ଖେଳାଳୀକୁ ଠିଆ କରାଏ, ସେ ସମସ୍ତଙ୍କୁ ଶୁଣାଇ କହେ: 'ବର୍ତ୍ତମାନ ଗୋଟାଏ ବଡ଼ କଠିନ ଖେଳ ଦେଖାଯିବ। ଆପଣମାନେ ମନ ଦେଇ ଲକ୍ଷ୍ୟ କରନ୍ତୁ । ଏଥର ବର୍ତ୍ତମାନ ଆଗ ଅପେକ୍ଷା ଗୋଟାଏ ଅଧିକ କଠିନ ଖେଳ ଦେଖାଇବାକୁ ଯାଉଛୁ ।' ବଚସ୍ତ ସାମାନ୍ୟ କସମୋ ଅନୁଷ୍ଠାନର କରଭାସ ଅମିଦେଇଙ୍କୁ ଭାଗ୍ୟବିଧାତା ରୂପୀ ସର୍କସ-ଚାଳକ, ତାର ଜନ୍ମ ଠାରୁ ଆଜି ଯାଏ, ଦୁଃସ୍ଥ ଜୀବନରେ ଗୋଟାକ ପରେ ଗୋଟାଏ କେତେ ଯେ ଶକ୍ତ ଖେଳ ଖେଳାଇଲେ, ତାହାର ହିସାବ ନାହିଁ ! କିନ୍ତୁ ସବୁ ଠାରୁ କଠିନ ଖେଳଟା ସେତେବେଳେ ବାକି ଥିଲା, ୧୮୯୪ ମସିହା ମେ ୩୦ ତାରିଖରେ ତାହା ଦେଖାଇଗଲା ।

ସେହି ଦିନ, ଅଧ୍ୟାପକ ଭରଭାସ ଅମିଦେଇ ଠିକ୍ ସମୟରେ ଘରକୁ ଫେରି ଆସିଲେ— ଠିକ୍ ସାଢ଼େ ଛଅଟା ବେଳେ— ଗୋଟିଏ ବାକ୍ସରେ ମିଠାଇ ଆଣିଥିଲେ, କାରଣ ସାଣ୍ଟାନିନା ସେହି ମିଠାଇ ଖାଇବାକୁ ଭଲ ପାଏ । ସେ ସିଡ଼ିରେ ଅଳ୍ପେ ଅଳ୍ପେ ଉପରକୁ ଉଠିଗଲେ, ପକେଟରୁ ଚାବି ବାହାର କଲେ, ଅନେକ କଷ୍ଟରେ ତାହାର କଣ୍ଟା ପାଇ ସ୍ଲୁଚ ଲଗାଇଲେ, ଦୁଆର ଫିଟାଇଲେ ଏବଂ ଭିତରକୁ ଗଲେ । କିନ୍ତୁ ସାଣ୍ଟାନିନା ଘରେ ନ ଥିଲା । ସେ କୁଆଡେ଼ ଗଲା ? ସେ ତ କେବେହେଁ ଦିନ ଏତେବେଳେ କୁଆଡେ଼ ବାହାରେ ଯାଏ ନାହିଁ । ଆଜି ତାର ନିଶ୍ଚୟ କିଛି ହୋଇଛି, କାରଣ ଭୋଜନ-ଘରେ କିଛି ବ୍ୟବସ୍ଥା ହୋଇ ନାହିଁ, କି ବେଶଭୂଷା-ଘରେ ସେଲାଇର ଛୁଞ୍ଚିବର୍ଣ୍ଣ ସୂଚା ନାହିଁ । ନିଆଁ ଲିଭି ଯାଇଛି ଏବଂ ଖୋଲି ସକାଳେ ଆସି ଭୁକଙ୍ଗଣୀ ଯେମିତି ବାସନକୁସନ ଓ ଘରଦ୍ୱାର ପରିଷ୍କାର କରି ଦେଇ

ଯାଇଥାଏ; ସବୁ ଠିକ୍ ସେମିତ ଅବସ୍ଥାରେ ରହିଛନ୍ତି । ତାହାହେଲେ ସାଣ୍ଟାନିନାଙ୍କ କଣ ହୋଇ ଥାଇ ପାରେ ? ବୋଧହୁଏ ଡଲଫିନୋର ଧାଙ୍କ-ମାଅ ଠାରୁ କୌଣସି ଜରୁରୀ ଖବର ଆସି ଥାଇ ପାରେ । ତାହା ହେଲେ ସୁଦ୍ଧା ଶିଘ୍ର ଅଫିସ୍‌କୁ ତା ପାଖକୁ କୌଣସି ଖବର ନ ପଠାଇ, ତାର ଚାଲି ଯିବାଟା ବି ତ ସମ୍ଭବ ନୁହେଁ । ଲମ୍ବା ସିଡ଼ିରେ ସେ ପୁଣି ତଳକୁ ଓହ୍ଲାଇ ଆସିଲା, ଘରର ଦରୁଆନକୁ ପଚାରିଲା, ଘର ଢଳରେ ଥିବା ଷ୍ଟେସନ ଦୋକାନରେ ଅନୁସନ୍ଧାନ କଲା, ଏବଂ ପଡ଼ୋଶୀ ଘରର ଚାକରକୁ ପଚାରିଲା, କିନ୍ତୁ କେହି କିଛି ଖବର ଦେଇ ପାରିଲେ ନାହିଁ । ଉପରେ, ତାର ଛୋଟିଆ ଫ୍ଲାଟ୍ର ଘର ଅସବାବପତ୍ର ସବୁ ଥିର ଏମିତ ନିଶ୍ଚଳ ଓ ନୀରବ ଭାବରେ ଠିଆ ହୋଇଥିଲେ ଯେ ତାକୁ ଜଣା ଯାଉଥିଲା, ସେମାନେ ଯେମିତ ଧୈର୍ଯ୍ୟ ଧରି ଅପେକ୍ଷା କରିଥିଲେ କେତେବେଳେ ପୁଣି ସେହି ସୁଖ ଶାନ୍ତିମୟ ଜୀବନ ଯାତ୍ରା ଆରମ୍ଭ ହେବ । ସେମାନଙ୍କର ସୁଶୃଙ୍ଖଳ ବ୍ୟବସ୍ଥା ସହିତ ନିଜର ମାନସିକ ବିଭ୍ରାନ୍ତି ତୁଳନା କରି ମାର୍କ ସେ ଆଉ କିଛି ସହି ପାରିଲା ନାହିଁ କି ସେଠାରେ ବି ରହି ପାରିଲା ନାହିଁ । ତେଣୁ ସେ ସାଣ୍ଟାନିନାର ଅନୁସନ୍ଧାନରେ ବାହାରି ପଡ଼ିଲା । ପ୍ରଥମେ ସେ ଏଣେ ତେଣେ ଘୂରି ବୁଲିଲା, ମାତ୍ର ତାକୁ ପାଇଲା ନାହିଁ । ତା ପରେ ସେ ତାର ଅଫିସ୍‌କୁ ଗଲା ଏବଂ ଡଲଫିନୋର ଧାଙ୍କ-ମାଅ ପାଖକୁ ଗୋଟାଏ ରିପ୍ଲାଇ-ପେଡ ତା'ର ପଠାଇଲା । ତା ପରେ ସେ ଉଦ୍ଦେଶ୍ୟହୀନ ଭାବରେ ଏଣେ ତେଣେ ଘୂରି ବୁଲିବାକୁ ଲାଗିଲା, ଅର୍ଥାତ୍ ତା ଗୋଡ଼ ତାକୁ ଯେଉଁଠାକୁ ନେଲା ସେ ସେଠାକୁ ଚାଲିଗଲା । ତାର ମଥା ବାୟୁ ଚକ୍ର ଭଳି ଘୂରି ବୁଲୁଥିଲା, ଏବଂ ସେଥିପାଇଁ ସବୁ ହରାଇ ଯାଉଥିଲେ ସୁଦ୍ଧା ସେ ତାହା ଲକ୍ଷ୍ୟ କରି ପାରିଲା ନାହିଁ । ହଠାତ୍ ଯେତେବେଳେ ତାର ଖିଆଲ ହେଲା ଯେ ତାରର ଜବାବ

ଆସିବା ବେଳ ହୋଇ ଗଲାଣି, ସେ ଘରକୁ ଫେରି ଆସିଲା । ସେ ମନେ ମନେ ଆଶା କରିଥିଲା ଯେ ହୁଏତ ଘରେ ସେ ସାଣ୍ଟାନିନାକୁ ଦେଖିବାକୁ ପାଇବ । କିନ୍ତୁ ଦରୁଆଜର ପ୍ରଥମ କବାଟରେହିଁ ତାର ସେହି ଆଶା ଧୂଳିସାତ ହୋଇଗଲା, ଏବଂ ତା ପରେ ଅଧ୍ୟାପକ ସହସା ଏତେ କ୍ଳାନ୍ତ ବୋଧ କଲା ଯେ ପୁଣି ଥରେ କପର ସେହି ସିଡ଼ି ଚଢି ସେ ଉପରକୁ ଉଠିଯିବ ତାହା ସେ ଅଦୌ ଚିନ୍ତା କରି ପାରିଲା ନାହିଁ । ଯାହା ହେଉ, କୌଣସି ମତେ, ସେ ଉଠିଯାଇ ପାରିଲା, ଏବଂ ଉପରେ ପହଞ୍ଚି, ଅନ୍ଧାରରେ, ଅଣ୍ଡାଳି ଅଣ୍ଡାଳି ତାର ଶୋଇବା ଘରେ ପ୍ରବେଶ କଲା, ଏବଂ— ତଥାପି ଅନ୍ଧାରରେ— ଗୋଟାଏ ଆରାମ-ଚୌକିରେ ପଡ଼ିଯାଇ, ସାଣ୍ଟାନିନାର ପ୍ରତୀକ୍ଷା କରିବାକୁ ଲାଗିଲା ।

କିଛି କ୍ଷଣ ପରେ, ଗୋଟାଏ କି ଅବାଜ ତାକୁ ଚଞ୍ଚଳ କରି ପକାଇଲା: ମନେ ହେଲା ସେଟା ଯେମିତି ତାର ସାରା ଶରୀରରେ ପ୍ରବେଶ କରୁଛି— ତାର ମଥା, ପେଟ ଓ ଏପରିକି ଆଣ୍ଠୁ ଓ ଗୋଡ଼ର ଗୋଇଠି ବାଟେ ପଶିଗଲା । ତାର ମନେ ହେଲା, ଘଣ୍ଟା ଯେମିତି ସର୍ବାଙ୍ଗରେ ତା ଅଙ୍ଗକୁ ତଡ଼ି ଆସୁଛି । ସେଥିରେ ତାର ଶରୀର କମ୍ପିବାକୁ ଲାଗିଲା ଏବଂ ତାର ଭାବନା ଓ ଚିନ୍ତାସବୁ ଦୂରୀଭୂତ ହୋଇଗଲା । କିଛି ସମୟ ସେ ଦର-ଶୁଆ ଅବସ୍ଥାରେ ବସି ରହିଲା । ତା ପରେ, ତାର ଧର ପିଅନ ଘରର ଦୁଆର ମୁହଁରେ ଠିଆ ହୋଇଛି କି ନା ଦେଖିବା ଲାଗି, ସେ ଝରକା ପାଖକୁ ଉଠିଗଲା, ଏବଂ ଜାଣି ପାରିଲା ଯେ ସେହି ଘଣ୍ଟା ତଳ ରାସ୍ତାରୁ ଆସୁଛି ଏବଂ ଗୋଟିଏ ଝଙ୍କୃତ ଆଲୁଅ ସ୍ୱରୂପ ହୋଇ ଯାଇ ଥିବାରୁ ଯେମିତି ହେଉଛି ।

ଫଳରେ ସକାଳ ହେବା ସଙ୍ଗେ ସଙ୍ଗେ, ଧାଈ-ମାଆ ନିକଟରୁ ତାରଟା ଆସିଗଲା— ନାସ୍ତିବାଚକ ଜବାବ । ତହୁଁ ତାର ଆଶାର ଶେଷ ରେଖା ଟିକକ ଲିଭିଗଲା ।

କେତେ ଘଣ୍ଟା ପରେ, ସେ ଧନର ଭଣ୍ଡାର ଜଗିବା ଓ ଘର ସଫା କରିବା ପାଇଁ ରୁକ୍ମିଣୀ ଆସି ପହଞ୍ଚିଗଲା । ସେ ଜଣେ ଝିଅ ସ୍ୱାସ୍ଥ୍ୟବତୀ, କର୍ମଠ, ବଳିଷ୍ଠ, ତୀକ୍ଷ୍ଣ-ବୁଦ୍ଧି ଓ ମୁଖରା ବାଳିକା ।

ତାର ମୁନିବ ବସି ରହିଥିଲେ । ତାଙ୍କ ବଦନ ମଣ୍ଡଳରେ ଭୟଙ୍କର ବିବର୍ଣ୍ଣ ଓ ଅଦ୍ଭୁତ ଦୃଷ୍ଟି ଦେଖି, ରୁକ୍ମିଣୀ କହି ପକାଇଲା, 'ଆଜି ତ ଖୁବ୍ ଶୀଘ୍ର ଉଠିଛ !'

'ସେ ଏଠାରେ ନାହିଁ,' ସେ ତାକୁ ବୁଝାଇବାକୁ ଲାଗିଲେ, 'କାଲି ଠାରୁ— ଏଠାରେ ନାହିଁ ।'

'ସତେ ! ତାହାହେଲେ ତ ସର୍ବନାଶ !'

ଅଧ୍ୟାପକ କରୁଣାର ଅଭିନୟରେ ତାଙ୍କ ହାତ ଦୁଇଟା ଲମ୍ବାଇ ଦେଲେ, ଏବଂ ତା ପରେ ଧୀରେ ଧୀରେ ପୁଣି ଗୋଟାଏ ଚୌକିଉପରେ ବସି ପଡ଼ିଲେ ଏବଂ ସେଠାରେ ହତଜ୍ଞାନ ଅବସ୍ଥାରେ ବସି ରହିଲେ ।

'ସିଏ ଆଉ ନାହିଁ,' ସେ ପୁଣି କହିଲେ ।

'ତାହାହେଲେ ତମେ କେଉଁଠାକୁ ସେ ଯାଇ ପାରିଥିବ ?' ରୁକ୍ମିଣୀ ପଚାରିଲା ।

ସେ ଆଉ ଗୋଟାଏ ନୈରାଶ୍ୟଜନକ ଭଙ୍ଗୀରେ ଜବାବ ଦେଲେ ।

'ଆପଣ ଟିକିଏ ଖୋଜନ୍ତୁ, ଆଜ୍ଞା,' ରୁକ୍ମିଣୀ ପରାମର୍ଶ ଦେଲା, 'ଭଲେ ଦେଖନ୍ତୁ, କେଉଁଠି କେତେ ଜଣ... କେତେ ଜଣ ବିଦେଶୀ ରହୁଛନ୍ତି— ସେଠୁ ଯେଉଁ ଲୋକମାନେ ଛବି ଆଙ୍କନ୍ତି । ମୁଁ ଜାଣେ, ସେମାନଙ୍କ ଭିତରୁ ଜଣେ ତାର... ତାର ଛବି ଆଙ୍କୁଥିଲା ।'

ଅଧ୍ୟାପକ ଚମକି ପଡ଼ିଲେ, ଏବଂ ତା ପରେ ହଠାତ୍ ଆଖିକୁ ଟାଁ କରି ଅନାଇଲେ ।

'ଏଁ' ମୋ ସ୍ତ୍ରୀ ? ତାର ଛବି ? କେବେ ?

'ମୁଁ ଭାବିଥିଲି ଆପଣ ସେ ବିଷୟ ଜାଣନ୍ତି । ଶୀତ ସକାଳେ ତ ସେ ସେଠାକୁ ଯାଆନ୍ତି, ଅଉ ଭୋଜନ ପରେ ମଧ୍ୟ ସେ ପୁଣି ଚାଲିଯାନ୍ତି ।'

ମୁହାଁଁଶ ମେଲା କରି, ଖୁବ୍ ଧୀର ସ୍ଥିର ଭାବରେ, ସେ ବସି ରହିଲା, ଏବଂ ତାର ଶିରା ବହୁଳ ହାତ ଦୁଇଟି, ଖୁବ୍ ଧୀରେ ଧୀରେ, ଗୋଡ଼ ଉପରେ ବୁଲାଇବାକୁ ଲାଗିଲା ।

'ତାହାହେଲେ ମୁଁ ଯାଉଛି, ଯାଙ୍କୁ ଦେଖି ଆସେଁ ? ବେଶୀ ଦୂର ବାଟ ନୁହେଁ, ଏହି ଦ ଉଦ୍ୟାନ ମୋଡ଼ଟା... ମୁଁ ସେହି ଲୋକଟାକୁ ଚିହ୍ନିଛି... ସେହି ତପସ୍ୱୀ ଶବ୍ଦ କରନ୍ତା ।'

ଗୃହକର୍ତ୍ତ୍ରୀ ଯାହା କହିଲା ତାହା ତା କାନରେ ବୋଧହୁଏ ବାଜିଲା ନାହିଁ । ତେଣୁ ସେ ଚଷିଲା ତଳକୁ ଓହ୍ଲାଇ ଗଲା ଏବଂ କେତେକ ମିନିଟ ପରେ, ଧଇଁସଇଁ ହୋଇ ଓ ମଥା ନୁଆଁଇ, ଫେରି ଆସିଲା । ଟିକିଏ ଦମ ନେଲା ପରେ, ସେ କହି ପକାଇଲା :

'ଅଃ ! ମୁଁ ଯାହା ଭାବିଥିଲି ସେଇଆ ! ସେ ବି ଚାଲି ଯାଇଛି... କାଲି... ଠିକ୍ ସେମିତିକିଆ ବେଳେ... ବଡ଼ ଅଜବ କଥା ତ ଏଠା ।'

ଅଧ୍ୟାପକ କାରେଭାବ ଅସିଦେଇ ଚୁପ୍ କରି ବସି ରହିଲା । ତାର ମୁହଁର ଭାବରେ କୌଣସି ପରିବର୍ତ୍ତନ ହେଲା ନାହିଁ । ମୃତ ମଣିଷର ଦୃଷ୍ଟି ଯେମିତି ତା ନୟନରେ ଖେଳୁଥିଲା । ସେ ଦଳୁ ମାଳତ ବସି ତା ଗୋଡ଼ରେ ହାତ ମାରୁଥାଏ । ଗୃହକର୍ତ୍ତ୍ରୀଟା ତା ଆଡ଼କୁ କିଛି ସମୟ କରୁଣାପୂର୍ଣ୍ଣ ଦୃଷ୍ଟିରେ ଅନାଇଲା, ଏବଂ ତା ପରେ ନିଜର ମାଲିକାଣୀ ସମ୍ବନ୍ଧରେ ମନେ ମନେ ଗୁଣୁଗୁଣୁ ହେବାକୁ ଲାଗିଲା:

'କେଡ଼େ ବୋକାଟାଏ ମ ! ତୋ ସ୍ୱାମୀ ତୋତେ ଏତେ ଭଲ ପାଆନ୍ତି । କଚେମ ସବୁ କଡ଼ରୁ ସଦାବେଳେ ମୁହଁ ବନ୍ଦ କରି ଆଆନ୍ତି ।

ତୁ ତ ଏଠାରେ ତାଙ୍କ ପାଖରେ ନିଶ୍ଚିନ୍ତରେ ଥାଆନ୍ତୁ···।' ମାଲତୀକୁ ଲକ୍ଷ୍ୟ କରି ସେ କହିଲା, 'ଅସନ୍ତୁ ଅପଣ, ମନଟା ଏତେ ଖରାପ କରୁଛନ୍ତି କାହିଁକି, ଉଠନ୍ତୁ। ସେମିତି ଚୁପ୍‌ଚାପ ବସି ରହନ୍ତୁ ନାହିଁ ! ନିଜ ମନଟା ଠିକ୍ କରି ରଖନ୍ତୁ। ସେମିତି ଗୋଟାଏ ବଦନାମ ବୋଝ ମାଇକିନା ବିଷୟ ଭାବି କଷ୍ଟ ଲଭ ନାହିଁ। ଯଦି ପ୍ରେମ କଥା କହନ୍ତି ତ ମୁଁ କହିବି ସେଟା କି ଭଲ ? ନିଆଁ ଉପରେ ବସାଇଥିବା ଗୋଟାଏ ଦୁଧ-କରେଇ ଭଳି ସେଟା— ପ୍ରଥମେ ସେଥି ଫୁଲି ଉଠେ, ଆଉ ତା ପରେ ଫୁଟିବାକୁ ଲାଗେ ଓ ଉତୁରି ପଡେ··· ଅସନ୍ତୁ, ଉଠି ଅସନ୍ତୁ, ଦମ୍ଭ ଧରନ୍ତୁ ! ମନଟାକୁ ହାଲକା କରିବା ପାଇଁ ଚେଷ୍ଟା କରନ୍ତୁ ! ସେଠାରେ ସେମିତି ଚୁପ୍ କରି ବସି ରହନ୍ତୁ ନାହିଁ !'

କିନ୍ତୁ ଅଧ୍ୟାପକ ତାର ସରଳ ଓ ବହୁପଣିଆ କଥାର କୌଣସି ଜବାବ ଦେଲେ ନାହିଁ। ସେ ଖାଲି ତା ମଥାଟା ଟିକିଏ ହଲାଇ ଦେଲା। ତା ଆଖିରୁ ଟୋପାଏ ଲୁହ ଗଡ଼ି ପଡିଲା ନାହିଁ, କି ଆଉ କାହା ଆଗରେ ନିଜର ଦୁଃଖ ପ୍ରକାଶ କରିବାକୁ ବି ତାର ଟିକିଏ ଇଚ୍ଛା ହେଲା ନାହିଁ। ସେ ନିଜକୁ ଭାଙ୍ଗି ପଡ଼ିବାକୁ ଦେବ ନାହିଁ କି କାହାର ଠାରୁ ସମବେଦନା ବା ସାନ୍ତ୍ୱନା ପାଇବାକୁ ଲାଳାୟିତ ହେବ ନାହିଁ। କେବେ କେବେ ତାର ମନେ ହୋଇଛି, ଯଦି କୌଣସି ଅଭାବିତ କାରଣରୁ ସେ ତାର ପାଟନାକୁ ହରାଏ— କିମ୍ବା ତାର ପ୍ରେମକୁ ହରାଇ ବସେ, ତାହାହେଲେ ତା ଅନ୍ତର ଭିତରେ ସେ କି ଦାରୁଣ ଆଘାତ ନ ପାଇବ— କିନ୍ତୁ ଆଜି ତା ମନର ଅନ୍ତରତମ ପ୍ରଦେଶରେ ସେହି ଦୁଃଖର କୌଣସି ସୂଚନା ସେ ପାଇଲା ନାହିଁ। ଏତେ ଦିନ ହେଲା ଯାହା ତା ମନ ଭିତରେ ମଝିରେ ମଝିରେ କଳ୍ପନାରେ ଦେଖା ଦେଉଥିଲା, ଆଜି ତାହା ସତକୁ ସତ ଘଟିଲା··· ଅଉ ସେ ସେଥିପାଇଁ ଭଲେ ମାତ୍ର ଦୁଃଖ କି କଷ୍ଟ ବୋଧ

କଲା ନାହିଁ ! ସେ ଅଧା ଭାବିଥିଲା ଯେ ଏମିତି କିଛି ଘଟିଲେ ତାର ଚତୁର୍ଦ୍ଦିଗର ସଂସାର ଭାଙ୍ଗି ପଡ଼ିବ, କିମ୍ବା ସେ ନିଜେ ନିଃସହାୟ ହୋଇ ପଡ଼ିବ । ମାତ୍ର ତାର କିଛି ହେଲା ନାହିଁ—ଭଲେ ମାତ୍ର ନୁହେଁ ! ସ୍ୱିକର୍ଣ୍ଣୀକୁ ତାର ଯାତନା ନ ଜଣାଇ ଦେଇ ସେ ତାକୁ ନିର୍ଣ୍ଣିକ୍ତ ଭାବରେ ବିଦାୟ କରିଦେଲା । ଗୃହ ଛାଡ଼ିବା ବେଳେ ସେ ଯେମିତି ଆଉ କିଛି ସାନ୍ତ୍ୱନାପୂର୍ଣ୍ଣ ବାଣୀ ଶୁଣାଇଛି, ତାର ସ୍ୱାଭାବିକ ସୁଲଭ ଢଙ୍ଗରେ ସେ ତାକୁ ଜବାବ ଦେଇଦେଲା :

'ବେଶ୍ ଭଲ… ବେଶ୍ ଭଲ…'

ଯେତେବେଳେ ସେ ଏକା ହୋଇଗଲା ଏବଂ, ଯାହାହେଉ, ଯେତେବେଳେ ସେ ପୁଣି ଚୌକିଟିରେ ଅସ୍ତ ବସିଗଲା, ସେତେବେଳେ ସେ ହଠାତ୍ ବୁଝି ପାରିଲା ଯେ ଗୋଟାଏ ଅଙ୍ଗୁଳି ଉଠାଇବା ପାଇଁ ବି ତାର ଠିକ୍ଏ ହେଲେ ଇଚ୍ଛା-ଶକ୍ତି ନାହିଁ । ତାହାହେଲେ ସେ ଯେତିକି ପରିମାଣରେ ସମ୍ପୃକ୍ତ, ସବୁଲୁ ସତ କଣ ତାର ସଂସାରଟା ଭାଙ୍ଗି ପଡ଼ିଛି ! କିନ୍ତୁ ତାହା ଏତେ ଧୀରେ ଧୀରେ ହେଲା ଯେ ସେ ଆଦୌ ଲକ୍ଷ୍ୟ କରି ପାରିଲା ନାହିଁ । ଚୌକିଗୁଡ଼ାକ ସେମିତି ପଡ଼ି ରହିଥିଲା, ପୋଷାକ-ଆଲମାରୀଟା ବି… ବଇଣାଟା ବି ଠିକ୍ ସେହିଭଳି… କିନ୍ତୁ ଉଦାସୀନତାରେ ସେଗୁଡ଼ାକ କାହାର ବା କାମରେ ଲାଗିବ ?

ଦୁଇ ହାତରେ ସେ ତା'ର ଗୋଡ଼ ଦୁଇଟା ଘଷିବାକୁ ଲାଗିଲା ଏବଂ କ୍ରମେ କ୍ରମେ ଅଧିକ ଜୋରରେ ଅଙ୍ଗସଞ୍ଚାଳନା କଲା, କାରଣ ତାର ମନେ ହେଲା ଯେ ତାର ସମଗ୍ର ଶରୀରଟା ଯେମିତି ହେମାଳ ହୋଇ ଯାଉଛି—ଗୋଟାଏ କି ଅଦ୍ଭୁତ ଧରଣର ଶୀତ୍ର ନମନୀତ ତାର ହାଡ଼ ବାଟେ ଶରୀର ଭିତରକୁ ପଶି ଯାଉଛି । ସେ ଚୌକିରୁ ଉଠି ଆସିଲା ନାହିଁ, କିନ୍ତୁ ସେଠାରେ ବସି ବସି ସ୍ୱିକର୍ଣ୍ଣୀ ତାକୁ ଦେଇଁ ଖବର ଦେଇ ଯାଇଥିଲା ତାକୁ ମନେ ମନେ ଆଉଡ଼ାଇବାକୁ ଲାଗିଲା— 'ତାର ଛୁଟି… ଜନ୍ମେଷୀ ଶହଜାର୍… ସେ ନିଜ ସକାଳେ

ତା ପାଖକୁ ଯାଉଥିଲା···।' ସେ ବଡ଼ୁଥାଏ, ଓ ଅଳ୍ପ ଆଗେ ତାର ଗୋଡ଼ ଅଦ୍ଭୁତ ଉତ୍ତାପରେ ଯଳୁଥାଏ, ଏବଂ ଏବେଣି ଅଣ୍ଟା ଟୋପାଗୁଡ଼ା ତାର ଦାନ୍ତ ଦାନ୍ତରେ ବାଜୁଥାଏ। ମାତ୍ର ସେହି କମ୍ପନଟା ସେ ବନ୍ଦ କରି ପାରୁ ନ ଥାଏ। ତିନୋଟି କଥା ତା ମନ ଭିତରେ ଘୁଞ୍ଚ ହେଉଥାଏ— ଜ୍ବର, ପଲ୍ଲୀ ଚାଟରର ଓ କାଲି ସକାଳେ ତାର ସେଠାରୁ ଗମନ। ଏହି ତିନୋଟି କଥା କାଗଜର ତିନୋଟି ବାଯୁ-ଚାଳିତ ଖଣ୍ଡ ପରି ତା ଆଖି ଆଗରେ ଯେମିତି ଅନବରତ ପବନରେ ବୁଲିବାକୁ ଲାଗିଲା। ସେହି ଘୂର୍ଣ୍ଣନ ଅବସ୍ଥାରୁ କ୍ରମାଗତ ଗୁହିଁ ରହିବା ଫଳରୁ ତାର ମଥାଟା ବି ଘୂରିବାକୁ ଲାଗିଲା। ଗୋଟାଏ ଭୟଙ୍କର ଭ୍ରମଣ ପରେ, ସେ ଅଜ୍ଞାନ ହୋଇ ଚୌକିରୁ ଗଡ଼ି ପଡ଼ିଲା ଏବଂ ଭୂଇଁରେ ଶୋଇ ରହିଲା।

୧୯୦୪ ମସିହା ମାର୍ଚ୍ଚ ମାସ ବେଳକୁ ନଅ ବର୍ଷ ଦୁଇ ମାସ ବିତି ଗଲାଣି। ଅଧ୍ୟାପକ ଭେରଭ୍ରାସ୍ ଅମିଦେଇଙ୍କର ଏଥିରୁ ଅଳ୍ପ କେତେ ପଛୁ ନାହିଁ, ସର୍ବସ୍ବ-ତ୍ୟାଗୀ ବାପାଙ୍କର ନିର୍ଦ୍ଦେଶରେ କଠିନତମ ଖେଳ ଦେଖାଇବାକୁ ଯାଇ କିପରି ସେ ଡାକ୍ତରଖାନାରେ ପ୍ରାୟ ମୃତ୍ୟୁର ଦ୍ବାର-ଦେଶରେ ଉପନୀତ ହୋଇଥିଲା। ସୁନ୍ଦର ଶ୍ୟାମଳ ପାହାଡ଼ ତଳେ ଅବସ୍ଥିତ ଗ୍ରାମଟିରେ, ତାର ଛୋଟ ପୁଅର କଥା ସେ ଦିନ ମନେ ପକେଇବାକୁ ଭାଗ୍ୟକୁ ତାର ଜୀବନଟା ଚିକା ରହିଗଲା। ବର୍ତ୍ତମାନ କେଲିଫିନୋ ଅବଶ୍ୟ ତା ପାଖରେ ରହୁଛି। ଝିଅଟିର ବୟସ ଦଶ ବର୍ଷକୁ ଟପି ଗଲଣି। ମାତ୍ର ତାକୁ ଦେଖିଲେ ଜଣା ଯାଏ, ଯେମିତି ତା ବାପାର ଅଶେଷ ସେବା ଯତ୍ନ ଓ ଅତ୍ୟଧିକ କଷ୍ଟହିଁ ତାକୁ

ବଞ୍ଚାଇ ରଖିଛନ୍ତି । ସେ ଭାରି ରୋଗା ଓ ଦୁର୍ବଳ ଦିଶୁଥିଲା ଏବଂ ବିଦ୍ୟାଳୟରେ ଅଧ୍ୟୟନ କଲା ବେଳେ ତା ବାବା ପାଖରେ ଯେଉଁ ରୋଗର ଉପକ୍ରମ ହୋଇଥିଲା, ତା ଦେହରେ ବି ସେହି ଲକ୍ଷଣ ଦେଖା ଗଲା ।

ତାକୁ ଆଠ ବର୍ଷ ହେବା ଯାଏ ଡଲଫିନୋ ଜାଣିଥିଲା, ତାର ଜନ୍ମ ପରେ ପରେ ତାର ମାଆ ମରି ଯାଇଛନ୍ତି । କିନ୍ତୁ ଦୁଇ ବର୍ଷ ତଳେ, ଥରେ ତାର ବାବା ଅଫିସକୁ ଯାଇଥିବା ବେଳେ, ମୁହଁରେ ରଙ୍ଗ ଓ ପାଉଡର ବୋଳି ଆଉ ଅଳିଆ ପୋଷାକ ପିନ୍ଧି, ଜଣେ ସ୍ତ୍ରୀ ଲୋକ ତାଙ୍କ ଘରକୁ ପଶି ଆସିଲା ଏବଂ, ଅଣିଲୁ ଝର ଝର ଲୁହ ବୁହାଇ, ତାକୁ କହିଲା ଯେ ତାର ମାଆ ମରି ଯାଇ ନାହିଁ— ଏବେ ବି ବଞ୍ଚିଛନ୍ତି ! ହଁ, ପ୍ରକୃତରେ ସେ ହେଉଛନ୍ତି ତାର ମାଆ । ସେ ତାକୁ ଭାରି ଭଲ ପାଏ, ଏବଂ ତା ପାଖରେ, ଦିନସାରା, ସବୁ ବେଳେ ରହିବାକୁ ଚାହେଁ, ଆଉ ଏସଣି ତାର ସୁନା ପୁଅ, ନୟନ-ପିତୁଳାକୁ ଯେମିତି ଭାବରେ ଗେହ୍ଲା କରୁଛନ୍ତି ପରୁଚବେଳେ ସେ ସେମିତି କରିବାକୁ ଚାହେଁ ।

ଏତିକି ବେଳେ, ଫେଲ୍‌ଟିର ଧାଈ-ମାଆ ଆସି ପହଞ୍ଚିଲେ— ସନ୍ତାନହୀନା, ବିଧବା ହୋଇ ଯିବାରୁ, ନିଜର ଅନ୍ନ-ସଂସ୍ଥାନ ପାଇଁ ସେ ଲୋକଙ୍କୁ ଚାଲି ଆସିଥିଲା ଏବଂ ବର୍ତ୍ତମାନ ସେମାନଙ୍କର ଧାଈ ଓ ଗୃହକର୍ତ୍ତ୍ରୀ ଉଭୟ ଭାବରେ କାମ କରୁଛନ୍ତି । ହଠାତ୍ ସେ ବାହାରକୁ ଫେରିଆସି, ଯେମିତି ପିଲାଟିକୁ ନେଇ କୁରୂପା ସ୍ତ୍ରୀ ଲୋକଟିର କୋଳରେ ଦେଖିଲେ, ତତ୍‌କ୍ଷଣାତ୍ ଦୌଡ଼ି ଧାଇଁଯାଇ ତାକୁ ତା କୋଳରୁ ଝାମ୍ପି ନେଲା । ଡଲଫିନୋ ବଡ଼ ଭୟରେ ଜଡ଼ସଡ଼ ହୋଇ ଶୁଣିଲା ଯେ ଯେଉଁ ସ୍ତ୍ରୀ ଲୋକଟି ତାର ମାଆ ବୋଲି ପରିଚୟ ଦେଉଥିଲା, ତାର ଧାଈ-ମାଆ ତାକୁ ମନ ଇଚ୍ଛା ଗାଳି ଦେଉଛନ୍ତି ।

ତା ପରେ ସ୍ତ୍ରୀ ଲୋକ ଦୁହେଁ ହାତାହାତି ହେବାକୁ ଲାଗିଲେ, ଏବଂ ଯୋଉଠାଏ ଭୟଙ୍କର କାଣ୍ଡ ବା ଘଟିଲା, ଆଉ ତାର ଫଳରେ ଡଲିଫିନୋଙ୍କୁ ଖୁବ୍ ସାଂଘାତିକ ଜର ଭୋଗିବାକୁ ପଡ଼ିଲା ।

କ୍ୟସମୋ ଅଙ୍ଗୋଲିଏରି କରଭାଗ ଅମିଦେଇ ଥାନାକୁ ଯାଇ ଅଭିଯୋଗ କଲା ଯେ ସେହି ଘୃଣ୍ୟ ସ୍ତ୍ରୀ ଲୋକଟା ତାର ଯଥେଷ୍ଟ ଗତ କରସାରି ସୁଦ୍ଧା ସନ୍ତୋଷ ଲାଭ କରି ନାହିଁ, ଏବଂ ଏବଣି ପିଲାଟିର ସର୍ବନାଶ କରିବାକୁ ବସିଛି ।

ଅନେକ ଦିନ ତଳେ, ସାନ୍ତାଲିନା ତାକୁ କହିଥିଲା ଯେ ଅଙ୍ଗି ଯେତେ ଦୂର ପାଉଛି ସେ ସେତେ ଦୂରକୁ ଗୁଳି ଯିବ । ତା ପରେ ପ୍ରକୃତରେ ସେ ହେବ୍ ବୁଲିଲଣି । ଯେଉଁ ଏଗସି କ୍ରିଟକର ତାର ସ୍ୱଭ ଅଛିଥିଲା ତା ସାଙ୍ଗରେ ପଳାଇ ଯାଇ, ସେ ପାରିସ ଓ ନାପ୍‌ଲ୍‌ସରେ ଖୁବ ବର୍ଷ ରହିଲା ଏବଂ ତା ପରେ, କ୍ରମେ କ୍ରମେ ଅବନତିର ପଥରେ ଗତି କରି କରି, ସେ ଭୁବନ ଓ ମିଲାନରେ ଘୂରି ବୁଲିଲା । ତେଣୁ ପେରେ ପହଞ୍ଚିବାର କିଛି ଦିନ ପରେ, ଦୈବାତ୍ ସେ ତା ସ୍ୱାମୀର ନଜରରେ ପଡ଼ିଗଲା । ଯଦିଓ ସେ ବରାବର ଭାବୁଥିଲା ଯେ ସାନ୍ତାଲିନା ଅଧୋପତନର ଚରମ ସୀମାକୁ ଗୁଲି ଯାଇଛି, ତଥାପି ତାକୁ ସେ ଦିନ ହଠାତ୍ ବାଟରେ ଦେଖି ଦେଲା କ୍ଷଣି ସେ ମୂର୍ଚ୍ଛା ହୋଇଗଲା, ଏବଂ ତାକୁ ଜଣେ ଡାକ୍ତର ପାଖକୁ ନେଇଗଲେ ଯାଇ ତାର ଚେତନା ଫେରି ଆସିଲା ।

ସାସାରିରେ ଥିବା ବେଳେ, ଡନ ମେଲକିୟରଙ୍କ ସ୍ଥାନ୍ ନାମକ ଜଣେ ସାର୍ଡିନୀୟ ପୁରୋହିତ ସହିତ ତାର ପରିଚୟ ହୋଇଥିଲା । ଅନେକ ବର୍ଷ ତଳେ ସେ ନିଜେ ପ୍ରୋଟେଷ୍ଟାଣ୍ଟ ହେଉଁ ହେଉଁ ନାସ୍ତିକ ହୋଇ ପଡ଼ିଥିଲେ । ତେଣୁ ଏତେ ଦିନ ପରେ ତା ଭିତରେ ଧର୍ମଭାବ ଉଦ୍ରେକ କରିବା ପାଇଁ ଏହି ପ୍ରୋଟେଷ୍ଟାଣ୍ଟ ମନପ୍ରାଣ ଦେଇ ଲାଗି

ପଡ଼ିଲା । ଅଫିସରେ କୌଣସି କାମ ନ ଥିଲେ ଅଧ୍ୟାପକ ଯେତେବେଳେ କ୍ଲାନ୍ତ ବୋଧ କରେ, ସେତେବେଳେ ସମୟଟା କଟାଇବା ପାଇଁ ପୁରୋହିତ ଦେଇଥିବା ଧର୍ମ ପୁସ୍ତକ ଗୁଡ଼ିକରୁ ସେ ଗୋଟାକ ପରେ ଗୋଟାଏ ପଢ଼ିବାକୁ ଲାଗେ । ତାର ଯୌବନରେ ଯେ ଯେ ଏତେ ଦୁଃଖ କଷ୍ଟ ଭୋଗ କଲା, ତାର ଏକମାତ୍ର ପ୍ରଧାନ କାରଣଟି ହେଉଛି ଯେ ତାର ମାତା ରୂପୀ ପବିତ୍ର ଧର୍ମ ପ୍ରତି ସେ ଦୁର୍ବ୍ୟବହାର କରିଥିଲା— ଏହି କଥାଟି ପୁରୋହିତ ତାକୁ ଖୁବ୍ ସ୍ପଷ୍ଟସ୍ପଷ୍ଟ ଭାବରେ ବୁଝାଇଥିଲା । ଖାଲି ସେତିକି ନୁହେଁ, ନିଶ୍ଚୟ କୌଣସି ବିଶେଷ କାରଣ ଯୋଗୁଁ, ତାର ଗଲିଟିନୋ ଭଳି ସୁନା ପୁଅଟିକୁ ବି, ଭଗବାନ ତାଙ୍କର ଦେବଦୂତ ଓ ମହାତ୍ମାଙ୍କ ଦଳ ଭିତରକୁ ଟାଣି ନେବାକୁ ଚାହିଁଛନ୍ତି । ବାସ୍ତବିକ, ଏହା ତାଙ୍କର ଗୋଟାଏ ପବିତ୍ର ସାବଧାନ ବାଣୀ । ସୁତରାଂ ସ୍ୱଧର୍ମତ୍ୟାଗୀ ଅଧ୍ୟାପକ ବରଷ୍ଟିବ ଆମିଦେଇ, ଯେତେବେଳେ ଏ ସଂସାରରେ ଏକା ହୋଇଯିବ, ସେତେବେଳେ ସର୍ବସ୍ୱ ତ୍ୟାଗ କରି ନିଶ୍ଚୟ ସେ କୌଣସି ମଠରେ ଶ୍ରମଣର ଜୀବନ ଯାପନ କରିବ । ଏହାହିଁ ତାଙ୍କର ଇଚ୍ଛା । ଦେଖିବାକୁ ଗଲେ, ଦୂର-ସ୍ଥାନରେ ଗୋଟାଏ ମଠ ଅଛି— ଖୁବ୍ ଚମତ୍କାର ସ୍ଥାନ, ବାସ୍ତବିକ ଚମତ୍କାର ସ୍ଥାନଟିଏ ! ପ୍ରକୃତରେ ଅନୁତାପ କରିବା ପାଇଁ ଉପଯୁକ୍ତ ସ୍ଥାନଟିଏ— ସେ ନିଶ୍ଚିନ୍ତ ମନରେ ସେଠାରେ ରହି ପାରିବ ।

ଏହିସବୁ ଉପଦେଶ ବାଣୀ ଶୁଣି, ଅଧ୍ୟାପକ ବରଷ୍ଟିବ ଆମିଦେଇ ତାର ବେକଟା ଆଗକୁ ଲମ୍ବାଇ ଦେଲା ଓ କାନ୍ଧ ନୁଆଁଇ ଦେଲା, ଏବଂ ଦରବୁଜା ଆଖିରେ ଅନାଇ, ଥର ଥରେ କୁଣ୍ଠିତ ସ୍ୱରରେ କହିଲା :

'ବେଶ୍ ଭଲ !'

କେଉଁ କେଉଁ ଦିନ ଶିଶୁ ଅଫିସରୁ ଫେରିବା ବେଳେ, ସେ ଦେଖେ— ଡନ ମେଲକସ୍ୱର ତାର ପାଇଁ ଅପେକ୍ଷା କରି ସାନ୍ତା

ମାଉସ୍ବା ଦେଲା ମିନାର୍ଭାର ପ୍ରିଣ୍ଟରେ ଠିଆ ହୋଇଛନ୍ତି, ଆଉ ତେଣେ ଅନ୍ୟ ଦିଗରେ ତାର ସ୍ତ୍ରୀ ଯାନ୍ତ୍ରପୂଜର ରେଲିଂକୁ ଆଉଜି ଝୁଙ୍କାସ୍ତ ଭଙ୍ଗୀରେ ଠିଆ ହୋଇ ରହିଛନ୍ତି । ଦୂରରୁ ଦୁହେଁ ପରସ୍ପର ଉପରେ ହିଂସ୍ର ଦୃଷ୍ଟି ନିକ୍ଷେପ କରୁଥାନ୍ତି । ସେତେବେଳେ ଯଦି କିଏ ଦେଖି ପାରନ୍ତେ, ପୁରୋହିତର ମୁହଁରେ ସଦାବେଳେ ଦାଢି ଥାଏ— ଦେଖନ୍ତେ, ସେ ତା ଶତ୍ରୁକୁ ଓ ଗାଳି ଅଉଡ଼ୁଥାଏ । ଆଉ ସ୍ତ୍ରୀ ଲୋକଟି ତାର ରଞ୍ଜିତ ଓଠର କୋଣରେ ଅବଜ୍ଞ ସ ହସର ରେଖା ଫୁଟାଇ ଥାଏ ।

ସନ୍ଧ୍ୟା ବେଳେ ଅଧ୍ୟାପକ ଉଦ୍ୟାନ ଭିତରକୁ ପଶି ଆସିଲା କ୍ଷଣି, ତାର ସ୍ତ୍ରୀ ଯେଉଁଠି ରେଲିଂ ଧରି ଠିଆ ହୋଇଥାଏ ତାର ଦୃଷ୍ଟି ଯାଇ ସେଠିରେ ପଡ଼ିଯାଏ । କିନ୍ତୁ ସେ ସେଥିପ୍ରତି ଭ୍ରୂକ୍ଷେପ ନ କରି ସିଧା ସଳଖ ପୁରୋହିତ ଆଡ଼କୁ ଚାଲିଯାଏ । ମାତ୍ର ସେ ଜାଣିଥାଏ ଯେ ସେ ଭିସ୍କି ପିଲ୍ସ ନ ମାର୍ଗୋରେ ନ ପହଞ୍ଚୁଣୁ ତାର ସ୍ତ୍ରୀ ତାକୁ ଧରି ପକାଇ ନିଶ୍ଚୟ କିଛି ଟଙ୍କା ମାଗିବ— ମାଗିଲେ ସେ ତ କୌଣସି ମତେ ତାକୁ ମନା କରି ପାରିବ ନାହିଁ । କିନ୍ତୁ ସେ ତାକୁ କ୍ଷମା କରିବାକୁ ଚାହୁଁଲେ. ଯାହାହେଉ, ସେ ଘୃଣାରେ ମୁହଁ ବୁଲାଇ ଦେଇ ଚାଲିଯାଏ । ପୁରୋହିତଙ୍କ ସାଙ୍ଗରେ ସାକ୍ଷାତ ହେବା ମାତ୍ରେ, ସେ ମନେ ମନେ ଧରିନିଏ ଯେ ସ୍ତ୍ରୀକୁ ଟଙ୍କା ଦେଇଥିବାରୁ ତାକୁ ବହେ ଗାଳି ଶୁଣିବାକୁ ହେବ । ସେଥିପାଇଁ ଦାନ୍ତ ଦୁଇଟା ଘଷି ଘଷି, ତାର ସ୍ବଭାବଜ ନୈରାଶ୍ୟ ଭଙ୍ଗୀରେ, ସେ କହି ପକାଏ :

'ବେଶ୍ ଭଲ !… ବେଶ୍ ଭଲ !'

ଏଣେ ବସନ୍ତ ବି ଆସିଗଲା— ଏହି ସମୟଟା ଯକ୍ଷ୍ମା ରୋଗୀଙ୍କ ପକ୍ଷରେ ଅତ୍ୟନ୍ତ ମାରାତ୍ମକ । ଅନ୍ତତଃ ବସନ୍ତ ଋତୁର ପ୍ରଥମ ମାସଟା ଡଲଫିନୋକୁ ନେଇ ସମୁଦ୍ର-କୂଳରେ କଟାଇ ଆସିବା ପାଇଁ ଡାକ୍ତର ତାକୁ ପରାମର୍ଶ ଦେଇଥିଲେ, କାରଣ ସେତେବେଳେ ରୋମର ଜଳବାୟୁ ତା ପକ୍ଷରେ ଅତ୍ୟନ୍ତ କଷ୍ଟ ହୋଇ ପଡ଼େ ।

ତେଣୁ କପ୍ତେନ ଆଣ୍ଡ୍ରୋନିଓ ଡରଗ୍ରାସ ଆମ୍ପିଟେଲ୍ ମାସେ ଛୁଟି ପାଇଁ ଦରଖାସ୍ତ କଲା ଏବଂ ୧୯୦୪ ମସିହା ମାର୍ଚ୍ଚ ୫ ତାରିଖରେ, ପୁଅକୁ ସାଙ୍ଗରେ ଧରି ସମୁଦ୍ର କୂଳରେ ଅବସ୍ଥିତ ନେନ୍ତୁନୋ ଗ୍ରାମକୁ ଯାଇ ଗୋଟିଏ ଛୋଟ ଘର ଭଡ଼ା ନେଇ ରହିଲା ।

—୨—

ସେହି ଗ୍ରାମଟି ଏକା ନିଶ୍ଚିନ୍ତ ମନରେ ମାସେ ଛୁଟି ଉପଭୋଗ କରିବା ଭଳି ସ୍ଥାନଟିଏ । ଦିନକ ପୂର୍ବରୁ ଏଠାରେ ଖୁବ୍ ବର୍ଷା ହୋଇଥିଲା, କିନ୍ତୁ ବର୍ତ୍ତମାନ ମାର୍ଚ୍ଚ ମାସରେ ଆକାଶ ପରିଷ୍କାର ହୋଇ ଯାଇ ଉଜ୍ଜ୍ୱଳ ସୂର୍ଯ୍ୟ କିରଣ ପଡ଼ିଲା ଏବଂ ପବନ ମୃଦୁ ମୃଦୁ ବହିଲାଣି— ଏଥିରୁ ନିଃସନ୍ଦେହରେ ଜଣା ପଡ଼ୁଛି ଯେ ବସନ୍ତ ଆସି ଗଲାଣି ।

ଠିକ୍ ରୋମ ଛାଡ଼ିବା ପରେ ପରେ, ଗାଡ଼ିର ଝରକା ବାଟେ ମୁହଁ ଗଳାଇ ବାହ୍ୟ ଦୃଶ୍ୟ ଦେଖୁଁ ଦେଖୁଁ ଅଧ୍ୟାପକ ମନେ କଲା, କୋମଳ ସବୁଜ ପ୍ରାନ୍ତରରେ ଗୋଟିକ ପରେ ଗୋଟିଏ ଜଙ୍ଗଲି ଫୁଲର ରୂପ ଧାରଣ କରି ବସନ୍ତ ଯେମିତି ତା ଆଗରେ ଧାଇଁ ଧାଇଁ ଲୁଚକାଳି ଖେଳୁଛି । କି ଫୁଲ ? ବୋଧହୁଏ ପୀତ ଗନ୍ଧ ଫୁଲରେ ମଣ୍ଡିତ ହୋଇ ଯାଉଛି । ହଁ, ହଁ, ଏହି ତ ଅଜି ଗୋଟିଏ— ହଁ, ପ୍ରକୃତିରେ ସେହି— ଏହି ତ ଅଉ ଗୋଟିଏ, ଅଡୁଆ ଗୋଛାଏ । ତାହାହେଲେ ନିଶ୍ଚୟ ବସନ୍ତ ଆସିଗଲାଣି ! ଏତେ ବର୍ଷ ପରେ ସେ ଆଜି ଦେଖିଲା, ବସନ୍ତର ଆଗମନରେ ପୀତ ଗନ୍ଧବୃକ୍ଷ ଏତେ କୁସୁମ ଓ ଆନନ୍ଦ-ମୁଖର ହୋଇ ପଡ଼ିଛନ୍ତି ।

ସେ ଟୋପାଏ ଗଭୀର ଦୀର୍ଘ ନିଃଶ୍ୱାସ ନେଲା, ଏବଂ ପ୍ରାନ୍ତରର ନିର୍ମଳ ଓ ମିଠା ପବନ ଗ୍ରହଣର ଅଭିନବ ଅନୁଭୂତି ତାକୁ ପ୍ରାୟ ମଦମତ୍ତ କରି ପକାଇଲା । ତାର ନୟନ-ଯୁଗଳ ଲୋତକରେ ପୂର୍ଣ୍ଣ ହୋଇଗଲା । ତାର ମନେ ହେଲା, ତାକୁ ଟିକିଏ ଦୟା ଦେଖାଇବା ପାଇଁ ନିର୍ମମ ଭାଗ୍ୟ ଏହି ଅପରୂପ ଦୃଶ୍ୟଟି ତା ଆଗରେ ବୋଧହୁଏ ଖୋଲି ଧରିଛି । ଏକ ଅଚିନ୍ତନୀୟ ଆନନ୍ଦରେ ତାର ଅନ୍ତର ପରିପୂର୍ଣ୍ଣ ହୋଇଗଲା । ବର୍ତ୍ତମାନ ଏହି ଦୂଳି-ଧୂସରିତ ଦନସ୍ଥିତକ ଦୂରକୁ ହଟାଇ ଦେଇ, କୌଣସି ଅଜଣା ପଥ ଧରି, ସେ ବନ୍ଧୁ ଦଳ ଭିତର ସେହି ଦେଖିବାରେ ଶୈଶବ ନିକଟକୁ, ନିଜ ଗ୍ରାମର କୋମଳ ସ୍ମୃତି ନିକଟକୁ ଫେରିଗଲା । ସେତେବେଳେ ସେ ତାର ଅତୀତ ଓ ବର୍ତ୍ତମାନର ସବୁ ଦୁର୍ଭାଗ୍ୟ କଥା ପାଶୋରି ପକାଇଲା— ଏଡ଼େ ମାରାତ୍ମକ ରୋଗଗ୍ରସ୍ତ ନିଜର ପୁଅକୁ, ତାର କଳଙ୍କିତା ଚରିତ୍ରହୀନା ସ୍ତ୍ରୀଟାକୁ, ତାକୁ ଅଶାନ୍ତି ପ୍ରଦାନକାରୀ ପୁରୋହିତଙ୍କୁ ବି । ଝିଅଟା ଭଲ ପିଲେ ନିଶ୍ଚୟ ବଞ୍ଚିବ ନାହିଁ, ତଥାପି ତାକୁ ରୋଗମୁକ୍ତ କରିବା ଆଶାରେ, ସେ ଯେ ନିଜର ସାମାନ୍ୟ ଆୟ ତୁଳନାରେ ଅତିରିକ୍ତ ବ୍ୟୟ କରୁଛି, ଏବଂ ତାର ଏହି ଦୁଃଖମୟ ସ୍ୱତନ୍ତ୍ର ଅସ୍ତିତ୍ୱ ଓ ଜୀବନର ଏହି ଦୁର୍ବହ ବୋଝ— କିଛି ଆଉ ତାର ମନେ ରହିଲା ନାହିଁ । ତାର ଅନ୍ତର ଭିତରଟା ଅବଶ୍ୟ ଅନ୍ଧକାର, କିନ୍ତୁ ବାହାରେ ଥିଲା ସବୁଜ ପ୍ରାନ୍ତର, ସୁନୀଳ ଆକାଶ ଓ ବସନ୍ତ ଋତୁର ନିଃଶ୍ୱାସ ପରି ସୁକୋମଳ ସତେଜ ପବନ । ବିମୁଗ୍ଧ ହୋଇ ସେ ସେହି ଦୃଶ୍ୟ ଉପଭୋଗ କରିବାକୁ ଲାଗିଲା ।

ହଁ, ପ୍ରକୃତରେ ଜୀବନ ମଧୁମୟ ହୋଇ ପାରିବ, କିନ୍ତୁ ଆଉ କେଉଁଠି ନୁହେଁ, କେବଳ ସବୁଜିମା ପରିବେଷ୍ଟିତ ସେହି ଉନ୍ମୁକ୍ତ ପ୍ରାନ୍ତରରେ । ସହରର ସରୁ ଗଳି ଭିତରେ ତାକୁ ନିପାତିତ କରିବା

ପାଇଁ ସ୍ୱର୍ଗୀୟ ହିଂସ୍ରତା ଯେତେ ପ୍ରଖର, ଏହି ପ୍ରାନ୍ତର ଭିତରେ ଅବଶ୍ୟ ତାହା ଓହ୍ଲାଇ ପାରିବ ନାହିଁ। ସେ ତା ମନ ଭିତରେ ସେହି ନିର୍ଯ୍ୟାତନାର ଗୋଟିଏ ପ୍ରକୃତ ପ୍ରତିମୂର୍ତ୍ତି ପ୍ରାୟ ଗଢ଼ି ପକାଇଲା ଏବଂ ଭାବିବାକୁ ଲାଗିଲା, ଯେମିତି ସେହି ମୂର୍ତ୍ତିଟି ବାୟୁବେଗ ତା ପଛେ ପଛେ ଗୋଡ଼ାଉଛି— ଗୋଟାଏ ବିଭତ୍ସ ଲୁପ୍ତା ମୂର୍ତ୍ତି। ତାର ଉପସ୍ଥିତି ତାକୁ ଟିକିଏ ଠିଆ ହେବା ପାଇଁ ବି ଅବକାଶ ଦେଉ ନାହିଁ, ମାଟି ଅଣ୍ଟା ତଳେ ତାକୁ ଗୁପି ରଖୁଛି। ଯେଉଁ ମୂର୍ତ୍ତିଟି ତା ପଛେ ପଛେ ଗୋଡ଼ାଉଥିଲା, ସେ ହେଉଛି ତାର ସ୍ତ୍ରୀ।

ଏହି ମନୋରମ ଦୃଶ୍ୟକୁ ଢାଙ୍କି ଦେବା ପାଇଁ ଯେଉଁ ଛବିଟି ସହସା ତା ଆଗରେ ଉଭା ହୋଇଗଲା ସେ ତାକୁ ତୁରନ୍ତ ଦୂର କରି ଦେଲା। ବର୍ତ୍ତମାନ ସେ ଆଉ ଥରେ ବାହ୍ୟ ପୃଥିବୀକୁ ଦେଖିବାକୁ ଲାଗିଲା। ଦେଖ! ଆଲବାନ ପାହାଡ଼ ମାଳା ଦିଶୁଛି। କେହି ଯେମିତି ତାକୁ ଆକାଶ ଉପରକୁ ଟେକି ଧରିଛି— ସେଗୁଡ଼ିକ ଏତେ ହାଲୁକା ଦିଶୁଛନ୍ତି ଯେ କଠିନ ପଥରର ଗଠନ ବୋଲି କେହି ସେଗୁଡ଼ିକୁ ଜାଣି ପାରିବ ନାହିଁ। ଏହି ଯେଉଁ ମଣ୍ଟେ କେଭ ଚୂଡ଼ାଟର ତାର ନେପଲ ଓ ବୀଟର ମାଳା ସନ୍ଧାନ କରି ଯେ ବସି ରହିଛି, ଆଉ ତାର ଉପରେ ଅଧା-ବାଟରେ, ଗୁଡ଼ିଏ ବର୍ଣ୍ଣହୀନ ଗଛର ବଣ ଭିତରେ ପୁରାତନ ଆଶ୍ରମଟିଏ ଠିଆ ହୋଇଛି। ଆଉ ଟିକିଏ ଦୂରରେ, ଫ୍ରାସ୍କାଟି— ଆଲେକୋଜ୍କୁଳ ପ୍ରାସାଦଟି। ରେଳଗାଡ଼ିର ଶବ୍ଦରେ ଚମକି ପଡ଼ି, ପକ୍ଷୀଏ ଘରଚଟିଆ ଉଡ଼ିଗଲେ, ଆଉ ତାଙ୍କ ମଥା ଉପରେ ହେଜ୍ ଭିତରେ ଗୋଟାଏ ଶଳି ଜଙ୍ଗଲ ପକ୍ଷୀ ବସ୍ତ୍ରାର କଣ୍ଠ ଉଡ଼ୁଥିଲା। ତାଳି ଆଡ଼ିକୁ ଅନାଇ ଦେବାକୁ ଏତେ ଦିନ ପରେ ଲାଟିନ ବ୍ୟାକରଣର ପ୍ରଥମ ଧାଡ଼ିଟି ଅଧ୍ୟାପକର ମନେ ପଡ଼ିଗଲା— କେତେ ବର୍ଷ ତଳେ ସେ ବ୍ୟାକରଣ ପଢ଼ାଉଥିଲା! ହଁ, ଯେସ୍ୱା ତ। ସେ ମଥା ହଲାଇଲା।

ହଁ, ତାର ପ୍ରାୟ ସତେ ହେଲ ଯେମିତ ଶୈଶବ ଜୀବନର ପ୍ରଥମ କେତୋଟି ବର୍ଷ ସେ ତାର ଖୁବ୍ ଭଲରେ କଟିଥିଲା, କିନ୍ତୁ ତା ପାଖରେ ଘର ବାନ୍ଧିବାର ଠିକ୍ ପୂର୍ବରୁ···

'ବେଶ୍ ଭଲ !' ସେ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ି ଅସ୍ପଷ୍ଟ କଣ୍ଠରେ କହିଲା, କାରଣ ପୁଣି ତାର ମନ ଖରାପ ହୋଇଯାଇଥିଲା ।

ତାର ବିଷାଦ ମାନସିକ ଅବସ୍ଥା ବେଶୀ ବେଳ ରହିଲା ନାହିଁ—କାରଟେଟୋ ଷ୍ଟେସନ ଛାଡ଼ି ଯିବା ପରେ ସେ ବୁଝି ପାରିଲା ଯେ ସେ ସମୁଦ୍ର ପାଖରେ ଆସି ପହଞ୍ଚି ଗଲାଣି । ମନରେ ଏହି ଚିନ୍ତା ପଶିବା ମାତ୍ରେ ତାର ଅନ୍ତର ଆନନ୍ଦରେ ଉଦ୍‌ବେଳିତ ହୋଇଗଲା । ସେ ବ୍ୟଗ୍ର ମନରେ ଅପେକ୍ଷା କରି ରହିଲା— ଯେ କୌଣସି ମୁହୂର୍ତ୍ତରେ ସେହି ଅନନ୍ତ ସୌନ୍ଦର୍ଯ୍ୟର ନୀଳିମା ତା ଆଖି ଆଗରେ ଭାସି ବୁଲିବ ! ଆଃ ! ସମୁଦ୍ର, ତାର ପ୍ରିୟ ସମୁଦ୍ର—ସେ କେବେ ସମୁଦ୍ର ଦେଖିଥିଲା, ଏହା ଭିତରେ କେତେ ବର୍ଷ ଗଡ଼ି ଗଲାଣି ! ତାକୁ ଆଉ ଥରେ ଦେଖିବା ଲାଗି ତା ମନ ଭିତରେ କି ଅତୁଳ ଆଗ୍ରହ ନ ଥିଲା ! ହଁ, ସେହି ତ' ! ହେଇତ ଦେଖା ଯାଉଛି ! ଅଧୀର ଏତେ ଉତ୍ତେଜିତ ହୋଇ ପଡ଼ିଲା ସେ - ସେ ଠିଆ ହୋଇପଡ଼ି ଝରକା ବାଟେ ତା ମଥା ବାହାରକୁ କାଢ଼ିଦେଲା ଏବଂ ଏମିତ ଅସୀମ ଆଗ୍ରହ ଓ ଆନନ୍ଦରେ ସମୁଦ୍ରର ଲବଣାକ୍ତ ବାୟୁ ପିଇ ପିବାକୁ ଲାଗିଲା ଯେ ସଙ୍ଗେ ସଙ୍ଗେ ତାର ମଥା ବୁଲାଇ ଦେଲା । ତହୁଁ ସେ ଆସନରେ ବସି ପଡ଼ି ଦୁଇ ହାତରେ ତା' ଆଖି ଘୋଡ଼ାଇ ପକାଇଲା ।

ରେଲଗାଡ଼ି କିଛି ସମୟ ଆନଜିଓରେ ରହିଲା । ସେହି ସୁନ୍ଦର ଛୋଟ ସହରଟିକୁ ସେ ଆଗରୁ କେବେ ଦେଖି ନ ଥିଲା ! ଷ୍ଟେସନରୁ ସହରର ଯାହା କିଛି ଦେଖା ଯାଉଥିଲା, ସେସବୁ ଦେଖି ସେ ସମୟ କଟାଇଲା । ଟିକିଏ ପରେ ନେଟୁନୋରେ ସେ ଗାଡ଼ିରୁ ଓହ୍ଲାଇଲା—

ପ୍ରଥମେ ସମୁଦ୍ର ଦେଖି, ସେ ପ୍ରାଣ ଭରି ଯେଉଁ ଗଭୀର ନିଶ୍ୱାସ ଗ୍ରହଣ କରିଥିଲା, ତାରି ତନ୍ଦ୍ରାରେ ଯେବେ ମୂର୍ଚ୍ଛା ସେ ଆଚ୍ଛନ୍ନ ଓ ବିଚଳିତ ହୋଇ ରହିଥିଲା— ଅନେକ ବର୍ଷ ହେଲା ସେ ଏପରି ଗଭୀର ଭାବରେ କେବେ ନିଶ୍ୱାସ ଗ୍ରହଣ କରି ନ ଥିଲା ।

ଶିକ୍ଷା ଅଫିସର ନକଲନବିସ୍‌ମାନେ ଏହି ସହରଟି ସମ୍ବନ୍ଧରେ ତାକୁ ଅନେକ ଖବର ଦେଇଥିଲେ । ସହରର ସବୁ ଠାରୁ ବଡ଼ ବଜାରକୁ ଯାଇ ସେ ଅନୁସନ୍ଧାନ କଲା, କେଉଁଠି ସମୁଦ୍ର-କୂଳରେ କମ ଭଡ଼ାରେ ଗୋଟିଏ ଫ୍ଲାଟ ଘର ମିଳିବ । ବଜାର ଉଠିଲେ, ଡାହାଣ ଦିଗକୁ, ଗୋଟିଏ ଫ୍ଲାଟ ଘର, ଏକବାରେ ସମୁଦ୍ର-କୂଳରେ— ପ୍ରକୃତରେ ଭଡ଼ାଟା ତା ପକ୍ଷରେ ଟିକିଏ ବେଶୀ ହେଲେ କଣ ହେବ, କୌଣସି ପ୍ରକାରେ ସେ ଉପସ୍ଥିରେ ଚଳାଇ ନେଇ ପାରିବ । ଅଧ୍ୟାପକ ଏହି ଘରଟି ଭଡ଼ା ନେବାକୁ ସ୍ଥିର କଲା । ବଜାରଟା ଘରର ପଛରେ ପଡ଼ି ରହିଲା, ଆଉ ଏଣେ ସାମନାରେ ଦଳ ଦଳ ହୋଇ ଯେଉଁ ପ୍ରିପାଗ୍ଲୀଆନେ ଷ୍ଟୋର୍ଟ ପ୍ରାକ୍ଟିସ କରିବାକୁ ଆସନ୍ତି ସେମାନଙ୍କର ଚାଗକ୍‌ଷ୍ଟ୍ରଡ଼ାକ । ତାର ସାମନା ଦରକାଟା ପ୍ରାୟ ଭୂଇଁ ସାଙ୍ଗରେ ଲାଗିଛି, ଆଉ ସେଣେ ସମୁଦ୍ର ଆଡ଼କୁ ଥିବା ପଛ ଝରକାଟା ପ୍ରାୟ ଦୋଚାଲି ଭଳି ହେବ । ଝରକା ବାଟେ ବାହାରକୁ ଅନାଇଲେ, ମନେ ହେଉଛି ଯେମିତି ସମୁଦ୍ରଟା ସେ କୌଣସି ମୁହୂର୍ତ୍ତରେ ଘର ଭିତରକୁ ପଶି ଆସିବ— ଖାଲି ସମୁଦ୍ର ଛଡ଼ା ଆଉ କିଛି ଦେଖାଯାଏ ନାହିଁ । ଘର-ମାଲିକ ପାଖରେ ଭଡ଼ା ଜମା ଦେଇ ଅଧ୍ୟାପକ ତାକୁ କହିଲା ଯେ ସେ କାଲି ଠାରୁ ଆସି ରହିବ । ତା ପରେ ସେ ସମୁଦ୍ର-କୂଳ ଆଡ଼କୁ ଚାଲିଗଲା ।

ତା ଘରର ପଶ୍ଚିମ ଦିଗକୁ ମୁହଁ କରି, ଷୋଡ଼ଶ ଶତାବ୍ଦୀରେ ନିର୍ମିତ ବିରାଟ ପ୍ରାଚୀନ ଦୁର୍ଗ ଠିଆ ହୋଇଛି । ସମୁଦ୍ରର ଗତି ସଙ୍ଗେ

ତାଳ ଗଛର ଛାଇ ବାଲୁଗୁଡ଼ାକ ଅବଶ୍ୟ କଳା ପଡ଼ି ଗଲାଣି—ସେଗୁଡ଼ାକ ଠିକ୍ ସମୁଦ୍ରର ଧାରରୁ ଗାନ୍ଥିକି ମଡ଼ାଇଛନ୍ତି । ଦୁର୍ଗ ତଳେ ଯେଉଁଠି ସମୁଦ୍ରର ଢେଉ ଆସି ମଥା ପିଟୁଛି, ସେ ସେହି ପାହାଡ଼ ଉପରକୁ ଚଢ଼ିଯାଇ ପ୍ରାୟ ଘଣ୍ଟାଏ କାଳ ବସି ଅପୂର୍ବ ଆନନ୍ଦ ଉପଭୋଗ କରିବାକୁ ଲାଗିଲା । ଦୂରରେ, ସେ ମଝେ ଶରଡେଲଙ୍କୋର ଅନ୍ତରୀପ ଦେଖି ପାରିଲା— ମନେ ହେଉଛି, ଯେମିତି ନୀଳ ସମୁଦ୍ର ଭିତରୁ ଗୋଟିଏ ସ୍ୱର୍ଗୀୟ ମନୋରମ ଦ୍ୱୀପ ଉପରକୁ ମୁଣ୍ଡ ଟେକୁଛି । ଆଉ ଟିକିଏ ଦୂରକୁ, ସମୁଦ୍ର କୂଳେ କୂଳେ ଆଖି ଗଲେ, ମୁର ଦୁର୍ଗ ଦେଖାଯାଏ । ତାର ଆଉ ଟିକିଏ ଡାହାଣ ପଟକୁ, ଜାହାଜ-ପରିପୂର୍ଣ୍ଣ ଓ କୋଇଲା-ଧୂଆଁ-ଅନ୍ଧକାର ଆନସ୍ପର୍ଗ ବନ୍ଦର, ଏବଂ ତା ପରେ ଅନନ୍ତ ଜଳରାଶି ସୂର୍ଯ୍ୟାଲୋକରେ ଝଟକୁଛି— ଏତେ ଶାନ୍ତ ଓ ନୀରବ ଯେ ଗୋଟାଏ ଛୋଟ ଢେଉ ବି ତୀରରେ ଆସି ଭାଙ୍ଗିପଡୁ ନାହିଁ । ଶେଷରେ ଅନେକ କଷ୍ଟରେ ସେ ଏହି ଅପରୂପ ଦୃଶ୍ୟଠାରୁ ନିଜକୁ ବିଚ୍ଛିନ୍ନ କରିନେଲା ଏବଂ ଭୋଜନ କରିବା ପାଇଁ ଚାଲିଗଲା । ଦିପହରରେ ପାଞ୍ଚଟା ଆଗରୁ ସେମାନଙ୍କୁ ଫେରିଯିବା ପାଇଁ ଆଉ କୌଣସି ଗାଡ଼ି ନ ଥିଲା । ତେଣୁ ଏହି ତିନୋଟି ଘଣ୍ଟା ସମୟ କଟାଇବା ଲାଗି ସେ ଆନସ୍ପର୍ଗ ଓ କେନ୍ଟୁକୋ ମଝିରେ ଥିବା ବର୍ଗେସର ରମଣୀୟ ଉଦ୍ୟାନରେ ବୁଲି ଆସିବ ବୋଲି ସ୍ଥିର କଲା ।

ଏକ ପଟରେ ସବୁଜ ବନ ଓ ପ୍ରାନ୍ତର, ଆଉ ଅନ୍ୟ ପଟରେ ପର୍ବତ ପାଦ ତଳେ ସମୁଦ୍ର— ସେହି ସ୍ୱର୍ଣ୍ଣ-ରଞ୍ଜିତ ଦ୍ୱିପ୍ରହରରେ ସେଠାରେ ବିଚରଣ କରୁଁ କରୁଁ ସେ ନିଜକୁ ଅତ୍ୟନ୍ତ ସୁଖୀ ମନେ କଲା । ତା ଜୀବନରେ ଏପରି ଆନନ୍ଦମୟ ଦିନଟିଏ ଆଉ କେବେ ଆସିଛି ବୋଲି ତାର ଖିଆଲ ହେଲା ନାହିଁ । ଉଦ୍ୟାନର ପ୍ରବେଶ ଦ୍ୱାର ଖୋଲା ଥିଲା । ଆସ୍ତବ୍ୟସ୍ତ ହୋଇ, ସେ ତା ଭିତରେ ବୁଲିବାକୁ

ଲାଗିଲା, ଏବଂ ଗୋଟାଏ ଇଟାଣି ସସ୍ତା ଧରି ତାଙ୍କ ଉପରକୁ ଉଠିବାକୁ ଯାଉଛି, ଗୋଟାଏ ଶବ୍ଦ ଆସି ତା କାନରେ ବାଜିଲା :

'ଏଇଟି, ଠିଆ ହୁଅନ୍ତୁ ! ଆପଣଙ୍କୁ ଟିକଟ କିଣିବାକୁ ପଡ଼ିବ··· ଟିକଟର ଦାମ ପାଞ୍ଚ ସଲ୍ଡ !'

ପଛକୁ ବୁଲି ପଡ଼ି ସେ ଦେଖିଲା, ଜଣେ ବାମନ ତା ଆଡ଼କୁ ଧାଇଁ ଆସୁଛି । ସେହି ସ୍ତ୍ରୀଲୋକଟି ଉଦ୍ୟାନର ଦୁଆରରେ ପହରା ଦିଏ । ତାର ଇଚ୍ଛା ଥିଲା ଯେ ସେ ଅଦୌ ବାଜେ ଖରଚ କରିବ ନାହିଁ, ମାତ୍ର ପ୍ରଫୁଲ୍ଲ ଚିତ୍ତରେ ସେ ଏତକ ପଇସା ତାକୁ ଦେଇ ଦେଲା ; ଏବଂ ତା ପରେ ବନ-ଲତା-ବେଷ୍ଟିତ ସୁଢଙ୍ଗ ଭଳି ନିର୍ଜନ ରାସ୍ତାରେ ବିଚରଣ କରିବାକୁ ଲାଗିଲା । ତାର ମନେ ହେଲା ଯେମିତି ସେ ଏଠାରେ ସ୍ୱପ୍ନରେ ବିଚରଣ କରୁଛି । ସେହି ବିଶାଳ ଗଛଗୁଡ଼ିକ ସ୍ୱପ୍ନ-ଜଗତର ବୋଲି ତାକୁ ବୋଧ ହେଲା । ସେଗୁଡ଼ିକ ମୌନ ଧ୍ୟାନମଗ୍ନ ଅବସ୍ଥାରେ ଠିଆ ହୋଇଥିଲେ । ପକ୍ଷୀଙ୍କ କୂଜନରେ ସେହି ନୀରବତା ଭାଙ୍ଗି ନ ଯାଇ ବରଂ ରହସ୍ୟ ବୃଦ୍ଧି କରୁଥିଲା । ସେ ଅନେକ ଲୋକଙ୍କ ଠାରୁ ଶୁଣିଥିଲା ଯେ ଉଦ୍ୟାନର ଯେଉଁ ସ୍ଥାନରେ ଲୋକଙ୍କର ଚଳଚଳ କମ୍ ସେଠାରେ ନାଇଟିଙ୍ଗେଲ ଚଢ଼େଇ ଦେଖାଯାନ୍ତି । କାନ ଡେରି ସେ ଶୁଣିଲା, ଯେମିତି ଦୂରରେ ଗୋଟାଏ ସେହି ଚଢ଼େଇ ଡାକୁଛି । ସେହି ଶବ୍ଦକୁ ଅନୁସରଣ କରି କରି, ସେ କ୍ରମେ କ୍ରମେ ବଣ ଭିତରେ ପ୍ରବେଶ କରିବାକୁ ଲାଗିଲା, ଏବଂ ଦୀର୍ଘ ଭ୍ରମଣ ପରେ ସେ ଗୋଟାଏ ସୁନ୍ଦର ପାଇନ ବଣରେ ଆସି ପହଞ୍ଚିଗଲା । ପଲ୍ଲବ-ଲମ୍ବ ଲମ୍ବ ସିଧା ଗଛଗୁଡ଼ାକ ଯେମିତି ଗୋଟାଏ ପ୍ରକାଣ୍ଡ ଗୀର୍ଜାର ବଡ଼ ବଡ଼ ସ୍ତମ୍ଭ ଭଳି ଦିଶୁଥିଲେ । ଖୁବ୍ ଉଚ୍ଚରେ ଗଛର ପତ୍ରସବୁ ଏମିତି ସୁନ୍ଦର ଭାବରେ ଛଦାଛଦି ହୋଇ ଯାଇଥାନ୍ତି ଯେ ତଳୁ ଆକାଶର ତିଳେ ମାତ୍ର ଅଂଶ ଦିଶୁ ନ ଥାଏ । ନୀଳର ଏକ

ଅପରୂପ ବାତାବରଣ ଧରି ସେହି ପାଇନ ବଣଟି ଠିଆ ହୋଇଥିଲା—ଗୀର୍ଜାର ଶୀତଳ ଓ ଅନ୍ଧକାର ଅଭ୍ୟନ୍ତରରେ ଯେଉଁ ଅଦ୍ଭୁତ ତାମ୍ର ମିଶ୍ରିତ ସୁଗନ୍ଧର ଆଘ୍ରାଣ ମିଳେ, ଏଠାରେ ସେ ତାହାର ଆଭାସ ମିଳୁଥିଲା ।

ଅଧ୍ୟାପକ ଅଲ୍ପ ଶୁଷ୍କ ପାଇନ ଗଛ ପାଖରେ । ମଥାରୁ ଟୋପିଟା ଉତାରି ଦେଇ ସେ ବସି ପଡ଼ିଲେ, ଏବଂ ତା ପରେ ଲମ୍ବ ହୋଇପାଇ ଭାବିବାକୁ ଲାଗିଲେ ।

ବହୁ ବର୍ଷ ହେଲା, ଗୋଟି ଗୋଟି ହୋଇ ବସନ୍ତ ଦୁର୍ଭାଗ୍ୟର ବୋଝ ତା ମନର ସ୍ମୃତିପଟେ ଅଲକ୍ଷ୍ୟରେ ଦୁଃଖର ଗୋଟାଏ ଘନ ଆବରଣ ରଚନା କରିଥିଲା । ଦୈନନ୍ଦିନ ଜୀବନର ଦୁଶ୍ଚିନ୍ତାରେ ପୀଡ଼ିତ ହୋଇ, ତାର ମନ ସାଂସାରିକ ଚିନ୍ତା ଭିତରୁ ବାହାରି ପାରି ନ ଥିଲା । ଯୌବନାବସ୍ଥାରେ ତାର ମନ ସାଧନାର ଅନ୍ଧକାରକୁ ଗ୍ରହଣ କରିଥିଲେ କଣ ହେବ, ତା ପରେ ସେ ସାମୟିକ ପାଗଳ ହୋଇଗଲା ଏବଂ ତାର ଧର୍ମବିଶ୍ୱାସ ଏକବାରେ ତୁଟିଗଲା । କିନ୍ତୁ ସେହି ଦିନ ତାର ଭାଗ୍ୟ ସହିତ ସ୍ପଷ୍ଟ ହେଲା ଏବଂ ଜୀବନ ଯେ ପ୍ରକୃତରେ ଏକ ଉପଭୋଗ୍ୟ ବସ୍ତୁ ଏହି ପରମ ସତ୍ୟର ଅସ୍ପଷ୍ଟ ଆଭାସ ସେ ସେହି ଦିନ ପାଇଲା । ଅସ୍ପଷ୍ଟ ଭାବରେ ସେ ଖାଲି ସତ୍ୟକୁ ଦେଖି ପାରିଥିବ, କାରଣ ତାହା ନ ହୋଇଥିଲେ, ଏତେ ଦିନ ହେଲା ଯେଉଁ ଦୁର୍ବିସହ ଚିନ୍ତାରେ ସେ ଶଙ୍କିତ ଥିଲା, ସେହି ଚିନ୍ତାର କବଳରେ ଅବୋଧର ସନ୍ତାନରେ ସେ ଏପରି ଭୋକାଙ୍କ ପରି ବା କାହିଁକି ଦୌଡ଼ିବାକୁ ଲାଗିବ ? ଜୀବନରେ କେବେହେଲେ ସେ ଈଶ୍ୱରଙ୍କ ଦ୍ୱାର କୌଣସି ଅନ୍ତ କରିନ ହିଁ—ଅନ୍ୟ ପକ୍ଷରେ, ବରଂ ସେ ତାର ସାଧ ଅନୁସାରୀ ଲୋକଙ୍କର ଉପକାର କରି ଆସିଛି । ତଥାପି ଭାଗ୍ୟ କାହିଁକି ତାର ଗୁଣ ଖାଲି କରି ସବୁ ଶର ଏକା ତାକୁ ଲକ୍ଷ୍ୟ କରି ନିକ୍ଷେପ କରୁଛି: ଏହି କଥାଟି ସେ ଗମ୍ଭୀର ଭାବରେ ଚିନ୍ତା କରିବାକୁ ଲାଗିଲା । ପୁରୋହିତ ହେବାକୁ

ବାସନା ତ୍ୟାଗ କରିବାକୁ ସେ ଠିକ୍ କରିଥିଲା, କାରଣ ଗାର୍ଡ଼ିର ପୁରୋହିତମାନଙ୍କ ମତ ସହିତ ତାର ବିଶ୍ୱତତ୍ତ୍ୱର ତିଳେ ହେଲେ ମେଳ ନ ଥିଲା । ଗୋଟିଏ ଅନାଥ ବାଳିକାକୁ ଆଶ୍ରୟ ଦେବା ଉଦ୍ଦେଶ୍ୟରେ ତାକୁ ବିବାହ କରି ସେ ତ କିଛି ଅନ୍ୟାୟ କରି ନ ଥିଲା— ଆଉ ବାଳିକାଟିର ଇଚ୍ଛା ଅନୁଯାୟୀ ସେ ତାକୁ ବାହା ହେଲା । ମାତ୍ର ସେ ତ ଖୋଲା ମନରେ, କୌଣସି ପ୍ରକାର ସନ୍ଦେହର ଅବକାଶ ନ ରଖି, ବିବାହ ନ କରି ମଧ୍ୟ ତାକୁ ଆଶ୍ରୟ ଦେବାକୁ ଚାହୁଁଥିଲା । ଆଉ ବର୍ତ୍ତମାନ, ସେହି ସ୍ତ୍ରୀହିଁ ତାହା ସହିତ ନିଷ୍ଠୁର ଭାବରେ ପ୍ରବଞ୍ଚନା କରି ତାକୁ ଛାଡ଼ି ପଳାଇଗଲା ଏବଂ ତଦ୍ୱାରା ତାର ଜୀବନକୁ ସମୂଳେ ନଷ୍ଟ କରି ଦେଲା । ବର୍ତ୍ତମାନ ସେ ସ୍ପଷ୍ଟ ଭାବରେ ବୁଝି ପାରିଲା ଯେ ତାର ଏକମାତ୍ର ସାନ୍ତ୍ୱନା — ଯେତେ ସାମାନ୍ୟ ହେଉ ପଛକେ — ହେଉଛି, ନିଜର ପୁଅଟିକୁ ଆଖି ଆଗରେ ତିଳେ ତିଳେ ମୃତ୍ୟୁ ଆଡ଼କୁ ଅଗ୍ରସର ହେଉଥିବାର ଦେଖି ଖାଲି ବସି ରହିବା । କାହିଁକି ଏହି ବିପର୍ଯ୍ୟୟ ମଣିଷ ଜୀବନରେ ବା ଆସେ ? ସେଇଟା କଣ ଭଗବାନଙ୍କର ଦାନ ? ନା, ଭଗବାନଙ୍କର ଇଚ୍ଛା କଦାପି ଏପରି ହୋଇ ନ ପାରେ । ଯଦି ଭଗବାନ ବିରାଜମାନ ଥାଆନ୍ତି, ତାହାହେଲେ ସେ ସବୁ ଲୋକଙ୍କ ପ୍ରତି ନିଶ୍ଚୟ ସଦୟ ହେବେ । ଭଗବାନଙ୍କର ଅସ୍ତିତ୍ୱରେ ବିଶ୍ୱାସ କରିବା ଅର୍ଥ ତାଙ୍କୁ ଅପମାନ ଦେବା । ତାହାହେଲେ ସେ ବା କିଏ ? ପୃଥିବୀକୁ କିଏ ବା ଶାସନ କରୁଛି ? କାହାର ହାତ ମୁଠାରେ ଅସହାୟ ଲୋକମାନଙ୍କର ଜୀବନ ନିହିତ ଅଛି ?

ଗୋଟାଏ ପାଇନ-ଫଳ··· ସତରେ କଣ ଏଟା ଗୋଟାଏ ପାଇନ-ଫଳ ? ହଁ, ଗୋଟାଏ ବଡ଼ ପାଇନ-ଫଳ ସତକୁ ସତ ଏତିକି ବେଳେ ଗଛର ଡାଳରୁ ଖସି ପଡ଼ିଲା ଏବଂ ଅଧ୍ୟାପକର ମଥାରେ ପଡ଼ି ତାର ସବୁ ପ୍ରଶ୍ନର ଜବାବ ଦେଇଦେଲା ।

ବଜ୍ରପାତରେ ମଣିଷ ଯେମିତି ସ୍ତମ୍ଭୀଭୂତ ହୋଇଯାଏ, ବୃଦ୍ଧ ଅଧ୍ୟାପକ ତେବେ ସୁଦ୍ଧା ସେମିତି ଅଚେତନ ହୋଇ ପଡ଼ି ରହିଲା। ଚେତନା ଲାଭ କରି ସେ ଦେଖିଲା, ରକ୍ତରେ ସେ ଜୁଡୁବୁଡୁ ହୋଇ ଯାଇଛି । ତାର ମୁଣ୍ଡ ଉପରୁ ସିଧା ପଲଶ କାନର ପଛ ଯାଏ ଗୋଟାଏ ଲମ୍ବ କ୍ଷତ ହୋଇ ଯାଇଛି ଏବଂ ସେଥିରୁ ପ୍ରଚୁର ରକ୍ତ ବହୁଛି । ଦୁର୍ବଳ ମସ୍ତିଷ୍କରେ, ଖୁବ୍ କଷ୍ଟରେ ସେ ଉଠି ଠିଆ ହେଲା ଏବଂ ତା ପରେ ଧୀରେ ଧୀରେ ଉଦ୍ୟାନର ଫାଟକରେ ଆସି ପହଞ୍ଚିଲା । ଫାଟକ ପାଖରେ ଥିବା ଜଗୁଆଳ ସେହି ବମନ ସ୍ତ୍ରୀ ଲୋକଟି ଯେମିତି ତାର ରକ୍ତାକ୍ତ ମୁଖରେ ତାକୁ ଫେରି ଆସିବାର ଦେଖିଲା, ସେ ଭୟରେ ଚିତ୍କାର କରି କହି ପକାଇଲା:

‘ଯୀଶୁ ! ତୁମର କଣ ହେଲା ?’

ସେ ତାର କମ୍ପିତ ହାତଟି ଉଠାଇଲା ଏବଂ ବ୍ୟଥା କମ୍ପ ଆନନ୍ଦପୂର୍ଣ୍ଣ ହସରେ ମୁହଁଟା ଟିକିଏ ବଙ୍କାଇ, ଖାଲି ମାତ୍ର ଯାଉଥିବା କଣ୍ଠରେ ଜବାବ ଦେଲା:

‘ସେହି···ସେହି ପ୍ରଭିନ-ଫଳ···ଯେଉଁ ପାଇନ-ଫଳ ପୃଥିବୀକୁ ଶାସନ କରେ··· ତାହାହିଁ ମୋର ଏ ଦଶାର କାରଣ ।’

ସ୍ତ୍ରୀ ଲୋକଟି ତାକୁ ଗୋଟାଏ ପାଗଳ ବୋଲି ଧରି ନେଲା । ନିକଟବର୍ତ୍ତୀ ଗୋଶାଳାରୁ ଜଣେ ଗଉଡ଼କୁ ଡାକି ଆଣିବା ପାଇଁ ସେ ଦଉଡ଼ିଗଲା । ତା ପରେ ଉଦ୍ୟାନର ଫାଟକ ନିକଟରେ, ଯେଉଁ କୁଲିମାନେ ରେଲ୍ ଲାଇନ ମରାମତି କରୁଥିଲେ, ସେମାନଙ୍କ ଭିତରୁ ଜଣକୁ ଡାକି ଆଣି, ଦୁହେଁ ମିଳି ଆହତ ଲୋକଟିକୁ ତୁରନ୍ତ ନିକଟସ୍ଥ ଆର୍ସେନିଓଗୋ ଡାକ୍ତରଖାନାକୁ ନେଇଗଲେ ।

ଡାକ୍ତରଖାନାରେ, ଅଧ୍ୟାପକର ମଥାଟା ପ୍ରଥମେ ଶିଅର କରି ଦେଲେ ଏବଂ ତା ପରେ କ୍ଷତଟାକୁ ପାଞ୍ଚଟା ବଡ଼ ସିଲାଇ କରି ଦେଇ, ପଟି ବାନ୍ଧି ଦିଆଗଲା । ସେ ଟିକିଏ ଭଲତର ହେଉଥିଲା, କାରଣ

ଉତ୍ତର ଦେଲେ ଭାଲେ ସେ ଗଡ଼ି ଧରି ନ ପାରିବ । ରୋଗୀକୁ ଏପରି ସେଇଥିରେ ଯିବାକୁ ଉଚିତ ବୋଲି ଶୁଣି, ଡାକ୍ତର ଅଜ ଟିକିଏ ଭଲ ବନ୍ଦୋବସ୍ତ କରି ଦେବାକୁ ସ୍ଥିର କଲେ । ତେଣୁ, ପଟିଟା ଛଡ଼ା, ସେ ତା ମଥାରେ ଗୋଟାଏ ଓଦାକନା ବାନ୍ଧିଦେଲେ । ଅଧ୍ୟାପକ ସେଥିଯୋଗୁ ତା ମଥାରେ ଟୋପି ଦେଇ ପାରିଲେ ନାହିଁ । ଯେତେବେଳେ ସବୁ କାମ ସରିଗଲା, ଭଦ୍ରମୋ ଅଣ୍ଡୋଲିଓ କରିଲେ ଅମିତେଇ ଲୋକ ଟିକୁ ଟିକିଏ ନୁଆଁଇ ଦେଲେ ଏବଂ ବେଦନା ଅଟ୍ରେ ଅଟ୍ରେ ଲମ୍ବାଇ ଦେବା ପାଇଁ ଚେଷ୍ଟା କଲେ । ଆଖି ଦୁଇଟା ଅଧେ ବନ୍ଦ କରି ଓ ଦୀର୍ଘଶ୍ୱାସ ପକାଇ, ସେ ଆଉ ଥରେ କହିଲେ:

‘ଠେକ୍ ଭଲ !’

—ଗ—

‘ପ୍ରିୟ ବସନ୍ତ,

‘ମଣିଷ ତାର ପତ୍ରିକାରେ ତୁମ ଆଗମନର ଦରଦ ନିର୍ଦ୍ଦେଶ କରି ଦେଇଛି । ଏ ବର୍ଷ, ତୁମେ ଯେ ଆସିବ ତା ଆଗରୁ ଅପ୍ରେଲ, ମୁଁ ତାର କାରଣ କିଛି ବୁଝିପାରୁ ନାହିଁ । ଏଥର ଖୁବ ବେଶୀ ଶୀତ ପଡ଼ି ନାହିଁ । ଗ୍ରୀଷ୍ମଟିକା ଆଗରୁ, ଶୀଘ୍ର ପୃଥିବୀର କଣ୍ଡ ଗରମ କରି ଯିବାକୁ ଶୁଣୁଛି । ସେ ଅଧିକାର ବି ତାର ଅଛି । ଗୋଟାଏ ବା ଦୁଇଟା ଛୋଟ ଫୁଲ ଧରି ସେ ଏପରି ଟିକିଏ ବ୍ୟସ୍ତ ଅଛି । ତାର ଇଚ୍ଛା, ଯେତେବେଳ ଯାଏ ସେ ଏହି ଫୁଲର ବୋଝ ତା କାନ୍ଧରୁ ଖସାଇ ନ ଦେଇଛି, ସେତେବେଳେ ଯାଏ ତୁମେ ଟିକିଏ ସବୁରି ଠିଆ ହେବ । ଯଦି ତାର ଏହି ଅନୁରୋଧ ତୁମ ମନକୁ ନ ପାଏ, ତାହାହେଲେ

ମୁଁ କହୁଥାଏ, ତାର ଭୟ ହେଉଛି ତୁମେ ଯେତେବେଳେ ଜନସ୍ରୋତରେ ସହର ଓ ଗ୍ରାମରେ ପ୍ରବେଶ କରିବ ସବୁ ସେତେବେଳେ ବାଟଘାଟସବୁ ଦୁର୍ଗମ ହୋଇଥାଏ, ତାହାହେଲେ ତୁମର ଛୋଟ ଲାଲ ପାଦ ଦୁଇଟି ନିଶ୍ଚୟ ଅପରିଷ୍କାର ହୋଇଯିବ । ବୟସ ହୋଇଯାଇଥିଲେ ବି ଶୀତ ଦିବସ ବୃଥା ହୋଇ ନାହିଁ । ତେଣୁ ସେ ତୁମକୁ ଜଣାଉଛି ଯେ ତାର ଯୌବନର ଉତ୍କଣ୍ଠା ଖସାଇ ଦେବା ପାଇଁ ତୁମେ ତାକୁ ଅନ୍ତତଃ ଟିକିଏ ସମୟ ଦେବ । ସେ ତୁମ ଠାରେ ଶପଥ କରୁଛି ଯେ ସେ ପବନକୁ ସବୁ ଶୀତଳତା ଛାଡ଼ି ଦେବ, ଏବଂ ଭୂଇଁରେ ଯେତେ କାଦୁଅ ଅଣି ଜମା କରିଛି ତାକୁ ସବୁ ପୋଛିଦେବ । ଯଦି ତୁମେ ତାର ଏହି ଅନୁରୋଧଟି ରକ୍ଷା କର, ତାହାହେଲେ ତୁମେ ତ ଖାଲି ତାକୁ ଅନେକ ଆନନ୍ଦ ଦେବ ନାହିଁ, ମୋତେ ବି ବହୁତ ଅଧିକ ଦେବ । ଏଠାରେ ମୁଁ ତୁମକୁ କହିପାରେ ଯେ ଜଣେ ଖୁବ୍ ଭଲ ମଣିଷକୁ ମୁଁ ତାର ଜନ୍ମ ଠାରୁ ଏଇ ଯାଏ, ଅତି ଯତ୍ନରେ, ଲାଳନ ପାଳନ କରୁଛି ! ତାକୁ ଜନ୍ମ ଦେଇ, ମୁଁ ଯେ କି ଆନନ୍ଦ ଲାଭ କରୁଛି ତାହା ତୁମକୁ କଣ କହିବି । ଏଇ ତ କାଲି, ଗୋଟାଏ ଖୁବ୍ ସୁନ୍ଦର ପାର୍କରେ ପାଇନ ବଣରେ ଖେଳ କରି, ସେ ତୁମର ପ୍ରଶଂସାରେ ଏକବାରେ ମୁଖର ହୋଇ ଯାଇଥିଲା । ସେତେବେଳେ-ବେଳେ ମଜା କରିବା ପାଇଁ ମୁଁ ତା ମଥା ଉପରେ ଗୋଟିଏ ସୁନ୍ଦର ବଡ଼ ଶଙ୍କୁ ପାଇନ ଫଳ ପକାଇ ଦେଲି । ସେଥିରେ ସେ ମରି ଯାଇ ପାରିଥାନ୍ତା । କିନ୍ତୁ ନା, ମୋର ଉଦ୍ଦେଶ୍ୟ ତ ତାହା ନୁହେଁ । ତୁମେ ତ ଭଲ ଭାବରେ ଜାଣ, ମୋ ପତାକାରେ କି ଚିହ୍ନ ଅଙ୍କିତ ଅଛି— ଗୋଟିଏ ବରଫ ମୁଣ୍ଡା ଟିକୁ ମ ର ନ ପକାଇ ତା ସାଙ୍ଗରେ ଖେଳୁଛି...'

ଅନେକ ଦିନ ପରେ ଗୋଟିଏ ପୁରୁଣା ବହିରେ ସେ ଯେମିତି ପଢ଼ିଥିଲି, ଠିକ୍ ସେହି ଢଙ୍ଗରେ କସମୋ ଅସ୍ତ୍ରୋଜର୍ଓ କବରର

ଆମିଦେଇ ଗୋଟିଏ ମର୍ମସ୍ପର୍ଶୀ ନିବେଦନ ଲେଖି ପକାଇଲା । ଭାଗ୍ୟର ନିଷ୍ଠୁରତା ଯେ ତା ପ୍ରତି କି ଦୁଃସହ ତାହା ଦେଖାଇଦେବାହିଁ ତାର ଏ ରଚନାର ଉଦ୍ଦେଶ୍ୟ । ଗତ ପନ୍ଦର ଦିନ ହେଲା ସେ ନିଜ ମନ ଭିତରେ ଏହି କଥାଗୁଡ଼ାକ ଆଲୋଚନା କରୁଥିଲା : ତାର ଦୃଢ଼ ବିଶ୍ୱାସ ଯେ ତାର ଭାଗ୍ୟ ଦେବତା ନିଶ୍ଚୟ ବସନ୍ତ ଦେବୀଙ୍କ ନିକଟରେ ଠିକ୍ ଏହି ପ୍ରକାର ଏକ ଆବେଦନ ପତ୍ର ଦାଖଲ କରିଥିଲେ ଏବଂ ଦେବୀ ମଧ୍ୟ ତତ୍‌କ୍ଷଣାତ୍ ସେହି ପ୍ରାର୍ଥନା ପୂରଣ କରିଥିଲେ । ସେତେବେଳେ ବି ମଥାରେ ପଗଡ଼ି ବାନ୍ଧି, ଅଧ୍ୟାପକ ଡଲଫିନୋର ଶଯ୍ୟାରେ ବସି ରହିଥିଲା । ନେଣ୍ଟୁନୋ ଷ୍ଟେସନରେ ଓହ୍ଲାଇବା ବେଳୁ ପିଲାଟାକୁ ଯେ ଜ୍ୱର ଆସିଲା, ଏପାଏ ତାହା ଛାଡ଼ି ନାହିଁ । ସେଥିରେ ସେ କାହିଲା ହୋଇ ଗଲାଣି । ଆଗରୁ—ସ୍ୱେମରେ ଥିବା ବେଳେ— ଖାଲି ରାତିରେ ତାକୁ ଜର ଆସୁଥିଲା ।

କିନ୍ତୁ ପବନ, ପବନ, ପବନ ! ଗତ ପନ୍ଦର ଦିନ ହେଲା, କି ଦିନ କି ରାତି, କ୍ଷଣକ ପାଇଁ ତାର ବେଗ ଆଦୌ କମିଲା ନାହିଁ । ପର୍ବତର ସବୁ ସ୍ତର କମ୍ପାଇ ସେ ପିଟି ମାରୁଥିଲା, ଚିତ୍କାର କରୁଥିଲା ଏବଂ ଗର୍ଜନ ବି କରୁଥିଲା । ସମସ୍ତ ସମୁଦ୍ରରେ ଏମିତି ଗୋଟାଏ ଗୋଟାଏ ପ୍ରଚଣ୍ଡ ଦମକା ପବନ ଆସେ ଯେ ମନେ ହୁଏ ଯେମିତି ସେ ଘରଦ୍ୱାରସବୁ ଉଡ଼ାଇ ନେଇଯିବ । ଯାହା ହେଉ, ସେ ଖାଲି ଭୟ ଦେଖାଉଥିଲା— ମାତ୍ର କେତେକ ସ୍ଥାନରେ ଚକ୍ରଟରେ ସେ କେତେ ଛାତ ଉଡ଼ାଇ ନେଲା, କେତେ ଗଛ ଓ ଖାର-ଗୁଣ୍ଡି ଉପାଡ଼ି ପକାଇଲା, ଆଉ କେତେ ଝରକା ଭାଙ୍ଗି ଦେଲା । ସମୁଦ୍ରରେ ପବନ ଆଉ ଗୋଟାଏ ମଜା ଖେଳ ଖେଳିଲା— ବଡ଼ ବଡ଼ ଢେଉଗୁଡ଼ାକ ପୃଥୀ ଉଡ଼ ଉଡ଼ ଆସି ଭୟଙ୍କର ଗର୍ଜନ କରି ସହର କାନ୍ଥରେ ପିଟି ହେବାକୁ ଲାଗିଲା । ପ୍ରଚଣ୍ଡ ଝଡ଼ ଭିତରେ ସମୁଦ୍ରରେ ଥିଲେ ଜାହାଜର

ଯେଉଁଳି ଗଡ଼ ହୋଇଥାନ୍ତା ଅଧ୍ୟାପକର ଅବସ୍ଥା ଏଷଣି ସେପରି ବୋଧ ହେଲା ! ବିଚରା ଡଲ୍‌ଫିନୋ ଅବଶ୍ୟ ଉତ୍ୟକ୍ତ ହୋଇ ଯାଇଥିଲା । ତାର ବାବା ତାକୁ ସାନ୍ତ୍ୱନା ଦେବା ପାଇଁ ଚେଷ୍ଟା କଲେ କଣ ହେବ, ତା ପାଖରୁ ପଦେ ହେଲେ କଥା ବାହାରୁ ନାହିଁ । ଝଡ଼ର ଶବ୍ଦ ସେତେ ବେଶୀ ପ୍ରବଳ ନୁହେଁ, ମାତ୍ର ସେହି ପବନର ଭୀଷଣ ଗର୍ଜନ— ତାର ମନେ ହେଲା, ତାର କଥା କହିବାର କ୍ଷମତା ଏପରିକି ତାର ନିଶ୍ୱାସ ଗ୍ରହଣର ଶକ୍ତିକୁ ବି ସେହି ପବନର ଗର୍ଜନ ତା ଭିତରୁ କାଢ଼ି ନେଉଛି । ନୈରାଶ୍ୟର ଅତଳ ନୀରବତାରେ ପ୍ରାଣ ଯେତେବେଳେ ଅଣାନିଶ୍ୱାସୀ ହୋଇଯାଏ, ସେତେବେଳେ ମଝିରେ ମଝିରେ ଧାଈର କଣ୍ଠ-ସ୍ୱରରେ ଚମକି ପଡ଼ି ରୋଗୀକୁ ଔଷଧ ଦେବା ପାଇଁ ସେ ଉଠିଯାଏ । କାରଣ, ସେମାନଙ୍କର ଦୁର୍ଭାଗ୍ୟ ବଢ଼ାଇବା ପାଇଁ ବିଚରା ଧାଈଟିର ଗଳାରେ ବି ରୋଗ— ସେ ମଧ୍ୟ ଯନ୍ତ୍ରଣାରେ ପଡ଼ି ରହିଥିଲା ।

ଏକ ହାତରେ କାର୍ବଲିକ ଏସିଡର ବୋତଲ ଓ ଅନ୍ୟ ହାତରେ ପେଣ୍ଟ-ବ୍ରସ ଧରି ତା ଆଡ଼କୁ ଆସୁଥିବାର ଦେଖିଲା କ୍ଷଣି, ଧାଈ ତାକୁ ସତର୍କ କରିଦିଏ, 'ମହାଶୟ, ସାବଧାନ । ସାବଧାନ ହୋଇ ଲଗାଇବେ, ମହାଶୟ ।'

ଧାଈ ଯନ୍ତ୍ରଣା ଉପରେ ଉଠି ବସି ପଡ଼େ ଏବଂ ତାର ପାଟି ମେଲା କରିଦିଏ । ତାର ତଣ୍ଟି ଭିତରଟା ଫୁଲି ଲାଲ ହୋଇ ଯାଇଛି । ତେବେଶି ମାରିବାକୁ ଇଚ୍ଛା ନ ଥିଲେ ବୁଝା, ଙ୍ଗରିବାରେ ପଦ୍ଧନ ପିଠି ହେବା କ୍ଷଣି ଅଧ୍ୟାପକର ହାତଟା ପ୍ରାୟ ହଲିଯାଏ ଏବଂ ତା ଫଳରେ କିଛି ଔଷଧ ବସ୍ତ୍ରର ତଳେ ପଡ଼ିଯାଏ । କିନ୍ତୁ ତାର ହସ୍ତ ଚେହାରକୁ ଧାଈ ବିଚରାର ଆଖି ଫୁଟିଯାଏ ନାହିଁ ।

‘ଢେଉ ପକାଅ ! ହଁ, ଏବେ ଢେଉ ଗଡ଼ାଅ !’ କହୁ କହୁ ସେ ଡଲଫିନୋ ପାଖରୁ ଫେରି ଆସେ— ତାର ଆଖି ଦୁଇଟା ହିଂସ୍ର ଭାବରେ ଜଳୁଥାଏ । କାର୍ବଲିକ ଏସିଡର ବୋତଲଟା ତା ହାତରେ ରହି ଥରୁଥାଏ । କାର୍ବଲିକ ଏସିଡ... ବିଷ... ନା, ଖୁବ୍ କମ, ଖୁବ୍ କମ ଏବଂ ସେଇଟା ବି ମିଶା... ଏଥିରେ ତଥ କାମ ହେବ ଏହା ବି ନୁହେଁ... ତାଛଡ଼ା, ଏହି ଅବସ୍ଥାରେ ସେ ଡଲଫିନୋକୁ କପର ଛାଡି ଦେଇ ଯାଇ ପାରିବ ? ନା, ଯଦିଓ ତାର ଖୁବ୍ ଲୋଭ ହେଉଛି, ତଥାପି ସେ କୌଣସି ମତେ ଏହା କରିବ ନାହିଁ... ପବନଟା ତାକୁ ପାଗଳ କରି ପକାଉଛି ।

‘ସମୁଦ୍ର କୂଳରେ ଛୁଟି ଉପଭୋଗ !’ ସେ ତା ମନେ ମନେ କହି ପକାଇଲା ।

ମାସକୁ ଅଧେ ତ ଗଲାଣି । ଏଠାକୁ ଆସି ତାର କ'ଣ ଲାଭ ହୋଇଛି ? ତାକୁ ଦୁଇ ଜାଗାରେ ଭଡ଼ା ଦେବାକୁ ପଡୁଛି, ଘରର ସୁଖରୁ ସେ ବଞ୍ଚିତ ହୋଇଛି, ଦୁଃଖର ବେପାର, ଆଉ ଏବେ ଡଲଫିନୋର ସେବା କରୁଛି । ହଁ, ଖାଲି ସେତିକି ନୁହେଁ । ତାକୁ ଏକା ତିନି ଜଣଙ୍କର କାମ କରିବାକୁ ପଡୁଛି— ବଉଳ ଲଗାଇବା, ବଜାର କରିବା ଏବଂ ରୋଷାଇ କରିବା... ଆଉ ସେଥିପାଇଁ ସେ ତା ପୁଅଟିକୁ, ମୁକ୍ତି ପାଇଁ, ସମୁଦ୍ର କୂଳକୁ ବୁଲାଇବାକୁ ନେଇ ପାରୁ ନାହିଁ । ସେହି ଡଚନାଟି ବୋଟେଲ୍‌ରେ, ସମୁଦ୍ର ଓ ପବନର ଅତ୍ୟାଚାରରେ, ସେ ଜଣେ ବନ୍ଦୀ ହୋଇ ରହିଛି । ଅସହ୍ୟ, ଉତ୍ତା ଭଲ ମାତ୍ରେ ତାକୁ ବାଧ ମାରୁଛି...

ଦୁଆରରେ ଥରଟାଏ ଅତି ମୃଦୁ କରାଘାତ ହେଲା ।

‘କିଏ ?’

ଭୂପର ଗୋଲି ଦେଇ ଅଧ୍ୟାପକ ଅବାକ ହୋଇଗଲା । ହଠାତ ଗୋଟାଏ ସାଷ୍ଟାଙ୍ଗନା ଘର ଭିତରକୁ ପଶି ଆସିଲା— ସାଷ୍ଟାଙ୍ଗନା, ଏଠ ମାଆ ହେବା ପାଇଁ ଧାଇଁ ଆସିଛି । ଯେ କୌଣସି ମତେ ସେ ତା ଦୋଗଣା ପୁଅକୁ ନିଶ୍ଚୟ ଧରେ ଦେଖିବ ।

ଅବର୍ଣ୍ଣନୀୟ ବେଶ ଗୁଚ୍ଛରେ, ସେ ଆଗକୁ ଦୌଡ଼ିଗଲା, ଏବ ଅଧ୍ୟାପକର ଗୋଡ଼ ତଳେ ପଡ଼ିଗଲା । ସେ ତମକ୍ତ ପଡ଼ି ପଛକୁ ଘୁଞ୍ଚିଗଲା । ସାଷ୍ଟାଙ୍ଗନା ତାର କୋଟଟା ଧରି ପକାଇ ଚିତ୍କାର କଲା

'କସତେମା ! 'କସତେମା ! ଭଗବାନଙ୍କ ଦୋହାଇ ! ମୋତେ ଟିକିଏ ଜଲଫିନୋକୁ ଦେଖାଅ । ମୋତେ କ୍ଷମା କର ! ମୋତେ ଉଦ୍ଧାର କର ! ମୋ ପ୍ରତି ଟିକିଏ ସଦୟ ହୁଅ !'

ତା ପରେ ତା ନୟନରୁ ଲୋତକର ବନ୍ୟା ବହିବାକୁ ଲାଗିଲା— ପ୍ରକୃତ ଲୋତକ, ଯେପରିକି ତାହା କୌଣସି ମତେ ବନ୍ଦ ହେବ ନାହିଁ । କାନ୍ଦୁଥିବା ଯୋଗୁଁ ତାର ସାବ୍ ଶରୀରରେ କମ୍ପନ ଜାତ ହେଲା— କନ୍ଦନ ବା ଲୋତକ ଠାରୁ କୌଣସି ଗୁଣରେ ଊଣା ନୁହେଁ । ସେ ଭୂଇଁରୁ ଆଦୌ ଉଠିଲା ନାହିଁ, ମାତ୍ର ଧୂଳି ତାତରେ ତା ମୁହଁ ଢାଙ୍କି ରଖି ସେ ଆବେଦନ କରିବାକୁ ଲାଗିଲା :

'କସତେମା, ତୁମେ ମୋତେ ଖାଲି କ୍ଷମା କଲେ, ମୋତେ ଉଦ୍ଧାର କଲେ, ମୁଁ ଚୁମ୍ବନ କରିବି··· ତୁମର ଚରଣ ଯେଉଁ ଭୂଇଁରେ ପଡ଼ିଛି ମୁଁ ତାକୁ ଚୁମ୍ବନ କରିବି । ମୁଁ ଆଉ ଏ ଜୀବନ ସହି ପାରୁ ନାହିଁ ! ଏହା ପରେ ଜଲଫିନୋକୁହିଁ ମୁଁ ଏକାନ୍ତ ଆପଣାର କରି ରଖିବି । ମୋତେ ସାହାଯ୍ୟ କର, ଭଗବାନଙ୍କ ଦୋହାଇ, ମୁଁ ତାର ସବୁ ସେବା ଶୁଶ୍ରୂଷା କରିବି । ମୁଁ ତୁମକୁ ଅନୁଯୋଗ କରୁଛି···' ।

ଗୋଟାଏ ଚୌକିରେ ବସି ପଡି, ଅଧ୍ୟାପକ ଦୁଇ ହାତରେ ତା ମୁହଁ ଢାଙ୍କି ପକାଇଲେ । ତାର ମୁହଁ ଢାଙ୍କିବାକୁ ଆଉ ଅବଶ୍ୟ କିଛି-ପ୍ରୟୋଜନ ନ ଥିଲା, କାରଣ ସେତେବେଳକୁ ସଞ୍ଜ ମାଡ଼ି ଆସିଥିଲା ଏବଂ ଘରଟା ଅନ୍ଧକାରାଚ୍ଛନ୍ନ ହୋଇ ଯାଇଥିଲା । ସାନ୍ଧ୍ୟ ଉପାସନାର ଘଣ୍ଟା ବାଜିଲା ଏବଂ ଧୀର ଉଚ୍ଚ ସ୍ୱରରେ ଆଭେ ମାରିଆର ସ୍ତୋତ୍ର ପାଠ କରିବାକୁ ଲାଗିଲେ— ତାର ଆଶା ଥିଲା, ଏହା କାନରେ ବାଜିଲେ ତାର ମୂନିକ ମସ୍ତିଷ୍କ ସାଟାନିନାର ପ୍ରତିଲୋଭନ ଏଡ଼ାଇ ପାରିବ ।

ପଛ ସବୁ ତଲିଫିନୋର କଣ୍ଠସ୍ୱର ଶୁଣାଗଲା । ଘରେ କଣ ହେଉଛି କିଛି ବୁଝି ନ ପାରି ସେ ଭୟରେ ଡାକ ଛାଡ଼ିଲା :

'ବାବା ! ବାବା !'

ଚିତ୍କାର ଶୁଣି, ସାଟାନିନା ଉଠି ପଡ଼ିଲା ଏବଂ ତା ପୁଅ ପାଖକୁ ଦୌଡ଼ିଗଲା ।

ଅଧ୍ୟାପକ ସେହିପରି ଚୌକିରେ ପଡ଼ି ରହିଲେ ଏବଂ ତଲିଫିନୋର ଘରୁ ଭାସି ଆସୁଥିବା ଶବ୍ଦ ପ୍ରତି କାନ ଡେରି ରହିଲେ— ମା'ଅର ଚୁମ୍ବନ ଓ ପୁଅକୁ ଗେଲ କରିବାର ଶବ୍ଦ । ସହସା ବାହାରେ ଗୋଟାଏ ବଡ଼ ପବନର ଝଡ଼ ମାଡ଼ି ଆସିଲା— ସମୁଦ୍ରର ଗର୍ଜନ କମିଗଲା ଏବଂ ପବନର ଜୋର ଆଉ ନ ଥିଲା— ଏକ ଅସ୍ୱାଭାବିକ ନୀରବତା, ଯେମିତି ସମଗ୍ର ପୃଥିବୀଟା ସ୍ତବ୍ଧ ହୋଇଗଲା । ମଥା ଟେକି ସେ ବିସ୍ମୟରେ ଶୁଣିବାକୁ ଲାଗିଲେ । ତେବେ ସୁଦ୍ଧା ଝରକାର ଗୋଟାଏ କବାଟ ଅତି ଧୀରେ ଧୀରେ ପିଟି ହେଉଥିଲା । ହଁ ! ସତରେ ତ— ପବନ··· ଅବଶେଷରେ ପବନ ବନ୍ଦ ହୋଇଗଲା । ଏହା କଣ ସମ୍ଭବ ହୋଇପାରେ ! ସେ ଝରକା ପାଖକୁ ଚାଲିଗଲା ଏବଂ ଅନ୍ତ୍ରିସରଙ୍କ ନିବାସ ସାମନାରେ ବଗିଚାର ସେ ପଟେ ଯାଇଥିବା ଆଲୋକିତ

ରାସ୍ତା ଅଡ଼କୁ ଅନାଇ ଦେଖିଲା । ହଁ, ସଡ଼କରେ ଖୁବ୍ ସହସା, ପବନ ବନ୍ଦ ହୋଇ ଯାଉଥିଲା । କେତେ ଜଣ ଅଫିସରଙ୍କର କଣ୍ଠ ସ୍ୱର ତା କାନରେ ଆସି ବାଜିଲା । ଭୋଜନ ପରେ ପଦାରେ ଫୁର୍ତ୍ତି କରିବା ପାଇଁ ସେମାନେ ବାହାର ଆସୁଥିଲେ ।

ଯାହା ହେଉ, ଏତେ ବେଳ ଯାଏ ତାର ମନେ ନ ଥିଲା ଯେ ସେ ଡଲ୍‌ଫିନୋକୁ ଅନ୍ଧାରରେ ତାର ଶୋଇବା-ଘରେ, ସାଣ୍ଟାନିନାର କଫସ୍ଥି ତଳେ, ଶୁଆଇ ଦେଇ ଆସିଛି । ଗୋଟାଏ ଆଲୁଅ ଆଣିବା ଲାଗି ସେ ଧାଇଁଗଲା ।

'ମୁଁ ଜାଳି ଦେ ଛି... ମୁଁ ଜାଳି ଦେଉଛି,' ସେ ସହସା କହି ଉଠିଲା । 'ଆଲୁଅ କେଉଁଠି ଅଛି ? ଏଇ ଘରେ ନା ?'

ଆଲୁଅ ଆଣିବା ପାଇଁ ସେ ଖୁବ୍ ଚଞ୍ଚଳ ଧାଇଁଗଲା ।

'ବାବା,' ଡଲ୍‌ଫିନୋ ଫୁସ୍‌ଫୁସ୍ କରି କହିଲା, 'ବାବା, ମୋର ତାକୁ ଭଲ ଲାଗୁ ନାହିଁ... ତା ଦେହରୁ କଦର୍ଯ୍ୟ ଗନ୍ଧ ବାହାରୁଛି... ।'

'ତୁ କିଛି ଚିନ୍ତା କର ନା, ପୁଅ । ତୁ କିଛି ଚିନ୍ତା କର ନା ।'

'କିନ୍ତୁ ବାବା, ତୁମେ କେଉଁଠି ଶୋଇବ ? ସେ ଶୋଇଲେ ତ ତୁମ ପାଇଁ ଆଉ ବିଛଣା ରହିବ ନାହିଁ । ତେଣୁ ତୁମେ ନିଶ୍ଚୟ ମୋ କଡ଼ରେ ଶୋଇବ— ଶୁଣୁଛ ତୁମକୁ, ବାବା ?'

'ହଁରେ, ପୁଅ, ଖୁବ୍ ଭଲ ଭାବରେ... ତୁ ସେଥିପାଇଁ କିଛି ଚିନ୍ତା କର ନା ।'

ଚାରିଆଡ଼ ନୀରବ ହୋଇଗଲା । ମାଦ୍ ସାଣ୍ଟାନିନା କାହିଁକି ଫେରି ଆସୁ ନାହିଁ ? ସେ କଣ ଆଉ ଆଲୁଅ ପାଇଲା ନାହିଁ ? ତାହାହେଲେ ସେ କଣ କରୁଛି ? ଅଧ୍ୟାପକ କାନ ଡେରି ଶୁଣିବାକୁ ଲାଗିଲା । ତା ପରେ ସେ ହଠାତ୍ ଲକ୍ଷ୍ୟ କଲା ଯେ ଝଲ୍‌କାଏ

ହେମାଲ ପର୍ବତ ଅଗ୍ନି ତା ପାଦରେ ଲାଗିଲା । ତାର ମନେ ହେଲା–
ଆଜ ଘରେ ସାଟାର୍ଜାନା ଯେମିତି ଗୋଟାଏ ଝରକା ଖୋଲିଦେଲା
କାହିଁକି ?

ସେ ଛଟି ଠିଆ ହେଲା, ଏବଂ ବନ୍ଧୁକ ସ୍ଥିର କରି, ଗୋଡ଼ ଟିପି ଟିପି ଧୀରେ ଧୀରେ ପାଖ ଘରର ଦୁଆର ଆଡ଼କୁ ଗଲା । ସେହି ଘରର ଗୋଟାଏ ନୂଆଁଣିଆ ଝରକା ବଗିଚା ଫଳଗଛ କୋଣକ ଆଡ଼କୁ ରହିଛି । ହଁ ତ, ସାଟାର୍ଜାନା ସେହି ଝରକାଟା ଖୋଲିଦେଇ, ସେଇଠି ଠିଆ ହୋଇଛି, ଆଉ ଠିକ୍ ତା ତଳେ ତାହା ପାଖରେ ଅନୁଚ୍ଚ ସ୍ୱରରେ କଥାବାର୍ତ୍ତା ଚାଲିଛି । ସେ ତା କିଏ ? ସେହି ଅଲାକୁଲ୍ଗା ମାଉଣ୍ଟନାଟର ଅସୂର୍ଯ୍ୟମ୍ପଶ୍ୟା କଣ ଫେର୍ ଏହା ଭିତରେ ଆରମ୍ଭ ହୋଇଗଲା ? ଅଧ୍ୟାପକ ବାଘ ପରି ସତର୍କ ପାଦ ପକାଇ ଟିକିଏ ହେଲେ ଶବ୍ଦ ନ କରି ତା ପାଖରେ ଯାଇ ପହଞ୍ଚିଗଲା । ସେ ଶୁଣିବାକୁ ଲାଗିଲା, ତଳେ ଠିଆ ହୋଇଥିବା ଅଫିସରକୁ ସାଟାର୍ଜାନା କହୁଛି: 'ନା, ଗେଗି, ଆଜି ରାତିରେ ନୁହେଁ, ଅସମ୍ଭବ । କାଲି ରାତି… ମୁଁ ତୁମକୁ ଜବାବ ଦେଉଛି କାଲି ।'

ଏହା ଶୁଣି ଅଧ୍ୟାପକ ଆଉ ଟିକିଏ ନର୍ଭ ପଡ଼ିଲା, ଏବଂ ସାଟାର୍ଜାନାର ପାଦ ଦୁଇଟା ଧରି ପକାଇ, ସବୁଥା ତାକୁ ଟେକି ନେଇ ଝରକା ବାହାରକୁ ଫୋପାଡ଼ି ଦେଲା, ଏବଂ ପାଟି କରି କହିଲା:

'ହୋ ଲେଫ୍‌ଟେନାଣ୍ଟ ସାହେବ ! ଶୀଅନ୍ତୁ, ତାକୁ ଭଲ କରି ଧରି ନିଅନ୍ତୁ !'

ସାଟାର୍ଜାନାର ଆର୍ତ୍ତନାଦ ଓ ଅଫିସରର ଚିତ୍କାରରେ ଉପସ୍ଥିତ ହୋଇଯାଇ, ସେ ଥରି ଥରି ଝରକା ପାଖରୁ ଘୁଞ୍ଚି ଆସିଲା । ସେ ଝରକାର କବାଟ ବନ୍ଦ କରି ଦେବାକୁ ଚେଷ୍ଟା କଲା, କିନ୍ତୁ ସେତେବେଳକୁ ବାହାରେ ସିପାହୀ, ଅଫିସର ଓ ନାଗରିକମାନଙ୍କର

ପାଟିଘୋଳ ଶୁଣା ଗଲାଣି । ତେଣୁ କମ୍ପିତ ପଦକ୍ଷେପରେ ସେ ତା ପୁଅର ଘରକୁ ପଳାଇ ଆସିଲା । ତା ଆଗରୁ ସାନ୍ଧି-ପୋଷାକରେ ଥିବା ଝିଅଟା ବିଛଣାରୁ ଉଠି ପଡ଼ି ଦୌଡ଼ି ଆସିଥିଲା । ସେ ତାକୁ ଅଟକାଇ ପଚାରିବାକୁ ବସିଲା, କଣ ହୋଇଛି କି ଆଉ ଏତେ ଗୋଳମାଳ ବା କାହିଁକି ହେଉଛି । ମାତ୍ର ଅଧ୍ୟାପକ ତାକୁ ଗୋଟାଏ ଅଡ଼କୁ ଠେଲି ଦେଇ, ପୁଅର ଶଯ୍ୟା ପାଖକୁ ଧାଇଁଗଲା ଏବଂ ତାକୁ ଚୁମ୍ବନ କଲା ।

'କିଛି ନୁହେଁ...... ଆଦୌ କିଛି ହୋଇ ନାହିଁ,' ତା ପୁଅର ପ୍ରଶ୍ନର ଉତ୍ତର ଦେବାକୁ ଯାଇ, ସେ ଆବେଗରେ କହି ପକାଇଲା । 'ସତରେ କିଛି ନୁହେଁ... ତୁ ଡର ନା । ଖାଲି ଖଣ୍ଡିଏ ଟାଇଲ... ଛାତରୁ ଖଣ୍ଡିଏ ଟାଇଲ ଲେଫ୍‌ଟେନାଣ୍ଟର ମଥାରେ ଖସି ପଡ଼ିଲା... ଆଉ କିଛି ନୁହେଁ ।'

ସଦର ଦରଜାରେ ଘନ ଘନ ଠକ୍କା ବାଜିଲା । ଧାଈ ରାତ୍ରିର ପୋଷାକ ବଦଳାଇ, ଦୁଆର ଖୋଲିବା ପାଇଁ ଦୌଡ଼ିଗଲା । ମାତ୍ର ଦୁଇ ଜଣ ସିପାହୀ ଓ ଜଣେ ପୋଲିସ ସାର୍ଜେଣ୍ଟ ପଶି ଆସିଲେ । ତାଙ୍କ ପଛେ ପଛେ ଦଳେ ସୈନ୍ୟ ଓ ଅଫିସରଙ୍କ ସମେତ ଗୁଡ଼ାଏ ଲୋକ ବି ପାଟିତୁଣ୍ଡ କରି ଧାଇଁ ଆସିଲେ ।

ଜନତାର ଆକସ୍ମିକ ଆକ୍ରମଣରେ ଉଦ୍‌ଭ୍ରାନ୍ତ ହୋଇ, ଧାଈର ପାଟି ଶୁଖି ଯାଇଥିଲା ଏବଂ ସେହି ଅବସ୍ଥାରେ ସେ କହିଲା: 'ଟିକିଏ ଅପେକ୍ଷା କରନ୍ତୁ... ମୁଁ ଆଲୁଅଟା ଜଳାଇ ନେଇ ଆସେଁ ।'

ଦେଖାଗଲା, ଡଲଫିନୋ ବିଛଣା ଉପରେ ଅଣ୍ଟୁ ମାଡ଼ି ବସିଛି, ଆଉ କସମୋ ଆଣ୍ଟୋନିଓ କବଳିତ ଅନିଦ୍ରେଇ ତାକୁ ଦୁ ହାତରେ କୁଣ୍ଢାଇ ଧରିଛି ।

'ଏହି ସେ!' ଜଣେ ସୋଲ୍‌ଜର ଚିତ୍କାର କଲା । 'ମୋ ସାଙ୍ଗରେ ଚାଲି ଆସ ।'

ଅଧ୍ୟାପକ ସେମାନଙ୍କ ଆଡ଼କୁ ମଥା ବୁଲାଇ ଦେଲା । ଯେଉଁ ଲୋକମାନେ ପୋଲିସ ସାଙ୍ଗରେ ସେ ଘରକୁ ପଶି ଆସୁଥିଲେ, ସେମାନେ ପଟିର ପଗଡ଼ି ଓ ବଡ଼ ବଡ଼ ଚଷମା ପିନ୍ଧିଥିବା ସେହି ମଡ଼ା-ଭଳି ଦିଶୁଥିବା ମୂର୍ତ୍ତିଟିକୁ ବିସ୍ମୟ ଓ ଭୟରେ ଚାହିଁ ରହିଲେ ।

'କେଉଁଠାକୁ ?' ସେ ପଚାରିଲା ।

'ମୋ ସାଙ୍ଗରେ ଚାଲି ଆସ ! ଆଉ ବେଶି ବଦମାସି କର ନାହିଁ !' ତାର କାନ୍ଧ ଉପରେ ହାତ ରଖି, ପୋଲିସ ଅଫିସର ରୁକ୍ଷ ସ୍ୱରରେ ଜବାବ ଦେଲା ।

'ବେଶ୍ ଭଲ । କିନ୍ତୁ ମୋ ପୁଅ କଣ କରିବ ? ସେ ଯେ ବେମାର ଅଛି । ତାକୁ କାହା ପାଖରେ ଛାଡ଼ି ଦେଇ ଯାଇ ପାରିବି ? ମହାଶୟ, ମୁଁ କଥାଟା ଖୋଲି କହୁଛି··· ।'

'ଚୁପ୍ ରହ !' ପୋଲିସ ଅଫିସର କ୍ରୋଧରେ ତାକୁ ବାଧା ଦେଇ କହିଲା । 'ତୁମ ପୁଅକୁ ଡାକ୍ତରଖାନାକୁ ପଠାଇ ଦିଆଯିବ । ତୁମେ କିନ୍ତୁ ମୋ ସାଙ୍ଗରେ ଚାଲି ଆସ !'

ଭାଲ୍‌ଫିନୋର ସାରା ଶରୀର ଭୟରେ କମ୍ପୁଥିଲା । ଅଧ୍ୟାପକ ପୁଣି ତାକୁ ବିଛଣାରେ ଶୁଆଇ ପକାଇଲା । ବହୁ କଷ୍ଟରେ ଆଖିରୁ ଲୁହ ପୋଛି ଦେଇ, ସେ ବାରମ୍ବାର ତାର ପୁଅକୁ ଚୁମ୍ବନ କଲା ଏବଂ ତା କାନ ପାଖରେ ଫୁସଫୁସ କରି କହିବାକୁ ଲାଗିଲା—ତୁ ଦମ୍ଭ ଧର, ଯେମିତି କିଛି ଗୁରୁତର ଘଟଣା ହୋଇ ନାହିଁ, ମୁଁ ଶୀଘ୍ର ଫେରି ଆସିବି । ଜଣେ ସିପାହୀ ଅଧୈର୍ଯ୍ୟ ହୋଇ, ତାର ହାତ ଧରି ପକାଇଲା ।

'ତୁମେ କଣ ମୋତେ ହାତକଡ଼ି ବି ପିନ୍ଧାଇବ ?' ଅଧ୍ୟାପକ ପଚାରିଲା ।

ତାକୁ ହାତକଡ଼ି ପିନ୍ଧାଇ ଦେବା ପରେ, ସେ ଭାଲ୍‌ଫିନୋ ଉପରେ ନଇଁ ପଡ଼ିଲା ଏବଂ ତାକୁ କହିଲା:

'ପୁଅ··· ମୋ ଚଶମାଟା···'

ତେବେ ବି ତିଲୁଟି ଉତ୍ସୁରେ ଚମ୍ପୁ ଥିଲା । ସେ କହିଲା, 'କଣ କହୁଛ, ବାପା !'

'ହୁନାଟା ପରା, ମୋ ଚଶମାଟା ଟିକିଏ ଖୋଜି ଦେ ତ······ ଏହି ! ଏହି ଥର ଠିକ୍ ହୋଇଛି· ·ଚମତ୍କାର । ମୁଁ ଆଉ ଏବେ ତୋତେ ଦେଖି ପାରିବି ନାହିଁ· ·' ।

ଜନତା ଆଡ଼କୁ ବୁଲିପଡ଼ି, ସେ ଆଖି ମିଟିମିଟି କରିବାକୁ ଲାଗିଲା ଏବଂ ଥରେ କଦର୍ଯ୍ୟ ଭାବରେ ହସିବାକୁ ଚେଷ୍ଟା କଲା । ସେଥିରେ ଏକା ସାଙ୍ଗରେ ତାର ହଳଦିଆ ଦାନ୍ତସବୁ ଯେମିତି ବାହାରି ପଡ଼ିଲା । କାଉଟା ନୁଆଁଇ ଆଣି, ସେ ତା ବେକଟା ଲମ୍ବାଇ ଦେଲା, କିନ୍ତୁ ଆଜି ତାର ଦୁର୍ଦଶା ହେତୁ ତା ପାଟିରୁ ପଦେ ହେଲେ କଥା ବାହାରିଲା ନାହିଁ । ଏହି ଥରକ ତାର ଅଭ୍ୟାସଗତ କଥାଟି ନିଜ ତୁଣ୍ଡରେ ଆଉ ପଇଠିଲା ନାହିଁ:

'ବେଶ୍ ଭଲ !'

